# ଜୀବନ ପଥେ


**ଲେଖକ:**

**ଶ୍ରୀ କୈଳାସ ଚନ୍ଦ୍ର ମିଶ୍ର**

ପୂର୍ବତନ ଅତିରିକ୍ତ ଶାସନ ସଚିବ, ଅର୍ଥ ବିଭାଗ,

ଓଡ଼ିଶା ସରକାର, ପ୍ଲଟ ନମ୍ବର- ୨୮୪

ଖାରବେଳ ନଗର, ଭୁବନେଶ୍ୱର

ଫୋନ୍: ୨୩୯୬୬୧୫



**ISBN- 78-81-88630-18-9**

**ପ୍ରକାଶକ ଉପଦେଷ୍ଟା :**

ବିନୋଦ ବିହାରି ବିଶୋଇ

(M)୯୯୩୭୬୯୪୭୮୧

**ପ୍ରକାଶକ:**

**କିତାବ ଭବନ**

ଏନ୍-୬/୪୨୮, ଆଇ.ଆର୍.ସି.ଭିଲେଜ

ନୂଆପଲ୍ଲୀ, ଭୁବନେଶ୍ୱର-୧୫

ଫୋନ୍ ନଂ- (୦୬୭୪)୨୫୫୨୦୯୧

**ମୁଦ୍ରଣ:**

କ୍ରିଏଟିଭ୍ ଅଫସେଟ୍

ଭୁବନେଶ୍ୱର-୧୫

**ପ୍ରଚ୍ଛଦ:**

ବଳଦେବ ମହାରଥୀ

**ପ୍ରଥମ ପ୍ରକାଶ:**

୨୦୧୦

**ମୂଲ୍ୟ:**

ଟ. ୧୨୦.୦୦


# JIBANA PATHE...

## Kailash Ch. Mishra


**ISBN- 78-81-88630-18-9**

**Publisher's Advisor :**
Binod Bihari Bisoi
(M) 9937694781

**Publisher:**
Kitab Bhavan
N-6/428, I.R.C. Village,
Nayapalli, Bhubaneswar-15,
Phone No.: 0674-2552091

**Printer:**
Creative Off-set
Bhubaneswar-751015

**Cover Back :**
Baladev Maharatha

**First Edition :**
2010

**Price :**
Rs.120.00



ମୋର ପୂଜ୍ୟ ପିତା ସ୍ୱର୍ଗତ ଘନଶ୍ୟାମ ମିଶ୍ର

# ସମର୍ପଣ

ଆମର କୌଣସି ଶୁଭ କର୍ମ ଆରମ୍ଭ କରାଯିବା ପୂର୍ବରୁ ବୋଲାଯାଏ,

ଓଁ ଶ୍ରୀ ବିଷ୍ଣବେ ନମଃ
ସର୍ବ ଦେବେଭ୍ୟୋ ନମଃ
ପିତୃଭ୍ୟୋ ନମଃ
ମାତୃଭ୍ୟୋ ନମଃ
ଗୁରୁଭ୍ୟୋ ନମଃ

ମୋର ଏହି କ୍ଷୁଦ୍ର ଲେଖାଟି ଆରମ୍ଭ କରିବା ପୂର୍ବରୁ ମୁଁ ଏହିମାନଙ୍କୁ ମୋର ଆନ୍ତରିକ ଭକ୍ତିପୂର୍ଣ୍ଣ ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଅଛି ।

ମୋର ସ୍ୱର୍ଗତ ପିତା ଘନଶ୍ୟାମ ମିଶ୍ର ଯେ ମୋର ପିତା ଓ ମାତା (ମୋର ମାତା ଶୈଶବ କାଳରେ ମହାପ୍ରୟାଣ କରିଛନ୍ତି), ଉଭୟ ଗୁରୁ ଦାୟିତ୍ୱ ବହନ କରି ମୋତେ ଛୋଟ ପିଲା କାଳରୁ ବୃଦ୍ଧ ବୟସ ପର୍ଯ୍ୟନ୍ତ କର୍ମରେ ଦିଗ୍‌ଦର୍ଶନ, ପ୍ରେରଣା ଓ ଆଶୀର୍ବାଦ ଦେଇ ଉଦ୍‌ବୁଦ୍ଧ କରିଛନ୍ତି, ଯାହାଙ୍କର ଅବଦାନ ମୁଁ ସାତ ଜନ୍ମରେ ପରିଶୋଧ କରିପାରିବି ନାହିଁ, ତାଙ୍କୁ ମୋର ଭୂମିଷ୍ଠ ପ୍ରଣାମ ଓ ଶ୍ରଦ୍ଧାଞ୍ଜଳି ଜ୍ଞାପନ କରିବା ସଙ୍ଗେ ସଙ୍ଗେ ଏହି କ୍ଷୁଦ୍ର ପୁସ୍ତକଟିକୁ ତାଙ୍କ ଶ୍ରୀଚରଣ ତଳେ ସମର୍ପଣ କରୁଛି । ଇତି ।

ପୁତ୍ର
କୈଳାସ

# ଜୀବନନଦୀ ର ପଥ ଧାରେ

ଜୀବନର ବଡ଼ ସାଧନା ହେଉଛି ବଞ୍ଚିରହିବା । କାରଣ ଜୀବନ ଏକ ସମତଳ ପଥ ନୁହେଁ, ସୁଖ ଦୁଃଖର ଉଠାଣି ଗଡ଼ାଣି ଦେଇ ଚାଲିବାକୁ ହୁଏ । କେତେବେଳେ କଙ୍କରିଳ ପଥରେ ପାଦରୁ ରକ୍ତଝରେ ତ କେତେବେଳେ ବନ୍ୟ ଝରଣାର ସୁଶୀତଳ ସ୍ରୋତରେ ରକ୍ତ ଧୋଇ ହୋଇଯାଏ । ଜୀବନ ଯେତିକି କଷ୍ଟକର ନିଜ ଜୀବନୀ ଲେଖିବା ତା'ଠାରୁ ଅଧିକ କଷ୍ଟକର । ବୋଧହୁଏ ଗଳ୍ପ, ଉପନ୍ୟାସ, ଚିନ୍ତାଉଦ୍ରେକକାରୀ ପ୍ରବନ୍ଧ ଆଦି ଲେଖିବା ଅପେକ୍ଷା ଆତ୍ମଜୀବନୀ ଲେଖିବା ଅଧିକ କଠିନ । ବିଶେଷକରି ଦୀର୍ଘ ଜୀବନ ପଥରେ ଯେତେ ଘଟଣା, ଦୁର୍ଘଟଣା ଅନୁଭୂତିରେ ଲିପିବଦ୍ଧ ହୁଏ ତା'କୁ ଆତ୍ମଜୀବନୀରେ ଲିପିବଦ୍ଧ କରିବା ଆଦୌ ଏତେ ସହଜ ନୁହେଁ । ଶ୍ରୀଯୁକ୍ତ କୈଳାସ ଚନ୍ଦ୍ର ମିଶ୍ର ତାଙ୍କର ଘଟଣାବହୁଳ ମିଶ୍ରରାଗ ରଞ୍ଜିତ ୮୩ ବର୍ଷର ଦୀର୍ଘଜୀବନକୁ ମାତ୍ର ୧୫୮ ପୃଷ୍ଠା ମଧ୍ୟରେ ନିଜେ ଲେଖିବା ଏକ ବିସ୍ମୟକର କଳା । ସେଥିପାଇଁ ମୁଁ ପ୍ରଥମେ ଶ୍ରୀଯୁକ୍ତ ମିଶ୍ରଙ୍କୁ ଅଭିନନ୍ଦନ ଜଣାଉଛି ।

ଯେକୌଣସି ବ୍ୟକ୍ତିର ଆତ୍ମଜୀବନୀ ଏକ ମହାକାବ୍ୟ ନହୋଇପାରେ, ମାତ୍ର ନିଶ୍ଚିତ ଭାବରେ ଏକ ରସଘନ କାବ୍ୟ ହୋଇପାରେ । ପ୍ରତ୍ୟେକ ବ୍ୟକ୍ତିର ଜୀବନୀ ତା'ର ନିଜସ୍ୱ ଅନୁଭୂତି ହେଲେ ମଧ୍ୟ ତାହା ହେଉଛି ଯୁଗାନୁଭୂତି । ଆତ୍ମଜୀବନୀ ହେଉଛି ଏକ ସମୟର ବ୍ୟକ୍ତିତ୍ୱ । ତେଣୁ ସମକାଳରେ ବଞ୍ଚିଥିବା ଅନ୍ୟର ହୃଦୟକୁ ଏହା ସ୍ପର୍ଶକରେ ଏବଂ ପରବର୍ତ୍ତୀ ବଂଶଧରଙ୍କୁ ଏହା ବାଟ କଢ଼ାଏ । ଆତ୍ମଜୀବନୀ ହେଉଛି ଦିଗନିର୍ଣ୍ଣୟକ ଟିପାଖାତା । କୈଳାସ ବାବୁ ତାଙ୍କର ଆତ୍ମଜୀବନୀରେ କୌଣସି ଅତିରଞ୍ଜନ କରିନାହାନ୍ତି । ସୁଖ ଓ ସଫଳତାକୁ ଯେଉଁଳି ନିର୍ଲିପ୍ତ ସହଜାତରେ ଶବ୍ଦାଡମ୍ବର ବିନା ଲେଖିଛନ୍ତି, ସେହିପରି ଦୁଃଖ, ଶୋକ ଓ ଦୁର୍ଭାଗ୍ୟକୁ ମଧ୍ୟ ନିର୍ଲିପ୍ତ ସହଜାତରେ ଚୁମ୍ବକେ କହିଛନ୍ତି । ଶ୍ରୀ ମିଶ୍ରଙ୍କର ଅନୁଭୂତିସିଦ୍ଧ ବିଜ୍ଞ ଆତ୍ମସତ୍ତା ତାଙ୍କୁ ଚେତେଇ ଦେଇଛି ଯେ ଯେତେ ବର୍ଣ୍ଣନା କଲେ ମଧ୍ୟ ନିଜର ସୁଖ ଦୁଃଖକୁ ନିଜେ ଜଣେ ଯେଉଁଳି ଭାବରେ ଅନୁଭବ କରେ ତାକୁ ସେହିଭଳି ଭାବରେ ଶବ୍ଦରେ ପ୍ରକାଶ କରିବାକୁ ସେ ସମର୍ଥ ହୁଏ ନାହିଁ । ଶ୍ରୀ ମିଶ୍ର କେବଳ ନିଜ ଜୀବନର କଥା କହିନାହାନ୍ତି ତାହା ସହ ଅନେକ ଜୀବନର ବିବିଧ ଦୁଃଖଯନ୍ତ୍ରଣାର କଥା ମଧ୍ୟ କହିଛନ୍ତି । ସେଥିସହ ତାଙ୍କର ବାଲ୍ୟ କାଳରୁ ଆରମ୍ଭ କରି ଆଜି ପର୍ଯ୍ୟନ୍ତ ସମାଜରେ ଘଟୁଥିବା ଏବଂ ସେ ଅଙ୍ଗେ

ଲିଭାଇଥିବା ବହୁ ପ୍ରାସଙ୍ଗିକ କଥାର ଉଲ୍ଲେଖ କରିଛନ୍ତି । ସେ ସମୟର ଶିକ୍ଷାନୀତି, ଗ୍ରାମ୍ୟ ଜୀବନରେ ତାଙ୍କ ସମୟରେ ଶିକ୍ଷାଲାଭ ପଥରେ ଥିବା ପ୍ରତିବନ୍ଧକ ଏବଂ ପ୍ରତିରୋଧକୁ ଡେଇଁ ଯିବାର ଆତ୍ମବଳ ଓ ଉଦାର ବ୍ୟକ୍ତିମାନଙ୍କର ସାହାଯ୍ୟ ବାସ୍ତବରେ ହୃଦୟସ୍ପର୍ଶୀ । ସେ ସମୟର ସାମାଜିକ, ରାଜନୈତିକ ପରିସ୍ଥିତିକୁ ମଧ୍ୟ ସେ ଗଭୀର ଭାବରେ ଅନୁଧ୍ୟାନ କରିଛନ୍ତି, ଭୋଗିଛନ୍ତି, ସେଥିରେ ଅଂଶ ଗ୍ରହଣ କରିଛନ୍ତି । ଛାତ୍ର ଜୀବନରେ ମଧ୍ୟ ଭାରତଛାଡ଼ ଆନ୍ଦୋଳନରେ ଯୋଗ ଦେଇ ଦେଶାତ୍ମବୋଧର ପରିଚୟ ଦେଇଛନ୍ତି ବୋଲି ପାଠକ ଅନୁଭବ କରେ । ଭାରତର ସ୍ୱାଧୀନତା, ଗାନ୍ଧିଜୀଙ୍କର ସ୍ୱର୍ଗବାସ, ଗାନ୍ଧିବାଦ ଇତ୍ୟାଦି ସମ୍ପର୍କରେ ସେ ସଂକ୍ଷିପ୍ତ ଭାବରେ ଅଥଚ ସ୍ପଷ୍ଟ ଭାବରେ ନିଜର ଉପଲବ୍ଧିକୁ ଉତ୍କୀର୍ଣ୍ଣ କରିଛନ୍ତି । ଶ୍ରୀ ମିଶ୍ରଙ୍କର ସରକାରୀ ଚାକିରି ଜୀବନ ଅତ୍ୟନ୍ତ ଉଜ୍ଜ୍ୱଳ । ଜଣେ ଦକ୍ଷ ଏବଂ ସଚ୍ଚୋଟ ସରକାରୀ ଅଫିସର ଭାବରେ ସେ ପଞ୍ଚାୟତ ବିଭାଗ, ଆଦିବାସୀ ଗ୍ରାମମଙ୍ଗଳ ବିଭାଗ, ସମବାୟ ବିଭାଗ, ଜଳସେଚନ ଓ ବିଦ୍ୟୁତ୍ ବିଭାଗ, ରାଜ୍ୟ ବିଦ୍ୟୁତ୍ ବୋର୍ଡ଼, ଟ୍ରେଜେରି ଡିପାର୍ଟମେଣ୍ଟ, ଅର୍ଥ ବିଭାଗ ଇତ୍ୟାଦିରେ କାର୍ଯ୍ୟରତ ରହି ସରକାରୀ କଳର ଦୋଷ ଦୁର୍ବଳତା ଏବଂ ବିଫଳତାର କାରଣକୁ ସ୍ପଷ୍ଟ ଭାବରେ ଲିପିବଦ୍ଧ କରିଛନ୍ତି । ଏହା ନିଶ୍ଚିତ ଭାବରେ ବର୍ତ୍ତମାନର ସରକାରୀ ଅଫିସରଙ୍କ ପାଇଁ ପଥପ୍ରଦର୍ଶକ ହେବ । ଶ୍ରୀ ମିଶ୍ର ଇତିହାସକୁ ମଧ୍ୟ ଅଗ୍ରାହ୍ୟ କରିନାହାନ୍ତି । କଳାହାଣ୍ଡି ପରିସ୍ଥିତି, ନୃସିଂହନାଥ ମନ୍ଦିର, ଭୁବନେଶ୍ୱରୀ ମନ୍ଦିର, ବୁଦ୍ଧ ବିହାର ଆଦି ସ୍ଥାନ ସହ ନିଜ ଜୀବନର ଅନ୍ତରଙ୍ଗତାକୁ ପାଠକ ସମ୍ମୁଖରେ ରଖିଛନ୍ତି । କେବଳ ସେତିକି ନୁହେଁ ରେଡ଼କ୍ରସ ସୋସାଇଟି ଏବଂ ଆଜିର ବିଶ୍ୱସମସ୍ୟା ଯଥା ଗ୍ଲୋବାଲ୍ ୱାର୍ମିଂ ଏବଂ ଜଳବାୟୁ ପରିବର୍ତ୍ତନ ସମ୍ପର୍କରେ ମଧ୍ୟ ନିଜର ଉଦ୍‌ବେଗ ପ୍ରକାଶ କରିଛନ୍ତି । ମୋଟ ଉପରେ ଏକ ପଠନୀୟ, ସଂରକ୍ଷଣୀୟ ଏବଂ ଆଦର୍ଶ ଆତ୍ମଜୀବନୀରେ ଯେଉଁସବୁ ଦିଗପ୍ରତି ଦୃଷ୍ଟି ଦେବାକଥା ଶ୍ରୀ ମିଶ୍ର ସେଥିପ୍ରତି ସଚେତନ ରହି ନିଜ ଅନୁଭୂତିକୁ ପାଠକ ସମ୍ମୁଖରେ ରଖିଛନ୍ତି । ଜୀବନର ଚିରନ୍ତନ ମୂଲ୍ୟବୋଧ ଯେ ବ୍ୟକ୍ତିତ୍ୱର ମହିମାମୟ ଦିଗ ତାହା ଶ୍ରୀ ମିଶ୍ରଙ୍କର ମଣିଷ ପ୍ରତି ସମ୍ବେଦନା ଓ ପରୋପକାର ଆଦି ଘଟଣାରୁ ଜାଣିହେବ ।

ଶ୍ରୀ ମିଶ୍ରଙ୍କର ଏକମାତ୍ର ପୁତ୍ରର ଏକ ଜଟିଳ ଅପରେସନ୍ ପାଇଁ ସେ ଯେତେବେଳେ ଦିଲ୍ଲୀର ବଡ଼ ଡାକ୍ତରଖାନାରେ ଡାକ୍ତରଙ୍କ ଦେଖା ପାଇବାପାଇଁ ଧାଁ-ଦଉଡ଼ କରି ନୟାନ୍ତ ହେଉଥିଲେ, ସେତେବେଳେ ତାଙ୍କ ଜୀବନରେ ଏକ ଅଭିନବ ଘଟଣା ଘଟିଲା । ଆଫଗାନିସ୍ଥାନର ଏକ ବାସ୍ତୁହରା ବ୍ୟକ୍ତିଙ୍କର ୭ ବର୍ଷର ପୁତ୍ରର

ମେରୁଦଣ୍ଡ ଅପରେସନ୍ ପାଇଁ ସେହି ଡାକ୍ତରଖାନା ଭିତରେ ଅନ୍ୟ ରୋଗୀଙ୍କ ଆତ୍ମୀୟମାନଙ୍କୁ ଅନୁରୋଧ କରି ଗୋଟିଏ ଦିନରେ ୫ ହଜାର ଟଙ୍କା ଯୋଗାଡ଼ କରିବା ଏକ ବିସ୍ମୟକର ଘଟଣା । ଏଥିପାଇଁ ଶ୍ରୀ ମିଶ୍ର ପ୍ରଥମେ ପାଞ୍ଚଶହ ଟଙ୍କା ଦାନ କରି ପରେ ସାହାଯ୍ୟ ପାଇଁ ଅନ୍ୟମାନଙ୍କୁ ଅନୁରୋଧ କରିଥିଲେ । ସେତିକି ଟଙ୍କା ଯୋଗାଡ଼ କରିପାରି ନଥିଲେ ସେହି ଅସହାୟ ପିତାଙ୍କର ସଙ୍କଟାପନ୍ନ ପୁତ୍ରର ଅପରେସନ୍ ହୋଇପାରି ନଥାନ୍ତା । ଏହି ଘଟଣାଟି ପଢ଼ିଲେ ଶ୍ରୀ ମିଶ୍ରଙ୍କ ପାଖରେ ପାଠକ ନିଶ୍ଚୟ ନତମସ୍ତକ ହେବ । ଏହା ଏକ ହଜିଯାଇଥିବା ସମୟର କାହାଣୀ ଭଳି ମନେ ହେଲେ ବି ପାଠକକୁ ନିଶ୍ଚିତ ପ୍ରଭାବିତ କରିବ ।

ଶ୍ରୀ ମିଶ୍ରଙ୍କର ଆତ୍ମଜୀବନୀରେ ସାହିତ୍ୟିକ ଛଟା ପ୍ରାଞ୍ଜଳ ଭାବରେ ରହିଛି । ଲେଖକ ବହୁଗ୍ରନ୍ଥ ଅଧ୍ୟୟନ କରିଛନ୍ତି ଏବଂ ତାଙ୍କର ଅପାର ସାହିତ୍ୟପ୍ରୀତି ରହିଛି ବୋଲି ଆତ୍ମଜୀବନୀର ପ୍ରତିଟି ପୃଷ୍ଠା ସ୍ପଷ୍ଟ ଉଚ୍ଚାରଣ କରେ । କେବଳ 'ମୁଖବନ୍ଧ' ଟି ପଢ଼ିଲେ ତାହା ସ୍ପଷ୍ଟ ଜାଣିହେବ । ମନୁଷ୍ୟ ଜୀବନକୁ ସେ ନଦୀର ଗତିପଥ ସଙ୍ଗେ ତୁଳନା କରି ସେ ଲେଖିଛନ୍ତି-''ମନୁଷ୍ୟ ଜୀବନ ଅବିକଳ ଗୋଟିଏ ନଦୀର ଗତିପଥ ସଙ୍ଗେ ତୁଳନୀୟ.... ନଦୀ ଭାଗ ଭାଗ ହୋଇ ଶାଖା ନଦୀ ଉତ୍ପନ୍ନ ହୁଏ । କେତେକ ଶାଖା ନଦୀ ମୁଖ୍ୟ ନଦୀଠାରୁ ଅଧିକ ବିଶାଳ ଓ ବେଗଗାମୀ । ଜୀବନଟା ଠିକ୍ ସେହିପରି । କେଉଁ ଅଦୃଶ୍ୟ ପାର୍ବତ୍ୟ ଖୋଲରୁ ନିର୍ଗତ ହୋଇ ଅନ୍ୟ ଛୋଟ ଛୋଟ ଝରଣା ସଙ୍ଗେ ମିଶି ଗୋଟିଏ ବଡ଼ ଉପନଦୀ ସୃଷ୍ଟି ହୁଏ । ତା'ପରେ ତ୍ରିକୋଣ ଭୂମି ଅଞ୍ଚଳରେ ନଦୀରୁ ଶାଖା ନଦୀ ବାହାରି ନଦୀ ଭାଗ ଭାଗ ହୋଇଯାଏ । ଶେଷରେ ନଦୀ ସାଗରରେ ବିଲୀନ ହୁଏ ।'' ଏହାପରେ ସେ ଭକ୍ତ କବିଙ୍କର ଏକ ପଂକ୍ତି ଉଦ୍ଧାର କରିଛନ୍ତି । ସେ ପୁଣି ଲେଖିଛନ୍ତି- ''ମୋର ଅବସ୍ଥା ଠିକ୍ ନଦୀର ମୁହାଣରେ ମିଶି ଗଲାପରି । ପରିଣତ ବୟସ, ୮୩ ବର୍ଷ । ରେଳରେ ଟିକଟ୍ କାଟି ବସିଛି । କେତେବେଳେ ଗାଡ଼ି ଆସିଯିବ ମାତ୍ର ସେଥିପାଇଁ ଚିନ୍ତା ନାହିଁ ।''

ଭାଗବତ କହୁଛି-

''ମହୀରେ ଥିବ ଯେତେଦିନ
ଆନନ୍ଦ କରୁଥିବ ମନ'' ।

ଭାଗବତର ବାଣୀକୁ ଶ୍ରୀ ମିଶ୍ର ନିଜ ଜୀବନରେ ପ୍ରୟୋଗ କରିଛନ୍ତି ବୋଲି ତାଙ୍କର ସରସ ବ୍ୟକ୍ତିତ୍ୱ ସଂସ୍ପର୍ଶରେ ଆସିଥିବା ଯେକୌଣସି ଲୋକ ଅନୁଭବ କରେ । ଜୀବନର ଚରମ ଶୋକକୁ ଅତିକ୍ରମ କରି ଶ୍ରୀ ମିଶ୍ର ସ୍ନେହ ଓ ଆନନ୍ଦ ବିତରଣ କରି

ଦୀର୍ଘ ପଥ ଚାଲି ଆସିଛନ୍ତି । ତଥାପି ତାଙ୍କର କ୍ଳାନ୍ତି ନାହିଁ । ଠିକ୍ ନଦୀର ଗତିଧରି ତାଙ୍କର ଗତି ଲକ୍ଷ୍ୟଭ୍ରଷ୍ଟ ହୋଇନାହିଁ ।

ଶ୍ରୀ ମିଶ୍ରଙ୍କର ନଦୀପଥ ସହ ଜୀବନର ତୁଳନା ଅତ୍ୟନ୍ତ ମନୋରମ, ଗ୍ରହଣୀୟ ଓ ସମ୍ଭବତଃ ତାଙ୍କ ଆତ୍ମଜୀବନୀର ଉତ୍ତମାଂଶ । ଶ୍ରୀ ମିଶ୍ରଙ୍କର ଆତ୍ମଜୀବନୀରେ ଅନେକ ସ୍ଥାନରେ ଏହିଭଳି ସୁନ୍ଦର ଉପମା ଓ ଦାର୍ଶନିକ ତତ୍ତ୍ୱ ରହିଛି । ତେଣୁ ଏହି 'ଜୀବନପଥେ' ପୁସ୍ତକଟି ଉତ୍କଳ ଭାରତୀଙ୍କ ଗନ୍ତାଘରରେ ଏକ ସର୍ବଜନ ପଠନୀୟ ଗ୍ରନ୍ଥ ହୋଇ ରହିବ ଏଥିରେ ସନ୍ଦେହ ନାହିଁ । ଶ୍ରୀ ମିଶ୍ରଙ୍କର ପୁସ୍ତକରୁ ଜୀବନର ଉଚ୍ଚ ମୂଲ୍ୟବୋଧ ସ୍ପଷ୍ଟ ଦିଶିଯାଏ । ଆଜିର ଅବକ୍ଷୟୀ ସମାଜ ପାଇଁ ଏହି ପୁସ୍ତକଟି ହଜି ଯାଉଥିବା ସମୟର ଏକ ନିଖୁଣ, ସୁନ୍ଦର ଚିତ୍ରଶାଳା ହୋଇ ରହିବ । ଶ୍ରୀ ମିଶ୍ର ପିତୃସୁଲଭ ଅଧିକାରରେ ଯୁବପିଢ଼ୀଙ୍କୁ ଉପଦେଶ ଦେବାକୁ ମଧ୍ୟ ଭୁଲି ନାହାନ୍ତି । ତାଙ୍କର ଆତ୍ମଜୀବନୀ ଯୁବପିଢ଼ୀ ପାଇଁ ନିଶ୍ଚିତ ଦିଗନିର୍ଣ୍ଣାୟକ ହେବ ।

ଶ୍ରୀ ମିଶ୍ରଙ୍କ ସହ ମୋର ପରିଚୟ ହୋଇଥିଲା ୧୯୮୭ ମସିହାରେ । ଆମେ ଦୁଇଜଣ ଓଡ଼ିଆ ଏକ ଭାରତୀୟ ପ୍ରତିନିଧି ଦଳରେ ସୋଭିଏତ୍ ୟୁନିୟନ୍ ଭ୍ରମଣ କରିବା ପାଇଁ ମନୋନୀତ ହୋଇଥିଲୁ ଏବଂ ଏକତ୍ର ରୁଷ ଦେଶର ବିଭିନ୍ନ ସ୍ଥାନ ପରିଦର୍ଶନ କରିଥିଲୁ । ସେହି ସମୟ ଭିତରେ ମୁଁ ଶ୍ରୀ ମିଶ୍ରଙ୍କ ଜ୍ଞାନଦୀପ୍ତ ଏବଂ ସ୍ନେହମୟ ବ୍ୟକ୍ତିତ୍ୱର ପରିଚୟ ପାଇଥିଲି । ସେ ସ୍ମୃତି ଅମଳିନ । ଶ୍ରୀ ମିଶ୍ରଙ୍କ କଥା ମୁଁ ମୋର ରୁଷ୍ ଭ୍ରମଣ କାହାଣୀ 'ମୈତ୍ରୀ ପାଦପର ଶାଖା ପ୍ରଶାଖା' ରେ ଲେଖିଛି । ଶ୍ରୀ ମିଶ୍ର ସମ୍ଭବତଃ ସେହି ସ୍ନେହର ଦାବିରେ ତାଙ୍କର ଆତ୍ମଜୀବନୀରେ ଦୁଇପଦ ଲେଖିବାପାଇଁ ମତେ ସୁଯୋଗ ଦେଇ ଧନ୍ୟ କରିଛନ୍ତି । ଏହି ଆତ୍ମଜୀବନୀଟି ପଢ଼ି ମୁଁ ଅଶେଷ ଆନନ୍ଦ ଲାଭ କରିଛି । ମୋର ବିଶ୍ୱାସ, ପାଠକେ ଏହି ପୁସ୍ତକରୁ କେବଳ ଆନନ୍ଦ ନୁହେଁ ଅଶେଷ ଜ୍ଞାନ ମଧ୍ୟ ଲାଭ କରିବେ ।

ଶ୍ରୀ ମିଶ୍ରଙ୍କର ମନୋବଳ, ଈଶ୍ୱର ବିଶ୍ୱାସ ଏବଂ ଆଧାତ୍ମିକ ଚିନ୍ତନ ତଥା ଆଶାବାଦ ତାଙ୍କୁ ଶତାୟୁ କରୁ ଏହା ହିଁ ଶ୍ରୀଜଗନ୍ନାଥଙ୍କ ନିକଟରେ ପ୍ରାର୍ଥନା ।

ଆଖ୍ୟାୟିକା
୨୭, ଗଜପତି ନଗର
ଭୁବନେଶ୍ୱର-୭୫୧୦୦୫

**ପ୍ରତିଭା ରାୟ**

# ମୁଖବନ୍ଧ

ଜୀବନ ଗୋଟେ ବଡ଼ ବ୍ୟାପକ ଶବ୍ଦ । ପ୍ରତ୍ୟେକ ବ୍ୟକ୍ତି ଜନ୍ମରୁ ବାଲ୍ୟକାଳ, କୈଶୋର, ଯୌବନ, ପ୍ରୌଢ଼ ଓ ବୃଦ୍ଧାବସ୍ଥା ତଥା ଜରା ବ୍ୟାଧି ଏପରି କେତେ କେତେ ଅବସ୍ଥା ଭୋଗ କରିଥାଏ ।

ଭକ୍ତକବି ମଧୁସୂଦନ 'ଜୀବନ ଚିନ୍ତା' କବିତାରେ ଲେଖିଛନ୍ତି -

''ଧନ ମାନ ଯଶ ଆଦି ଯାହା
ଭାଗ୍ୟ ଦେବୀ ପ୍ରସାଦରେ ଏ ଭବେ ଲଭନ୍ତି ନରେ
କାଳଚକ୍ର ଆବର୍ତ୍ତନେ କି ବେଗରେ ଆହା
ପଳାନ୍ତିରେ ଅନୁସରି ନିଜ ନିଜ ରାହା ।''

ଗୋଟିଏ ମୂଳମନ୍ତ୍ରରେ ମୋର ଦୃଢ଼ ବିଶ୍ୱାସ ରହିଛି । ପ୍ରସିଦ୍ଧ ବଙ୍ଗଳା ଔପନ୍ୟାସିକ ବିମଳ ମିତ୍ର ଲେଖିଛନ୍ତି, ''ଜୀବନରେ ପ୍ରତ୍ୟେକ କର୍ମ ନିଜ ପ୍ରାରବ୍ଧରୁ ପୂର୍ବନିର୍ଦ୍ଧାରିତ'' । ଈଶ୍ୱରଙ୍କ ବିନାନୁମତିରେ ବୃକ୍ଷରୁ ଗୋଟାଏ ପତ୍ର ମଧ୍ୟ ପଡ଼େ ନାହିଁ । ଆମର ଜନ୍ମ, କର୍ମ ଓ ଅବସାନ ସେହି ଦୟାମୟ ବିଶ୍ୱନିୟନ୍ତା ପରମେଶ୍ୱର ନିର୍ଦ୍ଧାରଣ କରିଅଛନ୍ତି । ତେଣୁ କୌଣସି ସୁଖ ଓ ଦୁଃଖରେ ବିଚଳିତ ନ ହୋଇ ସେହି ବିଶ୍ୱନିୟନ୍ତାଙ୍କ ଉପରେ କର୍ମଫଳ ଛାଡ଼ିଦେଇ କର୍ମରେ ଅଗ୍ରସର ହୋଇଯାଅ ।

ଆଉ ଗୋଟିଏ ଦିଗ ବିଚାର କରନ୍ତୁ । ମନୁଷ୍ୟ ଜୀବନ ଅବିକଳ ଗୋଟିଏ ନଦୀର ଗତିପଥ ସଙ୍ଗେ ତୁଳନୀୟ । ସେହି ନଦୀଟି ପ୍ରଥମେ ଗୋଟିଏ କ୍ଷୁଦ୍ର ଝରଣା ହୋଇ କୁଳୁକୁଳୁ ଶବ୍ଦରେ ସ୍ରବିଥାଏ । ଆମ ସୁକିନ୍ଦା ଜେମାଦେଈପୁର ଶାସନର ଆମର ଏକ ପର୍ବତ ପାର୍ଶ୍ୱ ଜମିରୁ ଝରଣାଟିଏ ବାହାରିଛି । ବର୍ଷାଦିନେ ବହିଯାଏ । ପାହାଡ଼ ଉପରୁ ଝରଣାଟି ପଥର ଖୋଲରୁ ବହି ଆସିଛି । ସକାଳେ ଓ ସନ୍ଧ୍ୟାବେଳେ ସେଠାକୁ ଗଲେ ଅପୂର୍ବ ନୈସର୍ଗିକ ସୌନ୍ଦର୍ଯ୍ୟ ଉପଭୋଗ କରିହୁଏ । ଧୀରେ ଧୀରେ ଅନ୍ୟ ଝରଣାମାନ ମିଶନ୍ତି । ଗୋଟିଏ କିଲୋମିଟର ତଳେ ତାହା ଗୋଟିଏ ପଥର ଉପରେ ପ୍ରପାତ ପରି ବେଶ୍ ବଡ଼ ଝରଣା । ଶେଷରେ ୨ କିଲୋମିଟର ନିମ୍ନରେ ତାହା ପ୍ରଖର ସ୍ରୋତା ବ୍ରାହ୍ମଣୀର ଉପନଦୀ ଭାବେ ପଡ଼ିଥିବା ପାଣ୍ଡରା ନଦୀରେ ଗବପାଳ ଘାଟ ପାଖରେ ମିଶିଛି । ବ୍ରାହ୍ମଣୀ ଓ ପାଣ୍ଡରାର ସଙ୍ଗମ ସ୍ଥଳ ଠିକ୍ ଗଙ୍ଗା ଯମୁନା ପ୍ରୟାଗ ପାଖରେ ମିଶିଲା ପରି ବିଶାଳ ଏବଂ ଭୟାନକ । ତାପରେ ନଦୀ ଧୀରେ ଧୀରେ ସମତଳ ଭୂମିରେ ପ୍ରବେଶ କରେ । ପୁଣି ଆଗକୁ ବଢ଼ିଚାଲେ । ତାପରେ ତ୍ରିକୋଣ

ଭୂମି ଅଞ୍ଚଳରେ ପ୍ରବେଶ କରେ । ନଦୀର ସ୍ରୋତ ମନ୍ଥର । ମାଟି ଓ ବାଲି ମନ୍ଥର ସ୍ରୋତରେ ବହନ ହୋଇ ନପାରି ତଳକୁ ରହିଯାଆନ୍ତି । ନଦୀରେ ବାଲିଚଡ଼ା ସୃଷ୍ଟି ହୁଏ ।  ନଦୀ ଭାଗ ଭାଗ ହୋଇ ସେଥିରୁ ଶାଖାନଦୀ ଉତ୍ପନ୍ନ ହୁଏ । କେତେକ ଶାଖାନଦୀ ମୁଖ୍ୟ ନଦୀ ଠାରୁ ଅଧିକ ବିଶାଳ ଓ ବେଗଗାମୀ ।

ଜୀବନଟା ଠିକ୍ ସେହିପରି । କେଉଁ ଅଦୃଶ୍ୟ ପାର୍ବତ୍ୟ ଖୋଲରୁ ନିର୍ଗତ ହୋଇ ଅନ୍ୟ ଛୋଟ ଛୋଟ ଝରଣା ସଙ୍ଗେ ମିଶି ଗୋଟିଏ ବଡ଼ ଉପନଦୀ ସୃଷ୍ଟି ହୁଏ । ତାପରେ ତ୍ରିକୋଣ ଭୂମି ଅଞ୍ଚଳରେ ନଦୀରୁ ଶାଖାନଦୀ ବାହାରି ନଦୀ ଭାଗ ଭାଗ ହୋଇଯାଏ । ଶେଷରେ ନଦୀ ସାଗରରେ ବିଲୀନ ହୁଏ । ଭକ୍ତକବିଙ୍କ ଭାଷାରେ -

''ଚାହିଁ ଚାହିଁ ସୁନୀଳ ସମୁଦ୍ରେ ତୋ ସଲୀଳ<br>
ଦେଲୁ ତୁ ଢାଳି ମହାପୂରେ<br>
ଅନନ୍ତ ସିନ୍ଧୁ ସଙ୍ଗେ      ମିଶିଗଲୁ କି ରଙ୍ଗେ<br>
ସକଳ ଭେଦ ଫିଙ୍ଗି ଦୂରେ<br>
ଲହରୀ ହୀରକର ହାର<br>
ତୋ କଣ୍ଠେ ଚହିଁ ପାରାବାର,<br>
ଲମ୍ଫାଇ ମହାନନ୍ଦେ      ଗାଏ ଗାୟତ୍ରୀ ଛନ୍ଦେ<br>
ତୋ ସଙ୍ଗେ ସଙ୍ଗୀତ ଉଦାର ।''

ମୋର ଅବସ୍ଥା ଠିକ୍ ନଦୀର ମୁହାଣରେ ସମୁଦ୍ରରେ ମିଶିଗଲା ପରି । ପରିଣତ ବୟସ ୮୩ ବର୍ଷ । ରେଳରେ ଟିକଟ କାଟି ବସିଛି । କେତେବେଳେ ଗାଡ଼ି ଆସିଯିବ । ମାତ୍ର ସେଥିପାଇଁ ଚିନ୍ତା ନାହିଁ ।

ଭାଗବତରେ କହୁଛି -

''ମହୀରେ ଥିବ ଯେତେଦିନ<br>
ଆନନ୍ଦ କରୁଥିବ ମନ ।''

ମୁଁ ସେହି ଈଶ୍ୱରଙ୍କ ନାମ ନେଇ ବଞ୍ଚିଛି । ଆଉ ଗୋଟିଏ କଥା, ପ୍ରତ୍ୟେକ ଜୀବନ ଦୁଃଖ ଓ ସୁଖ ମିଶ୍ରିତ । ଅବିମିଶ୍ର ସୁଖ ସଂସାରରେ ଦୁର୍ଲ୍ଲଭ । ନାହିଁ ସୁଖ ମସ୍ତି ।

ଯାହାଠାରୁ ଉପକାର ପାଇଛ, ତାକୁ ମନେରଖି ତାଙ୍କ ପ୍ରତି କୃତଜ୍ଞତା ପ୍ରକାଶ କର । ପାରିଲେ ପ୍ରତ୍ୟୁପକାର କର । ସ୍ପଷ୍ଟବାଦୀ ଏବଂ ସତ୍ୟବାଦୀ ହୁଅ । ଯଦି ମୋର ଏହି ପରିଣତ ବୟସର ଲେଖା ଯୁବପୀଢ଼ିକୁ କିଞ୍ଚିତ୍ ଦିଗ୍‌ଦର୍ଶନ ଦେଇପାରିବ, ତେବେ ମୋର ଶ୍ରମ ସାର୍ଥକ ହେବ ।

ଯୁବପୀଢ଼ିଙ୍କୁ ମୋର ଏହି ଉପଦେଶ । କେବଳ ଟି.ଭି., ରେଡ଼ିଓ ନଶୁଣି ଅବସର ସମୟରେ ଭଲ ଭଲ ବିଶିଷ୍ଟ ବ୍ୟକ୍ତିଙ୍କର ଜୀବନୀ ପଢ଼ନ୍ତୁ । ଯେପରି ମହାତ୍ମାଗାନ୍ଧୀଙ୍କର My Experiments with Truth, ଇଂଲଣ୍ଡର ପୂର୍ବତନ ନୋବେଲ୍ ପ୍ରାଇଜ୍ ବିଜେତା Sir Winston Churchill ଙ୍କ My Early Life, ବିଶ୍ୱବିଖ୍ୟାତ ଫ୍ରାନସ୍ ସମ୍ରାଟ Napoleaon Bonaparte ଙ୍କ ଜୀବନୀ । ସେଥିରେ ବହୁତ ଶିକ୍ଷଣୀୟ ଉପଦେଶ ପାଇବେ । ସେଥିରୁ କିୟଦଂଶ ନିଜ ଜୀବନରେ ଆହରଣ କରନ୍ତୁ । କେବଳ ସଭାସମିତିରେ ଓଜସ୍ୱିନୀ ଭାଷା ଉଦାହରଣରେ ତାହା ସୀମାବଦ୍ଧ ନ ରହୁ ।

ଏହି ପୁସ୍ତକରେ ଲିଖିତ ତଥ୍ୟଗୁଡ଼ିକ ନିଛକ ବ୍ୟକ୍ତିଗତ ସ୍ମୃତି ଓ ଅନୁଭୂତି ଉପରେ ପ୍ରତିଷ୍ଠିତ । ମୋର ସ୍ମୃତି ଓ ଅନୁଭୂତିର ଅତୀତ ଜୀବନକୁ ଘାଣ୍ଟି ଘାଣ୍ଟି ଯାହା ପାଇଛି ତାହା ପରିବେଷଣ କରିଛି । ଯଦି କେଉଁଠାରେ ଶାଳୀନତାର ଲକ୍ଷ୍ମଣରେଖା ଅତିକ୍ରମ କରିଥିବା କିମ୍ବା ବର୍ଣ୍ଣନାରେ ଅତିରଂଜିତ ବା ତ୍ରୁଟି ଦେଖିବେ, ତାହା ନିଜ ସହୃଦୟତା ଗୁଣରେ କ୍ଷମାଦେବେ ।

''ଦଣ୍ଡିବା ଶକ୍ତି ଯାର ଥାଇ
ସେ ପୁଣି କ୍ଷମା ଆଚରଇ ।''

ଶ୍ରୀ କୈଳାସଚନ୍ଦ୍ର ମିଶ୍ର

# କୃତଜ୍ଞତା ଜ୍ଞାପନ

ଏହି ପୁସ୍ତକ ଲେଖିବା ପାଇଁ ବହୁତ ବନ୍ଧୁ, ସଙ୍ଗୀ ଏବଂ ସହକର୍ମୀମାନଙ୍କର ସହାୟତା ନେଇଛି । ସେମାନେ ମୋତେ ସ୍ମରଣ କରାଇ ଦେଇନଥିଲେ ମୋ ପକ୍ଷରେ ଏହାକୁ ଲେଖିବା ସମ୍ଭବ ହୋଇନଥାନ୍ତା । ଢେଙ୍କାନାଳର ପ୍ରତ୍ୟକ୍ଷଦର୍ଶୀ ମୋର ସମୁଦି ଶ୍ରୀ ଦାମୋଦର ତ୍ରିପାଠୀ ଢେଙ୍କାନାଳ ପ୍ରଜା ଆନ୍ଦୋଳନ ବିଷୟରେ ଯାହା ଜାଣିବାକୁ ଚାହିଁଛି ତାହା ମୋତେ କହିଛନ୍ତି । ଆମର ଖାରବେଳ ନଗରର ଜଣେ ବିଦ୍ୱାନ୍ ଏବଂ ମୋର ବନ୍ଧୁ ମେଜର ନନ୍ଦକିଶୋର ପରିଡ଼ା ବହୁତ ବିଷୟ ମନେ ରଖିଛନ୍ତି ଏବଂ ମୋତେ ସ୍ମରଣ କରାଇ ଦେଇଛନ୍ତି । ଆମ ଫାଇନାନ୍ସ ଡିପାର୍ଟମେଣ୍ଟର ଶ୍ରୀ ରାଜକିଶୋର ମିଶ୍ର, ଯେ କି ମୋର କନିଷ୍ଠ ଭ୍ରାତା ସଦୃଶ ଓ ସହକର୍ମୀ ଥିଲେ ସେ ବହୁତ ପରାମର୍ଶ ଦେଇଛନ୍ତି । ଏହାଛଡ଼ା ବହୁତ ସଙ୍ଗୀ ଶୁଭେଚ୍ଛୁ ମୋତେ ଏହା ଲେଖିବାକୁ ପ୍ରେରଣା ଓ ଉତ୍ସାହ ଦେଇ ଏହି କାମରେ ଉଦ୍‌ବୁଦ୍ଧ କରାଇଛନ୍ତି । ସେପରି ଉତ୍ସାହ ନ ପାଇଥିଲେ ଏହି ପୁସ୍ତକଟି ଲୋକଲୋଚନ ଗୋଚରକୁ ଆସି ପାରି ନଥାନ୍ତା । କାରଣ ଦୀର୍ଘ ୮୩ ବର୍ଷ ବୟସ ମୋର । କୌଣସି କାଗଜ ପତ୍ର ନଥିଲା । ସେଥି ଯୋଗୁ ଲୋକଶ୍ରୁତିରୁ ମୁଁ ବହୁତ ତଥ୍ୟ ସଂଗ୍ରହ କରିଛି ।

ସେମାନଙ୍କୁ ସମସ୍ତଙ୍କୁ ମୋର ଆନ୍ତରିକ କୃତଜ୍ଞତା ଜ୍ଞାପନ କରୁଛି ।

ଶ୍ରୀ ବାବାଜୀ ମହାପାତ୍ର, ଆମ ଅର୍ଥ ବିଭାଗର ଅବସରପ୍ରାପ୍ତ ଆଡ଼ିସନାଲ୍ ସେକ୍ରେଟେରୀ, ମୋର ସହକର୍ମୀ ଏବଂ କନିଷ୍ଠ ଭ୍ରାତା ସଦୃଶ ତାଙ୍କର ବହୁମୂଲ୍ୟ ସମୟ ଦେଇ, ବହୁ କଷ୍ଟ ସ୍ୱୀକାର କରି ଏହି ପୁସ୍ତକର ପ୍ରୁଫ୍ ସଂଶୋଧନ କରିଥିବାରୁ ମୁଁ ତାଙ୍କଠାରେ କୃତଜ୍ଞ । ପରିଶେଷରେ ଓଡ଼ିଶାର ସ୍ୱନାମଧନ୍ୟା ସୁଲେଖିକା ସାରଳା ପୁରସ୍କାର ପ୍ରାପ୍ତ, ଲୋକପ୍ରିୟ 'ଯାଜ୍ଞସେନୀ' ର ପ୍ରଣେତା ମୋର କନ୍ୟା ସଦୃଶ ଏବଂ ମୋର ସୋଭିଏଟ୍ ଗସ୍ତ ସମୟରେ ସହଯାତ୍ରୀ ଶ୍ରୀମତୀ ପ୍ରତିଭା ରାୟ ତାଙ୍କର ବହୁମୂଲ୍ୟ ସମୟ ବ୍ୟୟ କରି ଏବଂ ବହୁ ଶ୍ରମ ସ୍ୱୀକାର କରି ଏହି ପୁସ୍ତକଟି ଉପରେ ତାଙ୍କର ସୁଚିନ୍ତିତ ଅଭିମତ ଦେଇଥିବାରୁ ମୁଁ ତାଙ୍କଠାରେ ଚିର କୃତଜ୍ଞ ।

ଏହି ବହିଟି ପାଠକମାନଙ୍କ ଦ୍ୱାରା ଆଦୃତ ହେଲେ ମୋର ଏହି ପରିଣତ ବୟସର ଅକ୍ଳାନ୍ତ ଶ୍ରମ ସାର୍ଥକ ହେବ ଏବଂ ମୁଁ ଦିବ୍ୟ ଆତ୍ମିକ ଆନନ୍ଦ ଉପଲବ୍ଧି କରିବି ।

ବିନୀତ ଲେଖକ

ଶ୍ରୀ କୈଳାସ ଚନ୍ଦ୍ର ମିଶ୍ର

୨୮୪ ଖାରବେଳ ନଗର, ଭୁବନେଶ୍ୱର

# ସୂଚୀପତ୍ର

# ମୋର ଜନ୍ମ ଓ ବାଲ୍ୟକାଳ

ଆଗ କାଳରେ ଟି.ଭି. ବା ରେଡ଼ିଓ ନଥିଲା । ଘରେ ଖୁବ୍ ବଡ଼ରେ ଡିବିରି ବା ବଡ଼ଲୋକ ହେଲେ ଲଣ୍ଠନ ଥାଏ । ସନ୍ଧ୍ୟାବେଳେ ପିଲାମାନେ ବୂଢ଼ୀମା ପାଖରେ ଗୁଣ୍ଡ ହୋଇ ଜିଗର କରନ୍ତି, ''ବୂଢ଼ୀମା ଗପ କହ ।'' ବୂଢ଼ୀମା କହେ, ''ଆରେ ପିଲେ, କିସ କହିବି, ସୁଖ କହିବି ନା ଦୁଃଖ କହିବି ବା ଯାହା ଅଙ୍ଗେ ନିଭେଇଛି ସେଇଆ କହିବି ।'' ପିଲାମାନେ କହନ୍ତି, ''ତୋ ଇଚ୍ଛା ଯାହା ହେଉଛି କହ ।'' କେତେ କଅଣ କଥା । ବାଘମାମୁଁ କଥା, କଣା ଭାଲୁକଥା, କଲୁଗୀବେଣ୍ଡ କଥା, ବୂଢ଼ୀ ଅସୁରୁଣୀ କଥା । ଏପରି କେତେ କଅଣ କଥା ।

ମୁଁ ସେହିପରି ଜନ୍ମ ଓ ବାଲ୍ୟକାଳ ବର୍ଣ୍ଣନା କଲାବେଳେ କଅଣ ଲେଖିବି ଭାବି ପାରୁନି । ଦୁଃଖ ଅବଶ୍ୟ ଅଛି । ମାତ୍ର ସେହି ଦୁଃଖକୁ ସହନ କରି ଗ୍ରାମବାସୀଙ୍କ ସ୍ନେହ ସହାନୁଭୂତି ମଧ୍ୟରେ ବଢ଼ିବା ସୌଭାଗ୍ୟ ଓ ଆନନ୍ଦଦାୟକ ନୁହେଁ କି ?

ମୋର ଜନ୍ମ ୧୯୨୭ ମସିହା ମାର୍ଚ୍ଚ ମାସରେ, ଯଦିଚ ସାର୍ଟିଫିକେଟ୍ ଅନୁସାରେ ୧୯୨୮ ଲେଖା ହୋଇଛି । ଗ୍ରାମ ଜେମାଦେଈପୁର ଶାସନ ସୁକିନ୍ଦା । ଯାଜପୁର ସବ୍‌ଡିଭିଜନ୍, କଟକ ଜିଲ୍ଲାରେ । ବର୍ତ୍ତମାନ ଯାଜପୁର ଏକ ସ୍ୱତନ୍ତ୍ର ଜିଲ୍ଲା । ସୁକିନ୍ଦାର ଭୌଗୋଳିକ ଅବସ୍ଥା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ପଶ୍ଚିମରେ ଢେଙ୍କାନାଳ ଜିଲ୍ଲା, ପୂର୍ବରେ ବ୍ରାହ୍ମଣୀ ନଦୀ ଏବଂ ଦକ୍ଷିଣ-ପୂର୍ବ ରେଲବାଇର ଜେନାପୁର ଷ୍ଟେସନ । ଉତ୍ତରରେ ମହାଗିରି ଓ ଟମକା ପର୍ବତମାଳା । ଏହିପରି ନଦୀ ଓ ପର୍ବତମାଳା ବେଷ୍ଟିତ ପ୍ରାକୃତିକ ସୌନ୍ଦର୍ଯ୍ୟଭରା ଅଞ୍ଚଳରେ ଆମ୍ଭର ଗ୍ରାମ ଅବସ୍ଥିତ । ବର୍ତ୍ତମାନ ସୁକିନ୍ଦା ଅଞ୍ଚଳ କ୍ରୋମାଇଟ୍ ଖଣିଜ ପଦାର୍ଥ ପାଇଁ ଭାରତ ବିଖ୍ୟାତ । ଟାଟା କମ୍ପାନୀ ତରଫରୁ କଳିଙ୍ଗଇସ୍ପାତ କାରଖାନା ଆରମ୍ଭ ହେଲାଣି । ମାତ୍ର ବାୟୁ ଓ ଜଳ ସବୁଥିରେ ପ୍ରଦୂଷଣ ନିମନ୍ତେ ବହୁତ ଦୁର୍ନାମ ଅର୍ଜନ କରିଛି । ମାତ୍ର ଆମ ପିଲାଦିନେ ଅତି ସ୍ୱଚ୍ଛ ଜଳ ଓ ବାୟୁ ସମ୍ବଳିତ ମନୁଷ୍ୟ ରହିବା ପାଇଁ ଉପଯୁକ୍ତ ସ୍ଥାନ ରୂପେ ୪/୫ ଖଣ୍ଡି ଗ୍ରାମ ଲାଗ ଲାଗ ହୋଇ ଅବସ୍ଥିତ । ହରିପୁର, ଗୋଡ଼ିପାଟଣା, ବାଲିପଶି ଇତ୍ୟାଦି ଗ୍ରାମକୁ କୁହାଯାଏ ନଦୀକୂଳ ଅଞ୍ଚଳ ।

ପିଲାଦିନ ମୋର ବହୁତ ଅସୁବିଧାରେ କଟିଥିଲା । ମୋର ଜନ୍ମକଲା ମାତା ଶରଧା ଦେବୀ ମାତ୍ର ୬ ମାସ ପରେ ମୋତେ ଛାଡ଼ି ଟାଏଫଇଡ୍ ରୋଗରେ ମୃତ୍ୟୁ

ବଣ୍ଟନ କରିଥିଲେ । ମୁଁ ମା'କ୍ଷୀର ଛାଡ଼ି ନଥିଲି । ମାତ୍ର ଆମର ଜଣେ ପଡ଼ୋଶୀ ଦେଠେଣଙ୍କର ଗୋଟିଏ ପିଲା କ୍ଷୀର ଛାଡ଼ି ଆସୁଥିଲା । ମାତ୍ର ତାଙ୍କର ମାତୃସ୍ତନରେ କ୍ଷୀର ହେଉଥିଲା ଏବଂ ସେ ସ୍ୱତଃ ଆନନ୍ଦରେ ମୋତେ ଦିନକୁ ୨/୩ ଥର କ୍ଷୀର ଖୁଆଇ ବଞ୍ଚାଇଥିଲେ । ଆମ ଗାଁ'ର ଜଣେ ଯୁବକ ବଂଶୀଧର ମୁଦୁଲି ଛେଳି ଧରିଆଣି କ୍ଷୀର ଦେଉଥିଲେ । କାରଣ, ସେତେବେଳେ ଛେଳିକ୍ଷୀର ବିକ୍ରି ହେବାର ଲାଗୁଆ ପ୍ରଥା ଶୁଣା ନ ଥିଲା । ଏଥିଯୋଗୁଁ ବଡ଼ ହେଲାପରେ ମୋତେ ଶ୍ୱାସରୋଗ ହୋଇଥିଲା । ଅଳ୍ପକେ ମୋତେ ଥଣ୍ଡା କାଶ ହେଉଥିଲା । ମୋର ପିତା ଘନଶ୍ୟାମ ମିଶ୍ର ଢାକା ଆୟୁର୍ବେଦିକ କଂପାନୀରୁ ବହୁତ ଟଙ୍କା ଦେଇ ଔଷଧ ଅଣାଇଥିଲେ । ସେ ଔଷଧର ଭଲ ଗୁଣ ଥିଲା । ମାତ୍ର ବଡ଼ ଅରୁଚିକର ଔଷଧ । ସେ ଔଷଧ ଖାଇଲେ ମୋତେ ବହୁତ ବାନ୍ତି ଉଠାଏ । ଯାହା ହେଉ ସେହି ଔଷଧରେ ମୋର ଶ୍ୱାସରୋଗ ଉପଶମ ହୋଇଥିଲା । ମୋର ବାପାଙ୍କର ମୋର ମାଉସୀଙ୍କ ସଙ୍ଗରେ ଆଉ ଥରେ ବିବାହ ହୋଇଥିଲା । ମାତ୍ର ତାଙ୍କର ଗୋଟିଏ ମାତ୍ର କନ୍ୟା ଜାତ ହୋଇଥିଲା । ଭଉଣୀର ନାମ ତାରା । ସେହି ଝିଅଟିକୁ ଉପଯୁକ୍ତ ବରଯାଙ୍କରେ ବିବାହ କରାଇଥିଲେ । ସେ ଭଉଣୀର ଚାରୋଟି ପୁତ୍ର ଓ ଗୋଟିଏ କନ୍ୟା ଜାତ ହୋଇଥିଲେ । ମାତ୍ର ସେ ମଧ୍ୟ ୧୯୭୩ ମସିହାରେ ଡେଲିଭରୀ ସମୟରେ ମୃତ୍ୟୁ ବରଣ କରିଥିଲା । ଏହିପରି ଆମର ପରିବାରର ଅନେକ ଲୋକ ଅଳ୍ପ ବୟସରେ ପ୍ରାଣ ତ୍ୟାଗ କରିଛନ୍ତି । ସେଥି ଯୋଗୁଁ ପ୍ରବାଦ ଅଛି, ''ଜନମ ମରଣ ବରଷା, କହି ନପାରେ ପୁରୁଷା ।'' ଜନ୍ମ ଓ ମୃତ୍ୟୁ ମନୁଷ୍ୟ ନିୟନ୍ତ୍ରଣର ବାହାରେ । ଏହାକୁ କେବଳ ଭଗବାନ ନିୟନ୍ତ୍ରଣ କରନ୍ତି ।

# ବିଦ୍ୟାରମ୍ଭ

୫ ବର୍ଷ ବୟସରେ ମୋର ଖଡ଼ିଛୁଆଁ ହୋଇ ବିଦ୍ୟାରମ୍ଭ ହୋଇଥିଲା । ମୁଁ ପାଠ ପଢ଼ିଲାବେଳେ ଆମ ଗ୍ରାମ ଜେମାଦେଈପୁର ଶାସନରେ ଗୋଟିଏ ମାତ୍ର ନିମ୍ନ ପ୍ରାଇମେରୀ ସ୍କୁଲ୍ ଥିଲା । ସେଥିରେ ତୃତୀୟ ଶ୍ରେଣୀ ପର୍ଯ୍ୟନ୍ତ ପାଠପଢ଼ା ହୁଏ । ଶିକ୍ଷା ବିଷୟ ଥିଲା ମଧୁବାବୁଙ୍କ ବର୍ଣ୍ଣବୋଧ, ୨୫ ଖନ୍ଦା ପର୍ଯ୍ୟନ୍ତ ପଣିକିଆ, ପ୍ରାର୍ଥନା 'ଅଖିଳବ୍ରହ୍ମାଣ୍ଡ ପତି' ଇତ୍ୟାଦି ।

ସ୍କୁଲ୍‌କୁ କିଏ ଆଗ ଆସିବ, ସେଥିପାଇଁ ପ୍ରତିଯୋଗୀତା ହୁଏ । ସକାଳ ୭ ଘଣ୍ଟା ସମୟରେ ସ୍କୁଲ ଆରମ୍ଭ । ଯିଏ ଆଗ ଆସିବ ସିଏ ଶୂନ୍ ପାହାର ପାଇବ ବା ବେତ ନାମମାତ୍ର ଛୁଆଇଁ ଦିଆଯିବ । ତାପରେ ୧ , ୨ , ୩ ଏହି କ୍ରମାନ୍ୱୟରେ ଉପସ୍ଥିତ ହାଜିରା ପଡ଼ିବ । ହେଡ୍‌ପଣ୍ଡିତ ଥିଲେ ଜଣେ ସ୍ନେହୀ ଛାତ୍ରବତ୍ସଳ ଶିକ୍ଷକ ସ୍ୱର୍ଗତଃ ଚନ୍ଦ୍ରଶେଖର ମିଶ୍ର । ବଡ଼ଚଣା ଦର୍ପଣୀ ଇଲାକାର ଲୋକ । ଦ୍ୱିତୀୟ ଶିକ୍ଷକ ମୋର ଦଦେଇ (ବଡ଼ବାପା) ସ୍ୱର୍ଗତଃ ନିଶାକର ମିଶ୍ର । ହେଡ଼ପଣ୍ଡିତଙ୍କ ଦରମା ମାସିକ ୭ ଟଙ୍କା ଏବଂ ଦ୍ୱିତୀୟ ଶିକ୍ଷକଙ୍କ ଦରମା ୫ ଟଙ୍କା । ମୋର ପିତୃବ୍ୟ ନିଶାକର ମିଶ୍ର ମୋତେ ବହୁତ ଭଲ ପାଉଥିଲେ ଏବଂ ସାଙ୍ଗରେ ସ୍କୁଲ୍‌କୁ ନେଉଥିଲେ । ମୋର ପିଲାଦିନେ ପାଠ ପଢ଼ିବାରେ ବହୁତ ଆଗ୍ରହ ଥିଲା । ୨୫ ଖନ୍ଦା ପର୍ଯ୍ୟନ୍ତ ପଣିକିଆ ମୁଖସ୍ଥ । ଓଡ଼ିଆ ଅକ୍ଷର ଗୁଡ଼ିକ ଗୋଲ ଗୋଲ କରି ଲେଖିପାରୁନଥିଲି । ସେଥିପାଇଁ ବହୁତ ଗାଳି ଖାଇଛି । ପରେ ମାଇନର ସ୍କୁଲରେ ଅନେକାଂଶରେ ତାହା ସୁଧୁରିଗଲା । ସ୍କୁଲ୍ ଆରମ୍ଭରେ ପ୍ରାର୍ଥନା ଏବଂ ଶେଷରେ ଛୁଟିବେଳକୁ ପ୍ରାର୍ଥନା ହୁଏ । ଖରାବେଳେ ଖାଇବା ପାଇଁ ୧ ଘଣ୍ଟା ଛୁଟି । ଦୁଇଓଳି ସ୍କୁଲ । ଉପରଓଳି ୨ ଟା ଠାରୁ ୪ ଟା ପର୍ଯ୍ୟନ୍ତ । ଶେଷ ଘଣ୍ଟାରେ ବଗିଚା କାମ । ସପ୍ତାହରେ ଶନିବାର ଦିନ ପାଖ ପୋଖରୀରୁ ଗରା ବା ଢାଳରେ ଥରେ ଦୁଇଥର ପାଣି ଆଣି ଶୀତଦିନେ ଫୁଲ ଗଛରେ ଦିଆଯାଏ । ସ୍କୁଲ୍ ସବ୍‌ଇନ୍‌ସ୍ପେକ୍ଟର ଆସିଲେ ବାହାର କାମ, ଯଥା:- ବଗିଚା, ସ୍କୁଲ୍‌ର ପରିଷ୍କାର ପରିଚ୍ଛନ୍ନତା ଓ ରକ୍ଷଣାବେକ୍ଷଣ ଇତ୍ୟାଦି ଦେଖନ୍ତି । ଶନିବାର ବ୍ୟତୀତ ଅନ୍ୟଦିନେ ଉପରଓଳି ପଣିକିଆ ପ୍ରଶ୍ନ, ବନାନ ପ୍ରଶ୍ନ । ବେଶୀ ଭୁଲ କଲେ ନିଜେ କାନ ମୋଡ଼ି ହୋଇ ବସ ଉଠ ହେବ । ଅତି ବେଶୀ ମାଡ଼ ଛାଟ ନଥିଲା । କାରଣ ଶାରୀରିକ ଦଣ୍ଡ ପିଲା ଓ ଶିକ୍ଷକଙ୍କ ଉପରେ ନିର୍ଭର କରେ । ଆଉ ଗୋଟିଏ କଥା ଶାରୀରିକ ଦଣ୍ଡ ଦେଲେ ଅନ୍ୟ ପିଲାମାନେ ସ୍କୁଲ୍‌କୁ ଆସିବାକୁ ଡରିବେ । ମାତ୍ର ସାମାନ୍ୟ ଶାରୀରିକ ଦଣ୍ଡ ନଥିଲା ବୋଲି କୁହାଯାଇପାରିବ ନାହିଁ ।

ଶିକ୍ଷକମାନଙ୍କର କାମ ହେଲା ସେମାନେ ଜାନୁଆରୀ ମାସରେ ତିନି ଚାରିଟି ନିକଟବର୍ତ୍ତୀ ଗ୍ରାମମାନଙ୍କୁ ଯାଇ ଅଭିଭାବକମାନଙ୍କୁ ସଙ୍ଗରେ ଆଣି ସ୍କୁଲକୁ ଆସିବେ । ପଢ଼ିଶା ପିଲାଙ୍କର ଦାୟିତ୍ୱ ହେଲା ତାଙ୍କ ଘରପାଖ ପିଲାଙ୍କୁ ଶୀଘ୍ର ଡକାଡକି ହୋଇ ସ୍କୁଲକୁ ଆସିବେ ।

ସ୍କୁଲରେ ଶନିବାର ବ୍ୟତୀତ ଅନ୍ୟ ଦିନମାନଙ୍କରେ ଉପରଓଳି ପଣିକିଆ ପ୍ରଶ୍ନ ଏବଂ ବନାନ ପ୍ରଶ୍ନ । ଯଥା, ୧୯ x ୯ କେତେ, ୨୩ x ୭, ୧୩ x୯ ଇତ୍ୟାଦି । ସେହିପରି ୧୭୧, ୧୨୩ କେଉଁଠି ଅଛି । ସେହିପରି ବନାନ ମଧ୍ୟ କଷ୍ଟକର ପ୍ରଶ୍ନ । ଶଗଡ଼, ଶାଗ, ଶ, ଷ, ସ ର ପ୍ରୟୋଗର ପ୍ରଭେଦ, ଯୁକ୍ତାକ୍ଷର ସଙ୍ଗରେ ଉତ୍ତମ ରୂପେ ପରିଚୟ, ଯେପରି ଅଙ୍କ, ଅଙ୍ଗଦ, ଆଜ୍ଞା ଇତ୍ୟାଦି । ଆଜିକାଲି ଏହି ପଣିକିଆ ଓ ବନାନ ପ୍ରଶ୍ନ ପ୍ରାୟ ଉଠିଗଲାଣି । ପଣିକିଆ ଖୁବ୍ ହେଲେ ୧୦ ଖନ୍ଦା ପର୍ଯ୍ୟନ୍ତ । ଆଉ ବନାନରେ ଯୁକ୍ତାକ୍ଷର ବ୍ୟବହାର କରାନଯାଇ ଅନୁସ୍ୱାର, ଚନ୍ଦ୍ରବିନ୍ଦୁରେ କାମ ଚଳୁଛି । ଏତେ କଷ୍ଟକୁ ପିଲେ କାହିଁକି ଯିବେ ?

ସ୍କୁଲ୍ ଗୁଡ଼ିକ ଲୋକାଲ ବୋର୍ଡ଼୍ ଅଧୀନରେ ଥିଲା । ଅପର ପ୍ରାଇମେରୀ ଏବଂ ମାଇନର ସ୍କୁଲଗୁଡ଼ିକ ଜିଲ୍ଲା ବୋର୍ଡ଼୍ ଅଧୀନରେ ପରିଚାଳିତ ହେଉଥିଲା । ଆଉ ସପ୍ତାହରେ ଥରେ ଉପରଓଳି ବଗିଚାରୁ ମାଟି ଆଣି ଦୁଆତ, ଘୋଡ଼ା ପ୍ରଭୃତି ମାଟିକାମ ଶିକ୍ଷା ଦେଉଥିଲେ । ହସ୍ତକର୍ମ ପାଇଁ ସର୍କଲରୁ ଜଣେ ଶିକ୍ଷକ ଆସି ଦିନେ ଦୁଇଦିନ ପିଲାଙ୍କୁ ଶିଖାଉଥିଲେ । ଉପର କ୍ଲାସରେ ତାଳପତ୍ର ଆସନ, ତାଳପତ୍ରକୁ ସାଇଜ୍ କରି କାଟି ବ୍ୟାଗ ପ୍ରସ୍ତୁତ କରିବା, କାଗଜର ଟୋପି, ଡଙ୍ଗା ତିଆରି କରିବା ଶିକ୍ଷା ଦିଆଯାଉଥିଲା । ବର୍ଷକୁ ଥରେ ସବୁ ପ୍ରାଇମେରୀ ସ୍କୁଲର ପିଲାମାନେ ଆସି ଗୋଟିଏ କେନ୍ଦ୍ର ସ୍କୁଲରେ ଏକତ୍ର ହୁଅନ୍ତି ଖେଳ ପ୍ରତିଯୋଗିତା ପାଇଁ । ସ୍କୁଲ୍ S.I. ବା Inspector ଆସି ପ୍ରାଇଜ୍ ବାଣ୍ଟନ୍ତି । ଶେଷରେ ସଭା ହୁଏ । ମୁଢ଼ି, ଉଖୁଡ଼ା ଓ ଲଡୁ ବଣ୍ଟା ହୁଏ । ମୋର ଇଚ୍ଛା ହୁଏ ଆଉଥରେ ସେହି ପିଲାଦିନର ପରିବେଶକୁ ଫେରିଯିବା ପାଇଁ । ମାତ୍ର ତାହା ଦିବାସ୍ୱପ୍ନ ।

ସ୍କୁଲରେ ଶିକ୍ଷକମାନଙ୍କର ଦରମା ଅଳ୍ପ । ତେଣୁ ସ୍ଥାନୀୟ ଶିକ୍ଷକମାନେ ପ୍ରାୟ ନିଜ ଘରେ ରହୁଥିଲେ । ଦୂର ଶିକ୍ଷକମାନଙ୍କ ପାଇଁ ପିଲାମାନେ ପାଳି ଆଣନ୍ତି । ମାସକୁ ଜଣକୁ ଥରେ । ବାହାର ଶିକ୍ଷକମାନେ ରୋଷେଇ କରି ଖାଆନ୍ତି । ସ୍କୁଲ୍ ଘରେ ରହନ୍ତି । ଦୀନବନ୍ଧୁ ପାତ୍ର ବୋଲି ଜଣେ ହାତୀବାରିର ଶିକ୍ଷକ ଆମ ଗାଁ ସ୍କୁଲରେ ବହୁ ବର୍ଷ କାର୍ଯ୍ୟ କରିଥିଲେ । ସେ ବହୁତ ଦକ୍ଷ ଏବଂ ଛାତ୍ରବତ୍ସଳ । ଭାରତ ଓ ଓଡ଼ିଶାର ଇତିହାସ,

ଭୂଗୋଳ ଆଦି ସବୁଗୁଡ଼ିକୁ ସୁନ୍ଦର କବିତାରେ ଲେଖି ପିଲାମାନଙ୍କୁ ବୋଲାଉଥିଲେ । ଆଉ ଗୋଟିଏ ସ୍ମରଣୀୟ ଅନୁଭୂତି ହେଉଛି ଗଣେଶ ପୂଜା ଓ ସରସ୍ୱତୀ ପୂଜାରେ ସ୍କୁଲ୍‌ରେ ପୂଜା ହୁଏ । ପୂଜା ପରବର୍ତ୍ତୀ ଦିନରେ ଗୋଟିଏ ମାଟିମୂର୍ତ୍ତି ଧରି ଆମେ କେତେକ ବିଶିଷ୍ଟ ଲୋକମାନଙ୍କ ଘରକୁ ଯାଇ 'ଚାଟ' ବୋଲୁ । ସରସ୍ୱତୀ ପୂଜାର ଗୀତ ହେଲା ''ବାରମାସ ମଧ୍ୟେ ଅଟଇ ସାର, ମାଘ ପଞ୍ଚମୀକୁ ...... ହୋଇ ବାହାର'' ଇତ୍ୟାଦି । ଗଣେଶ ପୂଜାକୁ 'ଚାଟ'ରେ ବୋଲୁଁ ''କରୀ କପୋଳେ ଶୋହେ ଚିତା, ଖଡ଼୍‌ଗ୍ ଡମ୍ବରୁ ଶୋହେ ବ୍ରହ୍ମଚେତା । ଜ୍ଞାନଗୁରୁ ବୋଲି ଦେବେ ଦେଲେ ବର, ନମୋ ନମୋ ଗଣନାଥ ବିଦ୍ୟାବର ।'' ଯାହା ପଇସା ଆସିଲା ସେଥିରେ ସ୍କୁଲ୍‌ରେ ଭୋଜି ହୁଏ ।

ଆମ ଗ୍ରାମ ପ୍ରାଇମେରୀ ସ୍କୁଲ୍‌ରୁ ପାଶ୍ କରି ମୁଁ ହାତୀବାରି ଉଚ୍ଚପ୍ରାଥମିକ ସ୍କୁଲ୍‌କୁ ଗଲି । ସେଠାରେ ଶିକ୍ଷକମାନେ ମଧ୍ୟ ସେହି ଗ୍ରାମର । ହେଡ୍‌ପଣ୍ଡିତ ଥିଲେ ସ୍ୱର୍ଗତଃ କୃଷ୍ଣଚନ୍ଦ୍ର ରଣା । ଅନ୍ୟ ଶିକ୍ଷକମାନେ ହେଲେ ସ୍ୱର୍ଗତଃ ସୁଦର୍ଶନ ପ୍ରଧାନ, ନଗେନ୍ଦ୍ର ପ୍ରଧାନ ପ୍ରଭୃତି । ସୁଦର୍ଶନ ପ୍ରଧାନ ଥିଲେ ଅତ୍ୟନ୍ତ ଛାତ୍ରବତ୍ସଳ ଏବଂ ଦକ୍ଷ । ସେମାନେ ୬ ଭାଇ । ବାପ, ମା ଓ ଭାଇମାନେ ଏକାନ୍ନବର୍ତ୍ତୀ ଏକ ଆଦର୍ଶ ପରିବାର । ପିଲାମାନେ ଚାଷ କାର୍ଯ୍ୟରେ ଧୁରନ୍ଧର । ବାପ ମା ବଞ୍ଚି ଥାଉ ଥାଉ ପୃଥକ୍ ହେବାର ପ୍ରଶ୍ନ ଉଠିପାରିବ ନାହିଁ । ତାଙ୍କ ଘରକୁ ଗଲେ ସେମାନଙ୍କର କି ସ୍ନେହପୂର୍ଣ୍ଣ କଥାବାର୍ତ୍ତା ଏବଂ ଆଦର ଅଭ୍ୟର୍ଥନା । ସେହି ପରିବାର କଥା ଉଠିଲେ ସ୍ୱର୍ଗତ କାଳିନ୍ଦୀ ପାଣିଗ୍ରାହୀ, ଓଡ଼ିଆ ସାହିତ୍ୟର ସବୁଜ ଯୁଗର ସ୍ରଷ୍ଟା ଏବଂ ଆମ ସ୍ୱନାମଧନ୍ୟ ମୁଖ୍ୟମନ୍ତ୍ରୀ ନନ୍ଦିନୀ ଶତପଥୀଙ୍କର ପିତାଙ୍କର କାଳଜୟୀ ଉପନ୍ୟାସ ''ମାଟିର ମଣିଷ'' କଥା ମନେପଡ଼େ । ବରଜୁ ଓ ଛକଡ଼ି ଦୁଇଭାଇ । ଦୁଇଭାଇ ସିନା ଏକା ମା ପେଟରୁ ଜନ୍ମ ମାତ୍ର ବୋହୂମାନେ କାହା ବାପ ଘର କଣ୍ଟାପଡ଼ା ହେଲେ କାହା ବାପ ଘର ନରଦା । ସବୁଦିନେ ଦୁହିଁଙ୍କର କଳି । ଶେଷକୁ ସାନଭାଇ ଛକଡ଼ି ସ୍ତ୍ରୀ କଥାରେ ପଡ଼ି ଜିଦ୍ ଧରିଲା ଭିନେ ହେବ । ଘର ଜମି ଯାହା ଭାଗ ପଡ଼ିବ ଏବଂ ଘର ଭାଗ ଭାଗ କରି ବାଣ୍ଟିନେବା ପାଇଁ । ବାପ ମଲାବେଳକୁ କହିଯାଇଥିଲେ ଘରେ ପାଚେରୀ ଉଠିବ ନାହିଁ, ଜମି ବାଣ୍ଟ ହେବ ନାହିଁ । ଶେଷକୁ ବଡ଼ଭାଇ ବାପ କଥା ମନେପକେଇ ସ୍ତ୍ରୀ ହାରା ବୋଉକୁ ସଙ୍ଗରେ ନେଇ ପିଲା ଦୁଇଟିଙ୍କ ହାତ ଧରି ଲୁଗା କେତେଖଣ୍ଡ ଗଣ୍ଠିଲି ବାନ୍ଧି ଘରଛାଡ଼ି ଚାଲିଯାଉଛି । ପୋଖରୀ କୂଳ ହେଲାରୁ ସାନଭାଇ ଛକଡ଼ିର ହୃଦୟ ପରିବର୍ତ୍ତନ ହୋଇଛି । ଦଉଡ଼ି ଦଉଡ଼ି ଆସି ଗାଁ

ମୁଣ୍ଡ ପୋଖରୀ କୂଳରେ ଭାଇ ଓ ଭାଉଜଙ୍କ ସାମନାରେ କାନ୍ଦି କାନ୍ଦି କହୁଛି ଭାଇ ଫେରିଚାଲ, ମୋର ଭୁଲ୍ ହୋଇଛି । କି ହୃଦୟସ୍ପର୍ଶୀ ଉପନ୍ୟାସ । ଏହି ବହି ବହୁ ଇଉରୋପୀୟ ଭାଷାରେ ଯଥା ନରୱେ ଓ ସୁଇଡେନ୍ ଭାଷାରେ ଅନୁଦିତ ହୋଇଛି । ମାତ୍ର ଏପରି ଏକାନ୍ନବର୍ତ୍ତୀ ପରିବାର ବର୍ତ୍ତମାନ ସ୍ୱପ୍ନ ପ୍ରାୟ । ଗ୍ରାମ୍ୟ ସଭ୍ୟତା ପରିବର୍ତ୍ତନ ହୋଇ ଏବେ ହେଲା ବ୍ୟକ୍ତିକୈନ୍ଦ୍ରିକ ସହରୀ ସଭ୍ୟତା । ପରିବାର ବୋଇଲେ ନିଜ ସ୍ତ୍ରୀ, ପିଲେ । ଏପରିକି ନିଜ ବୃଦ୍ଧ ପିତାମାତାଙ୍କୁ ମଧ୍ୟ ପାଖରେ ରଖିବାକୁ ବୋହୂମାନେ ନାରାଜ । କି ଯୁଗ ହେଲା ?

ପ୍ରାଇମେରୀ ସ୍କୁଲ୍‌ରୁ ମୁଁ ଅପରପ୍ରାଇମେରୀ ସ୍କୁଲ୍ ବୃତ୍ତି ପରୀକ୍ଷା ପାଇଁ ଯାଜପୁର ଯାଇଥିଲି । ମାତ୍ର ସେ ପରୀକ୍ଷାରେ ବାଳିକାମାନଙ୍କର ଗଣିତ ପ୍ରଶ୍ନ ଲେଖିଥିବାରୁ ମୁଁ ବୃତ୍ତି ପାଇପାରିଲି ନାହିଁ । ସେହି ସମୟରେ ମହାରାଣୀ ଭିକ୍ଟୋରିଆଙ୍କ ରଜତ ଜୟନ୍ତୀ ୨୫ ବର୍ଷ ରାଜତ୍ୱ ପୂର୍ଣ୍ଣ ହେଲାରୁ ମହା ଯାକଜମକରେ ପାଳିତ ହେଉଥିଲା । ବହୁତ ସ୍କୁଲ୍‌ରୁ ପିଲାମାନେ ଆସିଥିଲେ । ସମସ୍ତଙ୍କୁ ମୁଢ଼ି, ଉଖୁଡ଼ା ଓ ଲଡୁ ବଣ୍ଟା ହୋଇଥିଲା ।

ଏହାପରେ ମୁଁ ଏବଂ ମୋର ଭାଇନା ହୃଦାନନ୍ଦ ମଧୁପୁର ମାଇନର ସ୍କୁଲକୁ ଗଲୁ ମାଇନର ପଢ଼ିବା ପାଇଁ ।

ଗ୍ରାମରେ ଥିଲାବେଳେ ଆଉ କେତେକ ଅନୁଭୂତି ଉଲ୍ଲେଖ କରିବାକୁ ମନ ବଳାଉଛି । ମୋର ଦଦେଇ ନିଶାକର ମିଶ୍ର ଜଣେ ଅତି ସ୍ନେହୀ ଛାତ୍ରବତ୍ସଳ ଶିକ୍ଷକ ଏବଂ ନୈଷ୍ଠିକ ବ୍ରାହ୍ମଣ ଥିଲେ । ତାଙ୍କର ଜଣେ ଘନିଷ୍ଠ ବନ୍ଧୁ ଥିଲେ । ଆମ ଗ୍ରାମ ନିକଟ ହାତୀବାରି ଗ୍ରାମର ବାହାରେ ଗୋଟିଏ ଚମଡ଼ା ଗୋଦାମ ଥିଲା । କଟକ ବିରିବାଟୀ ଗ୍ରାମର ଜଣେ ମୁସଲମାନ ଲୋକ ମଲା ଗୋରୁ ଗାଈଙ୍କର ଚମଡ଼ା ସଂଗ୍ରହ କରିବା ପାଇଁ ସରକାରଙ୍କ ଠାରୁ ଲିଜ୍ ନେଇଥିଲେ । ସେ ଏକୁଟିଆ ଥିବାରୁ ତାଙ୍କୁ ସାଙ୍ଗ ସାଥୀ ମିଳୁ ନଥିଲେ । ତେଣୁ ତାଙ୍କର ଗୋଟିଏ ସହକର୍ମୀଙ୍କୁ ଗୋଦାମ ଜଗିବାପାଇଁ ରଖାଇ ଦେଇ ଆମ ଗ୍ରାମକୁ ଚାଲିଆସୁଥିଲେ । ମୋ ଦଦେଇଙ୍କ ସଙ୍ଗେ ତାଙ୍କର ଘନିଷ୍ଠ ବନ୍ଧୁତା ଥିବାରୁ ଶନିବାର ରାତି ଏବଂ ରବିବାର ପୂରାଦିନ ରହି ରବିବାର ସନ୍ଧ୍ୟାବେଳକୁ ଚାଲି ଯାଉଥିଲେ । ଶନିବାର ଓ ରବିବାର ସକାଳେ ଗୀତା, କୋରାନ୍ ପ୍ରଭୃତି ଧର୍ମଶାସ୍ତ୍ର ଚର୍ଚ୍ଚା ହେଉଥିଲା । ଆମର ଗୋଟିଏ ବାହାର ଘର ଥିଲା । ସେ ଘରେ ଗୋଟିଏ ଖଟ ଥିଲା । ସେ ସେଠାରେ ଶୋଉଥିଲେ । ଆମ ଘରେ ତାଙ୍କୁ ଥାଳି ବା ପତ୍ରରେ ଖାଇବାକୁ ଦିଆଯାଉଥିଲା । ହିନ୍ଦୁ ମୁସଲମାନ ବାରଣ ନଥିଲା । କେବଳ ଆମ ଭିତର ଘରକୁ ସେ

ଆସୁନଥିଲେ । ମାସରେ ୨/୩ ଥର ଆସନ୍ତି ଏବଂ ପୁଣି କେବେ ଆସିବି କହିଦେଇ ଯାଆନ୍ତି । ଅତି ସୌହାର୍ଦ୍ଦ୍ୟପୂର୍ଣ୍ଣ ଆଲୋଚନା । ଆମ ପିଲାମାନଙ୍କୁ ଖୁବ୍ ଭଲ ପାଆନ୍ତି । ଘରେ ଯାହା ଭାତ, ଡାଲି, ତରକାରୀ ରନ୍ଧା ହୋଇଥାଏ ଖା'ନ୍ତି । କୌଣସି ଆଡ଼ମ୍ବର ନଥାଏ ।

ଆଉ ଜଣେ ମୁସଲମାନ ଫକୀର ଆମ ଗ୍ରାମକୁ ଆସି ଆମ ବାହାର ଘରେ କିଛି ଦିନ ରହିଥିଲେ । ସେ ଗୋଟିଏ ଛୋଟ ବ୍ୟାଗ୍, ଗୋଟିଏ କମ୍ବଳ ଆଣିଥାନ୍ତି । ନଡ଼ିଆ ଖୋଳର ଏକ ନୋଟା । ସେ ମଧ କୋରାନ୍ ଓ ଅନ୍ୟ ଧର୍ମଶାସ୍ତ୍ର ଦଦେଇଙ୍କ ସଙ୍ଗେ ଆଲୋଚନା କରନ୍ତି ।

ଆଉ ଜଣେ ବିଶିଷ୍ଟ ଅତିଥି ଆସନ୍ତି । ସେ ହେଉଛନ୍ତି ଜଣେ ଗୃହତ୍ୟାଗୀ ସନ୍ନ୍ୟାସୀ ଶ୍ରୀ ଗିରୀଶଚନ୍ଦ୍ର ପାଣିଗ୍ରାହୀ । ଅତି ଉଚ୍ଚକୋଟୀର ଦେବୀ ସାଧକ । ଘର ମେଦିନୀପୁରରେ । ଉତ୍କଳୀୟ ବ୍ରାହ୍ମଣ । ଆମ ଘରେ ଆଶ୍ୱିନ ମାସରେ ବହୁତ ଦିନ ରହନ୍ତି । ଗ୍ରାମରେ ନିଜ ପରିବାରରେ କେହି ନାହାନ୍ତି । ଯାହା ରୋଜଗାର କରନ୍ତି ସେଥିରେ ଗୋଟିଏ ଦୁର୍ଗା ମନ୍ଦିର ପ୍ରତିଷ୍ଠା କରିଥିଲେ । ତାଙ୍କର ନିଷ୍ଠାପର ଦେବୀ ସାଧନା ଏବଂ ଏକନିଷ୍ଠ ଧ୍ୟାନ ନ ଦେଖିଲେ ବିଶ୍ୱାସ କରିହେବ ନାହିଁ । ବୟସ ୮୦ ରୁ ଉର୍ଦ୍ଧ୍ୱ । ଅତି ନିଷ୍ଠାପର ଜୀବନ । ସକାଳ ୪ ଘଣ୍ଟାରୁ ଉଠି ପ୍ରାଣାୟାମ ଯୋଗ ସାଧନା କରନ୍ତି । ତାପରେ ପାଣି ପିଇ ନଦୀକୁ ଯାଇ ସ୍ନାନ ଇତ୍ୟାଦି ପ୍ରାତଃକର୍ମ ସାରି ୮ ଘଣ୍ଟାରେ ଫେରନ୍ତି ।

ନଦୀରେ ସ୍ନାନ କଲାବେଳେ କେତେ ମନ୍ତ୍ର ପଢ଼ନ୍ତି, ଦେଖିବାର କଥା ; ତାପରେ ଆସି ଟିକିଏ ସରବତ ବା ଚା ପିଇ ପୂଜାରେ ବସନ୍ତି ଦିନ ୩ ଘଣ୍ଟା ପର୍ଯ୍ୟନ୍ତ । ପୂଜା ସାରି ଭୋଜନ କଲାବେଳକୁ ଅପରାହଣ ୪ ଘଣ୍ଟା । ଅରୁଆ ଅନ୍ନ, ଡାଲମା ଓ ସାମାନ୍ୟ ତରକାରୀ । ଖାଇ ସାରିଲା ପରେ ଗୋଟିଏ କଂସାରେ ସଫା କପଡ଼ା ପକାଇ କଂସାଏ ପାଣି ନାକବାଟେ ପିଅନ୍ତି । ତାପରେ ଏକଘଣ୍ଟା ବିଶ୍ରାମ । ରାତିରେ କୌଣସି ଅନ୍ନ ବ୍ୟଞ୍ଜନ ଖାଦ୍ୟ ନାହିଁ । କେବଳ ଭଲ ଭାବରେ ଆଉଟା କ୍ଷୀର ଏକ ଗ୍ଲାସ ଓ ସନ୍ଧ୍ୟା ୯ ଘଣ୍ଟା ମଧ୍ୟରେ ଶୟନ । ଆଉ କେହି ନିଦ୍ରା ଭଂଗ କରିବେ ନାହିଁ । ପ୍ରାତଃ ୪ ଘଣ୍ଟାରୁ ଶଯ୍ୟା ତ୍ୟାଗ ଏବଂ ମୁହଁ ଧୋଇ ପ୍ରାଣାୟାମ ଇତ୍ୟାଦି ଦୈନିକ କର୍ମ ଆରମ୍ଭ । ଧନ୍ୟ ତାଙ୍କର ନିଷ୍ଠାପର ସାଧନା ।

ଦେବୀ ସାଧନା ଅତି ଉଚ୍ଚକୋଟୀର । ସେତେବେଳେ କୌଣସି ବ୍ୟାଘାତ ହେବନାହିଁ । ନୀଳଗିରି ଗଡ଼ଜାତରେ ପ୍ରଜାମେଳି ହୋଇଥିଲା । ଏହାକୁ ଶାନ୍ତ କରାଇବା

ପାଇଁ ଗିରୀଶ ପାଣିଗ୍ରାହୀ ଡକରା ପାଇ ଯାଇ ସେଠାରେ ଆଠ ଦିନ ରହିଥିଲେ । ପ୍ରାୟ ୩ ଦିନ ଦେବୀ ସାଧନା କଲେ । ସାଧନା ପରେ କହିଲେ, ''ଦେବୀ ପ୍ରସନ୍ନ ହୋଇଛନ୍ତି ଏବଂ କହିଛନ୍ତି ଏହି ପ୍ରଜାମେଳି ଶାନ୍ତ ହୋଇଯିବ । ମାତ୍ର ଏହା କେବଳ ବର୍ଷକ ପାଇଁ । ବର୍ଷକ ପରେ ଆପଣଙ୍କ ହାତରୁ ରାଜ୍ୟ ଶାସନ ଚାଲିଯିବ ।'' ଏହା ୧୯୪୬ ମସିହା ଘଟଣା । ୧୯୪୮ ମସିହାରେ ଜାନୁଆରୀ ମାସରେ ଗଡ଼ଜାତ ରାଜ୍ୟ ସବୁ ଓଡ଼ିଶା ପ୍ରଦେଶରେ ମିଶ୍ରଣ ହେଲା । କେବଳ ମୟୂରଭଞ୍ଜ ୧୯୫୦ରେ ମିଶ୍ରଣ ହେଲା । ଖରସୁଆଁ ଷଢ଼େଇକଳା ଓଡ଼ିଶାରେ ମିଶିଥିଲା । ମାତ୍ର ଓଡ଼ିଶାର ସେତେବେଳର କେତେକ ପ୍ରମାଦପୂର୍ଣ୍ଣ ପଦକ୍ଷେପ ଯୋଗୁଁ ଏବଂ ରାଷ୍ଟ୍ରପତି ରାଜେନ୍ଦ୍ର ପ୍ରସାଦଙ୍କ ସମର୍ଥନ ଯୋଗୁ ଷଢ଼େଇକଳା ଖରସୁଆଁ ବିହାର ରାଜ୍ୟରେ ମିଶିଲା । ବର୍ତ୍ତମାନ ଏହା ଝାଡ଼ଖଣ୍ଡ ରାଜ୍ୟରେ । ଏହା ଓଡ଼ିଶାର ଏକ ଦାରୁଣ କ୍ଷତି । ସେଠାରେ ଓଡ଼ିଆ ଭାଷା ମଧ୍ୟ ସ୍କୁଲମାନଙ୍କରୁ ଉଠାଇ ଦେବାପାଇଁ ମସୁଧା ଚାଲିଛି । ପଣ୍ଡିତ ଗୋଦାବରୀଶ ମିଶ୍ର ଓ ନୀଳକଣ୍ଠ ଦାସଙ୍କ ପୂର୍ଣ୍ଣ ଓଡ଼ିଶାର ସ୍ୱପ୍ନ ଅଧୁରା ରହିଗଲା । ଓଡ଼ିଶାରେ ବହୁତ ଗଣ ଆନ୍ଦୋଳନ ଏହାର ବିରୋଧରେ ହୋଇଥିଲା । ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀଙ୍କ ଦୁର୍ବଳ ନେତୃତ୍ୱ ଏବଂ ଓଡ଼ିଶାବାସୀଙ୍କ ଏକତାର ଅଭାବ ଯୋଗୁଁ ଏପରି ଅନ୍ୟାୟକୁ ଆମେ ମୁଣ୍ଡପାତି ସହିନେଲୁ ।

## ମାଇନର ସ୍କୁଲ୍‌ରେ ଶିକ୍ଷା

ହାଟୀବାରି ହାଇସ୍କୁଲ୍‌ରୁ ଭର୍ଣ୍ଣାକୁଲାର ୫ମ ଶ୍ରେଣୀ ପାସ କରି ମୁଁ ଓ ମୋର ଭାଇନା ହୃଦାନନ୍ଦ ମଧୁପୁର ମାଇନର ସ୍କୁଲ୍‌ରେ ପୁନର୍ବାର ୫ମ ଶ୍ରେଣୀରେ ନାମ ଲେଖାଇଲୁ ସ୍କୁଲ୍‌ଟିର ସୌନ୍ଦର୍ଯ୍ୟମୟ ପ୍ରାକୃତିକ ସୌନ୍ଦର୍ଯ୍ୟଭରା ଅବସ୍ଥିତି ଉତ୍କଳମଣି ଗୋପବନ୍ଧୁଙ୍କ ବକୁଳବନ ସ୍କୁଲ୍ ସଙ୍ଗେ ତୁଳନୀୟ । ପଶ୍ଚିମରେ ପୁଣ୍ୟତୋୟା ବ୍ରାହ୍ମଣୀ ନଦୀ । ଦକ୍ଷିଣରେ ନନ୍ଦନକାନନ ନାମକ ବିରାଟ ଆମ୍ବତୋଟା, ଦୁଇ ମାଇଲ ଲମ୍ବ, ୨ ମାଇଲ୍ ଓସାର । ଜାତି ଜାତି ଆମ୍ବ । ଆମ୍ବ ତଳେ ପଡ଼ିଗଲେ ଗୋଟାଇ ଖାଇବ ମାତ୍ର ଚଢ଼ିକରି ତୋଳିଲେ ବା ଫୋପଡ଼ ମାରି ନେଲେ ଜଗୁଆଳି ଧରି ନେଇ କଚେରୀରେ ହାଜର, ୨ ଟଙ୍କା ଜରିମାନା । ନ ହେଲେ ଆକଟ ହେବ କିପରି ? ପ୍ରଥମ ବର୍ଷ ମୋର ଭାଇନା ହୃଦାନନ୍ଦଙ୍କ ମାମୁଁଘରେ ରହିଥିଲୁ । ସେଠାରୁ ୩ ମାଇଲ୍ ବାଟ ଚାଲି ଚାଲି ଗଲାବେଳକୁ ସ୍କୁଲ୍ ଡେରି ହୋଇଯାଏ । ତେଣୁ ଷଷ୍ଠ ଓ ସପ୍ତମ ବେଳକୁ ସ୍କୁଲ୍ ହଷ୍ଟେଲକୁ ଚାଲିଗଲୁ । ମଧୁପୁରର ସ୍ମରଣୀୟ ଯାତ୍ରା ପ୍ରସିଦ୍ଧ ନାରାୟଣ ଗୋସାଇଁଙ୍କ ମହାବିଷୁବ ସଂକ୍ରାନ୍ତି ପୂର୍ବଦିନ ଠାରୁ ସଂକ୍ରାନ୍ତି ଦିନ ଓ ତା ପର ୩ ଦିନ ହୁଏ । ଠାକୁର ସିଙ୍ଗାପୁର ଗ୍ରାମରେ ମଧୁପୁରର

ରାଜା ସାହେବଙ୍କ ବଡ଼ ପୋଖରୀରେ ଗୋଟିଏ ମଣ୍ଡପ ଭିତରେ ବୁଡ଼ି ରହିଥାନ୍ତି । ଖୋଳ କରତାଳ ଏବଂ ସଂକୀର୍ତ୍ତନ ଭିତରେ ହରିବୋଲ ହୁଳହୁଳି କୋଳାହଳ ଧ୍ୱନି ମଧ୍ୟରେ ଠାକୁର ପାଣିରୁ ବାହାରନ୍ତି । ବିଷୁବ ସଂକ୍ରାନ୍ତି ପୂର୍ବଦିନ, ସଂକ୍ରାନ୍ତି ଦିନ ଓ ପରଦିନ ଏହିପରି ୩ ଦିନ ଧରି ମେଳା ବସେ । ଅସଂଖ୍ୟ ଭକ୍ତ ଆସନ୍ତି । ରାତିରେ ଭଜନ ସଂଗୀତ ବୋଲାଯାଏ । ଭଲ ଭଲ ଗାୟକ ଓ ବାୟକ ଆସନ୍ତି । ସେହି ତିନି ଦିନ ସ୍କୁଲ୍ ବନ୍ଦ ହୁଏ । ଠାକୁର ପୋଖରୀ ଭିତରେ ରହିବାରୁ ସେ ପାଣିରେ ମଇଳା କରିବା ବା ମଇଳା ଲୁଗା କାଚିବା ମନା । ଆଖ ପାଖ ଗାଁ'ର ଲୋକେ ସେହି ପାଣିକୁ ଗରା, ହାଣ୍ଡିରେ ନେଇ ପୂଜା ଓ ପିଇବା ସକାଶେ ବ୍ୟବହାର କରନ୍ତି । ଠିକ୍ ବିନ୍ଦୁସାଗର ପୋଖରୀ ପରି ଆକାରରେ ଟିକିଏ ସାନ ହେଲେ ବି ପାଣି ସ୍ୱଚ୍ଛ ଓ ପରିଷ୍କାର । ସ୍ୱଭାବ କବି ଗଙ୍ଗାଧରଙ୍କ ଭାଷାରେ, ''ନୀର ନୁହେଁ ଜନନୀର କ୍ଷୀର ପ୍ରତ୍ୟକ୍ଷେ ।'' ସେହିପରି ବହୁତ ଜାଗାରେ ଜଳକଷ୍ଟରୁ ରକ୍ଷା କରିବା ପାଇଁ ରାଜା ଓ ଜମିଦାରମାନେ ବହୁ ଜାଗାରେ କୂପ ଓ ପୁଷ୍କରିଣୀ ମାନ ଖନନ କରାଇଥିଲେ । ମରହଟ୍ଟା ରାଣୀ ଅହଲ୍ୟାବାଈଙ୍କ ଆଦର୍ଶରେ ଓଡ଼ିଶାର ୨୬ ଗଡ଼ଜାତ ଓ ଅନେକ ଜମିଦାରୀରେ ଏପରି ଧର୍ମକାର୍ଯ୍ୟମାନ କରାଯାଉଥିଲା । ରକ୍ଷଣାବେକ୍ଷଣ ଅଭାବରୁ ସେଗୁଡ଼ିକ ନଷ୍ଟ ହୋଇଯାଇଅଛି । ବର୍ତ୍ତମାନ ସରକାର ଚଳାଇଛନ୍ତି ସ୍ୱଚ୍ଛଳ ଜଳଧାରା । ଫଳରେ ବହୁତ ଜଳ ବିନିର୍ବ୍ୟୟ । ଜଳପତନ କମିଯାଉଛି । ମୋ ମତରେ ସ୍ୱଚ୍ଛଳ ଜଳଧାରା ସବୁଜାଗାରେ ଅନାବଶ୍ୟକ । ପ୍ରଥମେ ଦେଶରେ ଆଗରୁ କିପରି ପିଇବା ପାଣିର ବନ୍ଦୋବସ୍ତ ହୋଇଛି, ସେଗୁଡ଼ିକର ରକ୍ଷଣାବେକ୍ଷଣ କରି ନୂତନ ବନ୍ଦୋବସ୍ତ କରାଯାଉ । ସମ୍ବଲପୁରରେ ବୃକ୍‌ହିଲ୍‌ସ ପାଖରେ ଗୋଟିଏ ବଡ଼ କୂପ ଅଛି । ପଲଟନ କୂପ ଗୋରାସାହେବ ଓ ସୈନ୍ୟମାନଙ୍କ ପାଇଁ । ମାତ୍ର ଅତି ଖରାଦିନେ ତାହା ଠକ୍ ଠକ୍ । ଏହିପରି ମଜା କଥା ଜଣେ ବଙ୍ଗାଳୀ ବୃଦ୍ଧା କହନ୍ତି ।

ଛାଡ଼ନ୍ତୁ ସେ ସବୁ କଥା । ମଧୁପୁର ମାଇନର ସ୍କୁଲରେ ପ୍ରଧାନ ଶିକ୍ଷକ ଥିଲେ ଅଣ୍ଡେଇଗୋଡ଼ାର ୰ଗୋବିନ୍ଦ ମଲ୍ଲିକ । ତାଙ୍କ ଭାଇ ଚୈତନ୍ୟ ମଲ୍ଲିକ ସାହିତ୍ୟ ଶିକ୍ଷକ । ବାଣପୁରର ପଣ୍ଡିତ ୰ ଜଗନ୍ନାଥ ମହାପାତ୍ର, ଚିଲିକା କୂଳର ଜରିପଡ଼ା ଗ୍ରାମର ବାସିନ୍ଦା ୰ ପରମାନନ୍ଦ ପାତ୍ର ପ୍ରଭୃତି ।

ସ୍କୁଲରେ ଭକ୍ତକବି ମଧୁସୂଦନ ରାଓଙ୍କର ସାହିତ୍ୟ କୁସୁମ ବହି ପଢ଼ାହୁଏ । ପ୍ରଥମେ ଫେବୃଆରୀ ମାସରେ ବସନ୍ତଋତୁ ଆଗମନରେ ପଢ଼ାହୁଏ ବସନ୍ତଋତୁ ।

''ଆସଇ ବସନ୍ତ ଶିଶିର ଅନ୍ତେ
ଦିଶଇ ଧରଣୀ ଚାରୁ କେମନ୍ତେ ।

x x x

ବନସ୍ଥଳୀ ପୂର୍ଣ୍ଣ ବିହଙ୍ଗ ଗୀତେ
ଶ୍ରବଣେ ଆନନ୍ଦ ଉପୁଜେ ଚିତ୍ତେ ।
ଡାଳେ ବସି ପିକ ଆନନ୍ଦ ଗୀତ
ଗାଇଣ ମଧୁରେ ହରଇ ଚିତ୍ତ ।''

ଠିକ୍ ସେତିକି ବେଳକୁ ନନ୍ଦନକାନନ ଆମ୍ବ ବଗିଚାରୁ ବଉଳଭରା ଆମ୍ବଗଛରୁ କୋଇଲି ଡାକଇ ''କୁହୁ, କୁହୁ'' । ଆମ୍ଭମାନଙ୍କର କି ଅପୂର୍ବ ଆନନ୍ଦ । ଶିକ୍ଷକ କହନ୍ତି ପିଲେ, ''ପ୍ରଥମେ ସତକୁ ସତ କୋଇଲି ସ୍ୱର ଶୁଣ । ତା'ପରେ କବିଙ୍କର ବର୍ଣ୍ଣନା ପଢ଼ିବା । ଆଜିକାଲି ଏପରି ପାଠପଢ଼ା ସ୍ୱପ୍ନ । ସାହିତ୍ୟ ଶିକ୍ଷକ କ୍ଲାସଟିକୁ ପ୍ରାଣବନ୍ତ କରି ରଖିଥାନ୍ତି ।

ତାପରେ ଗ୍ରୀଷ୍ମ, ବର୍ଷା, ଶରତ, ହେମନ୍ତ, ଶିଶିର ଓ ବସନ୍ତ ଋତୁ ବର୍ଣ୍ଣନା ଆମମାନଙ୍କର ହୃଦୟକୁ ସ୍ପର୍ଶ କରେ । ଶରତ ଋତୁରେ ଲେଖିଲେ-

''ରୁଚିର ଶରତ କାଳ ବିରାଜିଲା ଆସି
ହସିଲା ଧରଣୀ ରାଣୀ ଶୋଭା ପରକାଶି ।

ପୁଣି ଲେଖିଲେ-

''ରଜନୀରେ କୁମାରୀଏ ମହାଆନନ୍ଦରେ
ମଣ୍ଡିଣ ସୁନୀଳ କେଶ ଶୁଭ୍ର କୁସୁମରେ,
ତାରା ବିମଣ୍ଡିତ ନୀଳ ଗଗନକୁ ଚାହିଁ
ହରନ୍ତି ମାନସ ନାନା ରଙ୍ଗେ ଗୀତ ଗାଇ ।''

ଆମ ଗାଁ'ରେ ସେହି ସମୟରେ କୁମାରୀମାନେ ପାଳନ୍ତି ଜହ୍ନିଓଷା । ସକାଳୁ ନଦୀ ତଟକୁ ଯାଇ ଗାଧୋଇ ପୂଜାକରି ଫେରନ୍ତି । ମୋର ସାନ ଭଉଣୀ ତାରା ତାଙ୍କ ସାଙ୍ଗରେ ଯାଏ । ମୋତେ କି ଖୁସୀ ଲାଗେ । ଶରତ କାଳ ସନ୍ଧ୍ୟାର ଚନ୍ଦ୍ର ଅତି ମନମୁଗ୍ଧକର । ଗ୍ରାମର ଚଉରାମାନଙ୍କରେ ଆମ୍ବଡାଳ ଓ କଇଁଫୁଲ ମାଳ ମାଳ ହୋଇ ସଜା ହୋଇଥାଏ । ମୁଁ ଓ ମୋର ସମବୟସ୍କ ସାଙ୍ଗମାନେ ଦୁଇ ତିନି ଗ୍ରାମର ସାଇ ସାଇ ସନ୍ଧ୍ୟାବେଳେ ବୁଲି ବୁଲି କୁମାରୀମାନଙ୍କର ଆନନ୍ଦରେ କରୁଥିବା ପୁଚି ନାଚ ଉପଭୋଗ

କରୁଥାଉଁ । ଗୀତ ବୋଲନ୍ତି ''କୁଆଁର ପୂର୍ଣ୍ଣମୀ ଚାନ୍ଦ ଗୋ ଫୁଲ ବଉଳବେଣୀ, ଭାଇ ଯାଇଛନ୍ତି ବିଦେଶ କରି ଗୋ ମୋ ପାଇଁ ଆଣିବେ ଚିଜ ଗୋ ଫୁଲ ବଉଳବେଣୀ'' ଇତ୍ୟାଦି । ଯେଉଁ ସାଇର ସାଜସଜ୍ଜା ଓ ପୂଜା ଭଲହୁଏ, ସେମାନଙ୍କୁ ଉତ୍ସାହିତ କରୁଁ । ସେ ସ୍ମୃତି ମନେ ପଡ଼ିଲେ ମନରେ କି ଦିବ୍ୟ ଆନନ୍ଦ ଭରିଯାଏ ।

ହେମନ୍ତ ଋତୁରେ କବି ଗାଇଲେ -

''କାର୍ତ୍ତିକରେ ଶୀତ କରେ ରାତିରେ,
ଉତ୍ତରା ପବନ ବହଇ ଧୀରେ ।
ମାର୍ଗଶୀରେ ଦେଖି ଧାନ କିଆରୀ,
ଚଷା ମନ ଖୁସୀ ହୁଅଇ ଭାରି ।
ପୁଷମାସ ରାତି ଦାରୁଣ ଜାଡ଼
ଭାଙ୍ଗିଦିଏ ବୁଢ଼ା ବୁଢ଼ୀଙ୍କ ହାଡ଼ ।''

ମାଇନର ପଢ଼ା ଶେଷ କରି ମୁଁ ଯାଜପୁର ସ୍କୁଲକୁ ପରୀକ୍ଷା ଦେବାକୁ ଯାଇଥିଲି । କଟକ ଜିଲ୍ଲାରେ ମୁଁ ପ୍ରଥମ ୧୫ ଜଣଙ୍କ ଭିତରେ ବୃତ୍ତି ଲାଭ କରି ସେଠାରୁ ବିଦାୟ ନେଇ ଆସିଲି ୧୯୩୯ ଶେଷ ଭାଗରେ । ମାଇନର ପାଠପଢ଼ା ଏହିଠାରେ ସମାପ୍ତ ହେଲା ।

## ଢେଙ୍କାନାଳ ପ୍ରଜା ଆନ୍ଦୋଳନ

ଏହି ସମୟରେ ଅର୍ଥାତ୍ ୧୯୩୯ ମସିହାରେ ସବୁଠାରୁ ଉଲ୍ଲେଖଯୋଗ୍ୟ ଘଟଣା ହେଲା ଢେଙ୍କାନାଳ ପ୍ରଜା ଆନ୍ଦୋଳନ । ଢେଙ୍କାନାଳ ଗଡ଼ଜାତ ଆମ ସୁକିନ୍ଦାର ଅତି ନିକଟବର୍ତ୍ତୀ । ଭୁବନ, ମହୁଲପାଳ, କାଶୀପୁର, ମନ୍ଦାର ପ୍ରଭୃତି ଗ୍ରାମମାନ ପାଖ ଗାଁ । ଲୋକ ଯିବା ଆସିବା, ବୈବାହିକ ସଂପର୍କ ଏବଂ ହାଟବଜାର ବାଣିଜ୍ୟିକ କାରବାରରେ ଓତଃପ୍ରୋତ ଭାବରେ ଜଡ଼ିତ । ଢେଙ୍କାନାଳ ପଟାୟତ ନିମି ସାହେବଙ୍କ ଅତ୍ୟାଚାରରେ ଲୋକମାନେ ଅତିଷ୍ଠ ହୋଇ ପ୍ରଜାମେଳି ହେଲା । ପ୍ରାୟ ୨୦ ହଜାର ପ୍ରଜା ପିଲାକବିଲା ଧରି ଗଣ୍ଠିଲି ବୁଜୁଳି ଧରି ୧୯୩୯ ସେପ୍ଟେମ୍ବର ମାସରେ ସର୍ବହରା ହୋଇ ଚାଲିଆସିଲେ । କାରଣ ରାଜା ସାହେବ ଶଙ୍କର ପ୍ରତାପ ସିଂହ ବାହାଦୁର ପ୍ରାୟ ୫୦୦ ବ୍ରିଟିଶ୍ ଫୌଜ ମଗାଇଥିଲେ । ସେଥିରେ ପ୍ରଜା ମେଳିରେ ସଂପୃକ୍ତ କେତେକ ନେତାମାନଙ୍କୁ ଖୋଜି ଖୋଜି ମାରିଦେବାକୁ ଭୁବନ ପାଖରେ ନୀଳକଣ୍ଠପୁର ଘାଟରେ

ବ୍ରାହ୍ମଣୀ ନଦୀ ପାର ହେବାକୁ ଡଙ୍ଗା ଖୋଜିଲେ । ଡଙ୍ଗା ନଦୀର ଆର ପାରିରେ ଥିଲା । ସେମାନେ ପାର ହୋଇଗଲେ ନେତାମାନଙ୍କୁ ଓ ଅନେକ ପ୍ରଜାଙ୍କୁ ମାରିଦେବେ । ତେଣୁ ନାଉରୀକୁ ଡଙ୍ଗା ଆଣିବାକୁ କହିଲେ । ୧୨ ବର୍ଷର ପିଲା ବାଜିରାଉତ ରୋକ୍‌ଠୋକ୍ ଡଙ୍ଗା ଆଣିବାକୁ ମନା କରିଦେଲା । ବ୍ରିଟିଶ୍ ଫୌଜ ନାଉରୀ ପିଲାକୁ ଗୁଳିକରି ମାରିଦେଲେ । ନାଉରୀ ପିଲାର ସାହସ ସାରା ଓଡ଼ିଶାରେ ପ୍ରଚାରିତ ହୋଇଗଲା ।

ପ୍ରସିଦ୍ଧ କବି ପଦ୍ମଶ୍ରୀ ସଚ୍ଚିରାଉତରାୟ ତାଙ୍କ ପ୍ରସିଦ୍ଧ କବିତା 'ବାଜିରାଉତ'ରେ ଏହି ଅତୁଳନୀୟ ସାହସିକତାରେ ଉଦ୍‌ବୁଦ୍ଧ ହୋଇ ଲେଖିଲେ, ''ନୁହେଁ ବନ୍ଧୁ ନୁହେଁ ଏହା ଚିତା, ଏ ଦେଶ ତିମିର ତଳେ ଏ ଅଲିଭା ମୁକତି ସଳିତା ।'' ଏହି ଘଟଣାକୁ କେତେକ କବି ଏ ଯୁଗର ଧର୍ମପଦ ବୋଲି ଆଖ୍ୟା ଦେଇଥିଲେ । ଏହାହିଁ ଓଡ଼ିଆ ଜାତିର ମହାନତା । ମାତୃଭୂମି ଓ ଦେଶପ୍ରେମର ନିଛକ ଉଦାହରଣ । ସେହି ଲେଖାଟି ଏତେ ହୃଦୟସ୍ପର୍ଶୀ ଏବଂ ଲୋକଙ୍କର ମନକୁ ଉଦ୍‌ବେଳିତ କରିଥିଲା ଯେ ବ୍ରାହ୍ମଣୀ ନଦୀରେ ଯେତେବେଳେ ନାଉରୀ ବାଜିରାଉତ୍‌ର ଶବ ଶୋଭାଯାତ୍ରା ଆସିଥିଲା, ନଦୀର ଉଭୟ ତଟରେ ସହସ୍ର ସହସ୍ର ଆବାଳ ବୃଦ୍ଧ ବନିତା ଶୋକାକୁଳ ନୟନରେ ''ଜୟ ବାଜିରାଉତ ନାଉରୀର ଜୟ'' ଧ୍ୱନି କରି ଆକାଶ ପବନ କମ୍ପାଇ ଦେଇଥିଲେ ।

ପ୍ରାୟ ୨୦ ହଜାର ଜନତା ସପରିବାର ବିନା ବସ୍ତ୍ର ଖାଦ୍ୟରେ ସର୍ବହରା ହୋଇ ସୁକିନ୍ଦା ସୀମା ଭିତରକୁ ପଶି ଆସିଥିଲେ । ଆମ ଗାଁ ପାଖରେ ଏକତାଳିର ଆମ୍ବତୋଟା ପାଖରେ ଏକ ପୋଖରୀକୂଳରେ ସେମାନଙ୍କୁ କୋଦାଳ କଟୁରୀ ଦେଇ ତାଳ କୁଡ଼ିଆ ତିଆରି କରି ରହିବାକୁ ସବୁପ୍ରକାର ସାହାଯ୍ୟ କରିଥିଲେ । ଆମ୍ଭ ଅଞ୍ଚଳର ମୁଖିଆଲୋକ ସ୍ୱର୍ଗତ ହରେକୃଷ୍ଣ ଭୂୟାଁ, ମୋର ପିତା ଘନଶ୍ୟାମ ମିଶ୍ର, ବୈରାଗୀ ରାଉତ, ବାଲିପଶିର ନବରାଉତ, ହାତୀବାରିର କେତେକ ବିଶିଷ୍ଟ ବ୍ୟକ୍ତି ଗ୍ରାମର ଘର ଘର ବୁଲି ଚାଉଳ ଡାଲି ମୁଠି ଚାଉଳ, ପରିବା ଇତ୍ୟାଦି ଏବଂ ହାଣ୍ଡି ଡେକ୍‌ଚି ଆଣି ସେମାନଙ୍କୁ ଖାଇବାକୁ ଦେଲେ । ଆଉ ପାଖ ପାହାଡ଼ ପାଖରୁ ସେମାନେ ନିଜେ ନିଜେ ଜାଳ ସଂଗ୍ରହ କଲେ ଯାହାକୁ ଯେତେ । ରାତିରେ ଲଣ୍ଠନ ବନ୍ଦୋବସ୍ତ କଲେ । ଛୋଟପିଲାଙ୍କ ପାଇଁ କ୍ଷୀର, ଟିକିଏ ବଡ଼ ବଡ଼ ପିଲାଙ୍କ ପାଇଁ ଚୂଡ଼ା ମୁଢ଼ି ଇତ୍ୟାଦି । କଟକର ମାନ୍ୟଗଣ୍ୟ ନେତା ଗୋପବନ୍ଧୁ ଚୌଧୁରୀ, ତାଙ୍କ ସହଧର୍ମିଣୀ ରମାଦେବୀ, ଭାଇ ନବକୃଷ୍ଣ ଚୌଧୁରୀ, ମାଳତୀ ଚୌଧୁରୀ ପ୍ରଭୃତି ବରୀ ଓ ଅନୁଗୁଳ ଆଶ୍ରମରୁ ଆସି ବହୁତ ସାହାଯ୍ୟ କରିଥିଲେ । ମୁଁ ଦଶହରା ଛୁଟିରେ ଗାଁ'କୁ ଆସିଥିଲାବେଳେ ମୋର ପିତାଙ୍କ ସହିତ ସେହି ଜାଗାକୁ

ଯାଇ ସେମାନଙ୍କର ଦୁରବସ୍ଥା ଦେଖି ବହୁତ ଦୁଃଖ କଲି । କାର୍ଯ୍ୟରେ ଯତ୍‌କିଞ୍ଚିତ ଶାରୀରିକ ଶ୍ରମ ରୂପେ ସାହାଯ୍ୟ କରିଥିଲି । ଢେଙ୍କାନାଳ ଲୋକମାନେ ପ୍ରାୟ ଏକମାସ କାଳ ରହି ପ୍ରଜା ଆନ୍ଦୋଳନ ଶାନ୍ତ ହେବାରୁ ନିଜ ନିଜ ଗ୍ରାମକୁ ଫେରିଥିଲେ । ଶୁଣିଲୁ ପଲିଟିକାଲ୍ ଏଜେଣ୍ଟ ଏହାର ଆଶୁ ସମାଧାନ କରିଥିଲେ । ଗୋଟିଏ ପରିଚାଳନା କମିଟି ଗଠନ କରାହେଲା । ରାଜାସାହେବ, ଜଣେ ଉଚ୍ଚପଦବୀ ଅଫିସର ମିଃ ଶ୍ରୀବାସ୍ତବ ଏବଂ ଜଣେ ଏ.ଡ଼ି.ଏମ୍. ପାହ୍ୟାର ଅଫିସର ଶ୍ରୀଯୁକ୍ତ ରଘୁନନ୍ଦନ ତ୍ରିବେଦୀଙ୍କୁ ନେଇ କମିଟିରେ ସଂଖ୍ୟାଧିକ ସିଦ୍ଧାନ୍ତ ଗ୍ରହଣ କରି ରାଜ୍ୟ ଶାସନ କରାହେଲା । ଅତ୍ୟାଚାରୀ ଢେଙ୍କାନାଳ ପଟ୍ଟାୟତ ନିମି ସାହେବଙ୍କୁ କଟକକୁ ପଠାଇ ଦିଆଗଲା । କଟକରେ ତୁଳସୀପୁର କଲୋନୀରେ ତାଙ୍କର ଗୋଟିଏ କୋଠିରେ ସେ ନିର୍ବାସିତ ଶେଷ ନିଃସଙ୍ଗ ଜୀବନଯାପନ କଲେ । ଢେଙ୍କାନାଳ ଗଲେ ରାତିରେ ଅବସ୍ଥାନ ନିଷେଧ । ସନ୍ଧ୍ୟା ପୂର୍ବରୁ ଫେରିଆସିବେ । ତାଙ୍କର ଦୁଷ୍କୃତି ହେଉଛି ଢେଙ୍କାନାଳଠାରେ ପାହାଡ଼ ଉପରେ ବେଠି ବେଗାରିରେ ତିଆରି ଏକ କୁଖ୍ୟାତ ଦର ଗଢ଼ା ଉଆସ 'ଯଚନ ନଗର' ଯାହା ରେଳଗାଡ଼ିରେ ଦୃଷ୍ଟିଗୋଚର ହୁଏ । ଏହା ପ୍ରଜା ନିର୍ଯ୍ୟାତନାର ନିଦର୍ଶନ-ସ୍ୱରୂପ ଦଣ୍ଡାୟମାନ, ଇତିହାସର ମୂକସାକ୍ଷୀ । ବହୁତ ଦୁର୍ନୀତିଗ୍ରସ୍ତ କର୍ମଚାରୀଙ୍କୁ ଚାକିରୀରୁ ବହିଷ୍କୃତ କରାଗଲା । ଏହାର ୯ ବର୍ଷ ପରେ ୧୯୪୮ ରେ ଗଡ଼ଜାତ ମିଶ୍ରଣ ହୋଇଥିଲା ।

# ମୋର ହାଇସ୍କୁଲ ଶିକ୍ଷା

## ସ୍ୱାଧୀନତାର ପ୍ରାକ୍‌କାଳରେ ଭାରତ ଓ ଓଡ଼ିଶା

୧୯୪୦ ମସିହାରେ ମୁଁ ମଧୁପୁର ମି.ଇ. ସ୍କୁଲ୍‌ରୁ ବୃତ୍ତିପାଇ ଉତ୍ତୀର୍ଣ୍ଣ ହୋଇଥିଲି । ପ୍ରଥମେ ଜଗତସିଂହପୁରର ସ୍ୱନାମଧନ୍ୟ ନୀଳୁବାବୁ (ନୀଳମଣି ମହାପାତ୍ର) ଆମ ସୁକିନ୍ଦାରୁ ଜିଲ୍ଲାବୋର୍ଡ଼ ସଭ୍ୟ ଭାବେ ମନୋନୀତ ହୋଇଥିଲେ ଓ ତାଙ୍କ ସାନଭାଇ ପଚାବାବୁ ଡୁବୁରୀ-ସୁକିନ୍ଦା ରାସ୍ତାରେ ସଂସେଇଲ ଗାଁ'ରେ ୧୨୦୦ ଏକର ଚାଷ ଜମି ନେଇ ଗୋଟିଏ ଆଦର୍ଶ କୃଷି ଫାର୍ମ ପ୍ରତିଷ୍ଠା କରିଥିଲେ । ତାଙ୍କ ପ୍ରେରଣାରେ ମୋର ଏବଂ ମୋର ଭାଇନା ହୃଦାନନ୍ଦ ଶ୍ରୀକୃଷ୍ଣ ଏକାଡ଼େମୀ ଜଗତସିଂହପୁର ହାଇସ୍କୁଲ୍‌ରେ ନାମ ଲେଖାଇଥିଲୁ । ସେଠାରେ ପ୍ରତି ସୋମବାର ଦିନ ଅଳକା ନଦୀ ପାର ହେଲେ ବିରାଟ ସୋମନାଥ ହାଟ । ପରିବାପତ୍ର, ଚୂଡ଼ା ନଡ଼ିଆ ଓ ଖାଦ୍ୟଦ୍ରବ୍ୟ କିଣିବା ପାଇଁ ହାଟଟି ପ୍ରସିଦ୍ଧ । ସେଠାରୁ ଡଙ୍ଗାରେ କଟକକୁ ପରିବାପତ୍ର ମାଲଗୋଦାମକୁ ଆସେ । ମାଛ ବହୁତ ମିଳେ । ମାତ୍ର ସେତେବେଳେ ଅଳକାନଦୀରେ ପ୍ରବଳ ବିଲାତି ଦଳ ହୋଇଯାଇଥିବାରୁ ସେ ଅଞ୍ଚଳଟା ଥିଲା ଭୀଷଣ ମ୍ୟାଲେରିଆ ପ୍ରବଣ । ତେଣୁ ବର୍ଷର ୬ ମାସ ମୁଁ ମ୍ୟାଲେରିଆ ଜ୍ୱରରେ ଆକ୍ରାନ୍ତ ହୋଇ ଗାଁକୁ ଚାଲି ଆସିଲି । ବହୁ କଷ୍ଟରେ ସ୍କୁଲ୍ ଇନ୍‌ସପେକ୍ଟରଙ୍କ ଜରିଆରେ ହେଡ଼ମାଷ୍ଟରଙ୍କ ଅନିଚ୍ଛା ସତ୍ତ୍ୱେ ଟ୍ରାନ୍‌ସଫର ସାର୍ଟିଫିକେଟ୍ ଆଣି ଚାଲି ଆସି ୧୯୪୧ ମସିହାରେ ଯାଜପୁର ହାଇସ୍କୁଲ୍‌ରେ ନାମ ଲେଖାଇଥିଲି । ସେଠାକାର ପ୍ରଧାନ ଶିକ୍ଷକ ଥିଲେ ସ୍ୱର୍ଗତ ସ୍ୱନାମଧନ୍ୟ ଅଚ୍ୟୁତାନନ୍ଦ ମିଶ୍ର । ତାଙ୍କ ପିତା ପଣ୍ଡିତ ନୀଳମଣି ମିଶ୍ର ଯାଜପୁର ମାଇନର ସ୍କୁଲ୍‌ରେ ସଂସ୍କୃତ ପଣ୍ଡିତ ଥିଲେ । ବିରଜା ମନ୍ଦିର ପାଖରେ ତାଙ୍କ ଗ୍ରାମରୁ ନିଜେ ଘରୁ ଖାଇ ଦୈନିକ ୫ ମାଇଲ୍ ଚାଲି ଚାଲି ଆସି କାମ କରୁଥିଲେ । ଦରମା ମାତ୍ର ଟ ୩୦ଙ୍କା । ସ୍କୁଲ୍ ବିଭାଗକୁ ଲେଖି ଲେଖି ହାଇସ୍କୁଲ୍ କଲେ ନାହିଁ । ନିଜେ ୫ ବର୍ଷ ନିଜ ଦରମାତକ ଡାକଘରେ ସଞ୍ଚୟ କରି ମାଇନର ସ୍କୁଲ୍‌କୁ ହାଇସ୍କୁଲ୍‌ରେ ପରିଣତ କରିଥିଲେ । ଏହି ଅତୁଳନୀୟ ଦାନ ଚିରକାଳକୁ ସ୍ମରଣ ଥିବ ।

ତାଙ୍କର ଚାରି ପୁଅ । ବଡ଼ପୁଅ ବିଶ୍ୱମ୍ଭର ମିଶ୍ର । ବାରିପଦା ହାଇସ୍କୁଲ୍‌ରେ ହେଡ଼ମାଷ୍ଟର । ଦ୍ୱିତୀୟ ରାମଦେବ ମିଶ୍ର । ଏ.ଡି.ଏମ୍. ହୋଇ ରିଟାୟାଡ ହେଲେ ।

ତୃତୀୟ ଅଚ୍ୟୁତାନନ୍ଦ ମିଶ୍ର । ଚତୁର୍ଥ ପୂର୍ଣ୍ଣାନନ୍ଦ ମିଶ୍ର । ସାଲେପୁର ହାଇସ୍କୁଲ୍‌ର ହେଡ଼୍‌ମାଷ୍ଟର । ଆମ ସମୟରେ ସାଲେପୁର ହାଇସ୍କୁଲ୍‌ର ଖୁବ୍ ନାମ ଥିଲା । ସବୁ ପୁତ୍ର ପିତୃଭକ୍ତ ଏବଂ ଗୁରୁଜନ ଭକ୍ତିରେ ଏକକୁ ଆରେକ । ପୂର୍ଣ୍ଣାନନ୍ଦ ଯେ ସର୍ବ କନିଷ୍ଠ, ସେ କୌଣସି ବଡ଼ଭାଇଙ୍କୁ ଦେଖିଲେ ସାଷ୍ଟାଙ୍ଗ ପ୍ରଣିପାତ ହୁଅନ୍ତି ।

ଅଚ୍ୟୁତାନନ୍ଦଙ୍କ ପିତା ଖୁବ୍ ଭଲ କବି ଥିଲେ । ଲେଖିଥିଲେ -

''କାକ ରାବିଲାଣି ରାତି ପାହିଲାଣି
ଉଠ ଆରେ ବାପ ଧନ
କେତେ ଭିଡ଼ିମୋଡ଼ି ହେଉଛୁ ମୋ ଧନ
ହାଇ ମାରି ଘନ ଘନ ।
ବାସି ବିଛଣାରେ ସକାଳେ ଶୋଇଲେ ହୋଇଥାନ୍ତି ଲକ୍ଷ୍ମୀଛଡ଼ା
ଉଛୁର କରି ଯେ ପାଠଶାଳା ଗଲେ ହୁଏ ନାହିଁ ଭଲ ପଢ଼ା ।'' ଇତ୍ୟାଦି ।

ଜଣେ ପିଲାକୁ ଜ୍ୱର ଆସିବାରୁ ସେ ହେଡ଼୍‌ମାଷ୍ଟରଙ୍କ ପାଖକୁ ଛୁଟି ଦରଖାସ୍ତ ଦେଲା । ସ୍କୁଲ୍ ଅଧାରୁ ଆସିବା ପାଇଁ କ୍ଲାସ ଶିକ୍ଷକ ସେହି ପଣ୍ଡିତ ସୁପାରିଶ କଲେ,

''ବେଗ ବେଗ ହୋଇ ଚାଲୁଛି ପତ୍ର ବାହକ ନାଡ଼ି
ଆସନ୍ନା ଜ୍ୱରର ସମ୍ଭବ ତାକୁ ଦିଅ ହେ ଛାଡ଼ି ।''

ଯାଜପୁର ହାଇସ୍କୁଲ୍‌ରେ ମୋର ଭାଇନା ହୃଦାନନ୍ଦ ଟାଏଫଏଡ଼୍‌ରେ ଆକ୍ରାନ୍ତ ହୋଇ ଅକାଳ ମୃତ୍ୟୁ ବରଣ କରିଥିଲେ । ତାହା ମୋର ପିତୃବ୍ୟଙ୍କୁ ଦାରୁଣ ଦୁଃଖ ଆଣି ଦେଇଥିଲା । ସେହିଦିନୁ ସେ ମୋତେ ପୁତ୍ରର ଦୁଇଗୁଣ ସ୍ନେହ କରୁଥିଲେ । ମୁଁ ଚାକିରୀକାଳ ମଧ୍ୟରେ ମୋର ଯଥାଶକ୍ତି ମାସିକ କିଛି କିଛି ସାହାଯ୍ୟ ତାଙ୍କୁ ଦେଇ ଆସିଥିଲି । ସେଥିଯୋଗୁଁ ସେ ମୋତେ ବହୁତ ଆଶୀର୍ବାଦ କରିଛନ୍ତି ଓ ସମସ୍ତଙ୍କୁ କହିଛନ୍ତି । ଏହିପରି ବହୁତ ଦୁଃଖରେ ନବମ ଶ୍ରେଣୀଟି ଅତିବାହିତ ହୋଇଥିଲା ।

ଜୀବନରେ ଦୁଃଖ ଓ ଶୋକ ଆସିବ ହିଁ ଆସିବ । ଅବିମିଶ୍ର ସୁଖ ସଂସାରରେ ଦୁର୍ଲଭ । ନାହିଁ ସୁଖ ମସ୍ତି ।

# ଭାରତ ଛାଡ଼ ଆନ୍ଦୋଳନ
# ୧୯୪୨ ମସିହା

ଯାଜପୁର ହାଇସ୍କୁଲ୍‌ରେ ପଢ଼ିଲାବେଳେ ସବୁଠାରୁ ଉଲ୍ଲେଖଯୋଗ୍ୟ ଘଟଣା ହେଲା ଭାରତ ଛାଡ଼ ଆନ୍ଦୋଳନ । ଗାନ୍ଧିଜୀଙ୍କ ନେତୃତ୍ୱରେ କଂଗ୍ରେସ ଦାବି କରି ଆସୁଥିଲା ପୂର୍ଣ୍ଣ ସ୍ୱାଧୀନତା । ମାତ୍ର ବ୍ରିଟିଶ ସରକାର ରାଜି ହେଉଥିଲେ ସୀମିତ ଔପନିବେଶିକତା । ସେଥିପାଇଁ ବହୁ ଆଲୋଚନା ବିଫଳ ହୋଇଥିଲା । ସାର ଷ୍ଟାଫର୍ଡ କ୍ରିପ୍‌ସଙ୍କ ପ୍ରସ୍ତାବ ଗୃହୀତ ହୋଇନଥିଲା । ତେଣୁ ଅଗଷ୍ଟ ୮ ତାରିଖ ୧୯୪୨ ମସିହାରେ ବମ୍ବେଠାରେ କଂଗ୍ରେସ କାର୍ଯ୍ୟକାରୀ କମିଟିର ବୈଠକ ବସିଥିଲା । ସେଥିରେ ମହାତ୍ମାଗାନ୍ଧୀଙ୍କ ନେତୃତ୍ୱରେ ସର୍ବ ସମ୍ମତିରେ ଗୃହୀତ ହେଲା ଯେ ଭାରତ ଚାହୁଁଛି ପୂର୍ଣ୍ଣ ସ୍ୱାଧୀନତା । ଏହା ଯଦି ବ୍ରିଟିଶ ସରକାର ଗ୍ରହଣ ନ କରନ୍ତି, ତେବେ ଭାରତ ଛାଡ଼ ଆନ୍ଦୋଳନ ହେବ । ବ୍ରିଟିଶ୍ ସରକାରଙ୍କୁ ସଂପୂର୍ଣ୍ଣ ଅସହଯୋଗ କରାଯିବ । ମାତ୍ର ସବୁ ପ୍ରକାର ଅହିଂସା ପନ୍ଥାରେ କରାଯିବ । ଦେଶସାରା ବିକ୍ଷୋଭ ଓ ଜନ ଆନ୍ଦୋଳନ କରିବା ପାଇଁ ଆହ୍ୱାନ ଦିଆଗଲା । ଇତିହାସ ପୃଷ୍ଠାରେ ବିଲୁପ୍ତ ଅଧ୍ୟାୟ ବିଷୟରେ କିଞ୍ଚିତ ଉଲ୍ଲେଖ କରିବାର ଉଦ୍ଦେଶ୍ୟ ଆମ ଯାଜପୁର ହାଇସ୍କୁଲ୍‌ର ଏଥିରେ କେତେ ଯୋଗଦାନ ଓ ଅବଦାନ ଅଛି ଏବଂ ମୋର ମନରେ କିପରି ରେଖାପାତ ହୋଇଛି ।

ମୁଁ ଯାଜପୁର ହାଇସ୍କୁଲରେ ନବମ ଶ୍ରେଣୀରେ ପଢୁଛି । ହାଇସ୍କୁଲ୍ ହଷ୍ଟେଲ୍‌ରେ ଓ ସ୍କୁଲ୍‌ରେ ଆମ୍ଭେ ଅଗଷ୍ଟ ୭ ତାରିଖରେ ଚାତକ ପରି ଚାହିଁ ରହିଛୁ । ସେତେବେଳେ ରେଡ଼ିଓ ବା ଟି.ଭି. ନଥିଲା । ଓଡ଼ିଶାରେ ଉତ୍କଳମଣି ଗୋପବନ୍ଧୁଙ୍କ ପ୍ରକାଶିତ 'ସମାଜ' ହିଁ ଏକମାତ୍ର ସମ୍ବାଦ ପତ୍ର । ଆମ ହଷ୍ଟେଲ୍‌କୁ ଗୋଟିଏ କାଗଜ ଆସେ । ଏକାଦଶ ଶ୍ରେଣୀର ଜଣେ ଛାତ୍ର ଅଗଷ୍ଟ ଆଠ ତାରିଖର ବମ୍ବେ ଖବର ବଡ଼ ପାଟିରେ ପଢ଼ି ଶୁଣାଇ ଦେଲେ । ଛାତ୍ର ମାନଙ୍କ ମଧ୍ୟରେ ବ୍ରିଟିଶ୍ ସରକାର ବିରୁଦ୍ଧରେ ପ୍ରବଳ ଉତ୍ତେଜନା ଓ ତୀବ୍ର ପ୍ରତିକ୍ରିୟା ସୃଷ୍ଟିହେଲା । ସ୍କୁଲ୍ ଆରମ୍ଭ ହେବାରୁ ପ୍ରାର୍ଥନା ସଭା ଓ ଉପସ୍ଥାନ ନେଲାପରେ ଜଣେ ମୁସଲମାନ ପିଲା ସ୍ଲୋଗାନ୍ ଦେଲେ, ''ଇନ୍‌କିଲାବ ଜିନ୍ଦାବାଦ, ଭାରତମାତା କୀ ଜୟ, ମହାତ୍ମାଗାନ୍ଧୀ କି ଜୟ'' । କ୍ଲାସ୍ ଛାଡ଼ି ଗଲାବେଳେ ସ୍କୁଲ୍‌ର ୨/୩ଟି କାଚ ଆଲମାରୀରେ ବହି ଓ ରେକର୍ଡ଼ ପତ୍ର ଥିଲା । ସେଗୁଡ଼ିକ ବିଧାମାରି

କେତେକ ଭାଙ୍ଗିଦେଲେ । ହାତ ଖଣ୍ଡିଆ ହୋଇଯିବାରୁ ସେମାନଙ୍କୁ ପୋଲିସ ଗିରଫ କଲେ । ସେମାନେ ଜେଲ୍ ଗଲେ । ''ପିଲାମାନେ କ୍ଲାସ ଛାଡ଼ି ଖେଳ ପଡ଼ିଆରେ ଏକତ୍ର ହୁଅ'' ଧ୍ୱନିରେ ସ୍କୁଲ୍‌ର ପ୍ରାୟ ୫୦୦ ପିଲା ଖେଳ ପଡ଼ିଆରେ ଏକତ୍ର ହେଲେ । ସ୍ଥିର ହେଲା ସେହିଦିନ ଠାରୁ କ୍ଲାସ୍‌ରେ ଯୋଗ ଦେବେ ନାହିଁ । କଂଗ୍ରେସ ଓ ମହାତ୍ମାଗାନ୍ଧୀଙ୍କୁ ପୂର୍ଣ୍ଣ ସମର୍ଥନ କରି ଭାଷଣ ଦେଲେ । ସେଥିରେ ନେତୃତ୍ୱ ନେଇଥିଲେ ସ୍ୱନାମଧନ୍ୟ ଶାନ୍ତନୁ କୁମାର ଦାସ । ସେ ହରିଜନ ପରିବାରରୁ ଆସିଥିଲେ ମଧ୍ୟ ଭଲ ପଢୁଥିଲେ । ତାଙ୍କର ବ୍ୟବହାର ଓ ତ୍ୟାଗ ଆଦର୍ଶ ସ୍ଥାନୀୟ । ଆଉ ଜଣେ ହେଲେ ଗୋଲକଚନ୍ଦ୍ର ମହାନ୍ତି ।  ଯାଜପୁରର ଏସ.ଡ଼ି.ଓ. ଥିଲେ ସ୍ୱର୍ଗତଃ ରତ୍ନାକର ଷଡ଼ଙ୍ଗୀ । ସେ ମଧ୍ୟ ସ୍କୁଲର ସଭାପତି ଥିଲେ । ତେଣୁ କଟକ କଲେକ୍ଟରଙ୍କ ନିର୍ଦ୍ଦେଶ ମତେ ସ୍କୁଲ୍ ହଷ୍ଟେଲ୍ ଅନିର୍ଦ୍ଦିଷ୍ଟ କାଳ ପର୍ଯ୍ୟନ୍ତ ବନ୍ଦ । ଆମ୍ଭେମାନେ ଗାଁ'କୁ ଚାଲି ଆସିଲୁ ।

ଛାତ୍ରମାନଙ୍କୁ ଗାନ୍ଧିଜୀଙ୍କ ନିର୍ଦ୍ଦେଶ ଥିଲା ସକ୍ରୀୟ ରାଜନୀତିରେ ଯୋଗ ନ ଦେଇ ଗ୍ରାମକୁ ଯାଇ ଗଠନମୂଳକ କାର୍ଯ୍ୟ କରିବା । ଅସ୍ପୃଶ୍ୟତା ନିବାରଣ ଏବଂ ଗ୍ରାମର ଉନ୍ନତି ବିଧାନ । ମୁଁ ଓ ମୋର ଭାଇନା ଯିଏ ଚାର ପରବର୍ଷ ଇହଧାମ ପରିତ୍ୟାଗ କରିଥିଲେ, ଆମେ ଦୁଇଜଣ ଅଗଷ୍ଟ ୧୧ ତାରିଖରେ ଗ୍ରାମକୁ ଆସିଲୁ । ଗ୍ରାମର ମୁଖିଆ ମୁଖିଆ ଲୋକ ୪/୫ ଜଣ ଆମ ଘରକୁ ଆସିଲେ । ଅତି ଆଗ୍ରହ ଓ କୌତୁହଳବଶତଃ ପଚାରିଲେ ଦେଶର ଖବର ଓ ଗରମା ଗରମ ରାଜନୀତି । ଗାଁ'ରେ ତ ଖବରକାଗଜର ନାମଗନ୍ଧ ନାହିଁ । ଆମ୍ଭଠାରୁ ସବୁ ଖବର ଶୁଣି ଆମ୍ଭମାନଙ୍କୁ କହିଲେ, ''ତୁମ୍ଭମାନଙ୍କୁ ଆମେ ପୂର୍ଣ୍ଣ ସମର୍ଥନ କରିବୁ । ତୁମ୍ଭେମାନେ ସଂପୂର୍ଣ୍ଣ ଅହିଂସା ପ୍ରଥାରେ ଏସବୁ କାର୍ଯ୍ୟ କର । ମାତ୍ର ଅସ୍ପୃଶ୍ୟତା ନିବାରଣ ପାଇଁ ବାରଣ କଲେ । ଆମ୍ଭେମାନେ ଗ୍ରାମର ପ୍ରାଇମେରୀ ସ୍କୁଲ୍‌ର ପିଲାମାନଙ୍କୁ  ସଙ୍ଗରେ ନେଇ ଆଗ ଗ୍ରାମର ଦାଣ୍ଡ ପରିଷ୍କାର କଲୁ । ଅସ୍ପୃଶ୍ୟତା ନିବାରଣ ବିଷୟରେ କ'ଣ କରିପାରିବୁ । ଆମ ଘର ପଛପଟେ ହରିଜନ ବସ୍ତି । ଏହି ବସ୍ତିଗୁଡ଼ିକ ସାଧାରଣତଃ ବ୍ରାହ୍ମଣ କରଣ ଉଚ୍ଚଜାତିଙ୍କ ଘର ପଛପଟେ । ସେହିମାନଙ୍କ ବିଲରେ ମୂଲିଆ ହଳିଆ କାମ କରି ଅତି ଦୟନୀୟ ଭାବେ ଜୀବନ ନିର୍ବାହ କରନ୍ତି । ଧାନ ୨ ଗୌଣୀ (କଟକୀ ୫ ସେର) ମଜୁରୀ ନିଅନ୍ତି । ବର୍ଷକୁ କେତେ ଧାନ ବା ଟଙ୍କା ଏକକାଳୀନ ନେଇ ତାକୁ ପୁଅ ଝିଅ ବିଭାଘର ବା ପିତା ମାତାଙ୍କ ଶୁଦ୍ଧି କାର୍ଯ୍ୟରେ ଖର୍ଚ୍ଚ କରିଦିଅନ୍ତି । ଆଉ ଦୈନିକ କାମ କଲେ ମୂଲ ବା ମଜୁରୀ ୨ ଗୌଣୀ (କଟକୀ ୫ ସେର) ଧାନ ଆକାରରେ ପାଆନ୍ତି । ଏହାକୁ ଗୋଚିପ୍ରଥା କୁହାଯାଏ । ପରେ ସବୁରୀ

ଦଶକରେ ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀ ଏହି ପ୍ରଥାକୁ ଆଇନ କରି ଉଠାଇ ଦେଇଥିଲେ । ଏହା ସମୁଦ୍ରକୁ ଶଙ୍ଖେ ପରି । ଘରେ ସ୍ତ୍ରୀ ବାପ ମା ଓ ୪/୫ ଟି ସନ୍ତାନ । ସକାଳୁ ଧାନ ନେଇ ତାକୁ ହାଣ୍ଡିରେ ଟିକିଏ ଗରମ କରି ଢିଙ୍କିରେ କୁଟି ଚାଉଳ କରି ପଖାଳ କରି ପେଜ ନଗାଳି ସମସ୍ତେ କିଛି କିଛି ଖାଆନ୍ତି । ଡାଲି ତରକାରୀ ସ୍ୱପ୍ନ । ବିଲ ଓ ପାଟମାନଙ୍କରୁ ମଦରଙ୍ଗା, ସୁନୁସୁନିଆ ଶାଗ ତୋଳି ଆଣି ତାକୁ ଭାଜି ଟିକିଏ ଆମ୍ବୁଲ, ତେନ୍ତୁଳି, କଞ୍ଚାଲଙ୍କା ଲଗାଇ ଖାଆନ୍ତି । ସେମାନଙ୍କ ଅର୍ଥନୈତିକ ଅବସ୍ଥା ସୁଧାରିବା କାଠିକର ପାଠ । ସେମାନେ ଆମ୍ଭଙ୍କୁ କହିଲେ, ''ଆମକୁ ଗାଁ ପୋଖରୀରେ ଗୋଟିଏ ଅଲଗା ଘାଟରେ ଗାଧୋଇବାକୁ ଅନୁମତି ଦିଅ ।'' ମୋର ପିତା ସେଥିରେ ସହମତି ଦେଲେ । ମାତ୍ର ଗ୍ରାମର ଆଉ କେତେକ ଏହାକୁ ବିରୋଧ କରିଥିଲେ । ତଥାପି ଏହା କାର୍ଯ୍ୟକାରୀ ହେଲା । ମାତ୍ର ସେମାନେ କହିଲେ, ''ଆମେ ଗ୍ରାମରେ ଅଷ୍ଟପ୍ରହରୀ କରିବୁ । ଆମର ହଣ୍ଡା, କଡ଼େଇ, ଗରା କେତୋଟି ଦରକାର । ଆମକୁ ଆପଣଙ୍କ ଗ୍ରାମର ଠାକୁର ଘର ରାନ୍ଧିବା ବାସନ ପତ୍ର ୩ ଦିନ ପାଇଁ ଦୟାକରି ଦିଅନ୍ତୁ ।''

ମୋର ବାପା ଏହି ଦାୟିତ୍ୱରେ ଥିଲେ ମଧ୍ୟ ସେ କହିଲେ, ''ମୁଁ ଆମ କମିଟିର ଅନ୍ୟ ସଭ୍ୟମାନଙ୍କୁ ପଚାରି କହିବି ।'' ସେ କେତେକ ମୁଖିଆ ଲୋକଙ୍କୁ ପଚାରିବାରୁ ସେମାନେ ଏହାର ତୀବ୍ର ବିରୋଧ କଲେ । ତେଣୁ ସେ ପ୍ରସ୍ତାବ ସେହିଠାରେ ବନ୍ଦ ହେଲା । ଗ୍ରାମର ପ୍ରତ୍ୟେକ ସାହି ସାହି ବୁଲି କାମ କରିବାରୁ ମୋର ଗ୍ରାମବାସୀଙ୍କ ଅର୍ଥନୈତିକ ଅବସ୍ଥା ବୁଝିବା ସମ୍ଭବପର ହୋଇଥିଲା ।

ଗ୍ରାମର ଆଉ କେତୋଟି ଉଲ୍ଲେଖନୀୟ ଘଟଣା ନ ଲେଖିଲେ ଠିକ୍ ହେବ ନାହିଁ । ଆମ ଗ୍ରାମ ପାଖରେ କଚେରୀ ସାହିରେ ଆଉ କେତେକେ ହରିଜନ ପରିବାର ବାସ କରନ୍ତି । ସେମାନେ ଆମର ଜମି ଭାଗଚାଷ କରନ୍ତି । କଟକ ବିରିବାଟୀ ଅଞ୍ଚଳର ମାଧବାନନ୍ଦ ସିଂହ ବୋଲି ଜଣେ କମ୍ୟୁନିଷ୍ଟ ନେତା ସେହି ବସ୍ତିରେ ରହୁଥିଲେ । ସେ ସ୍ୱାଧୀନତା ଆନ୍ଦୋଳନରେ ସକ୍ରୀୟ ଅଂଶ ଗ୍ରହଣ କରିଥିଲେ । ସେ ଏହି କାର୍ଯ୍ୟରେ ଆମ ଅଞ୍ଚଳର ୪/୫ ଜଣ ମୁଖିଆ ଲୋକଙ୍କ ସାହାଯ୍ୟ ନେଇଥିଲେ, ଯଥା:- ହରେକୃଷ୍ଣ ଭୂୟାଁ, ଜେମାଦେଇପୁରରେ ମୋର ବାପା ଘନଶ୍ୟାମ ମିଶ୍ର, ବାଲିପଶିର ନବଘନ ରାଉତ, ହାଟୀବାରିର ମୁରନାଥ, କରଡ଼ାପାଳର ଯଦୁମଣି ମହାନ୍ତି, ଯଖପୁରାର ପରମେଶ୍ୱର ଜେନା ପ୍ରଭୃତି । ସେମାନେ ସାଧାରଣ ଲୋକ ହେଲେ ମଧ୍ୟ ସ୍ୱାଧୀନତା ଆନ୍ଦୋଳନକୁ ସମର୍ଥନ କରୁଥିଲେ । ମାତ୍ର ମାଧବାନନ୍ଦ ସିଂହଙ୍କ କାର୍ଯ୍ୟ ପନ୍ଥା ହିଂସାତ୍ମକ ଥିବାରୁ ସେଗୁଡ଼ିକୁ ସବୁ ସମର୍ଥନ କରୁନଥିଲେ ।

ମାଧବାନନ୍ଦ ସିଂହ ମସୁଧା କଲେ ଯେ ପାଞ୍ଚମାଇଲ ଦୂରରେ ଥିବା ଦକ୍ଷିଣ-ପୂର୍ବ ରେଳବାଇ ସେତେବେଳର ବେଙ୍ଗଲ-ନାଗପୁର ରେଳବାଇର ଯେନାପୁର ଷ୍ଟେସନ ପାଖ ବ୍ରାହ୍ମଣୀ ପୋଲ ପାଖରେ କଲିକତା-ମାନ୍ଦ୍ରାଜ ମେଲ ଗାଡ଼ିକୁ ଲାଇନ୍‌ଚ୍ୟୁତ କରାଇବା । କାରଣ କଲିକତାରୁ ବହୁତ ଫୌଜ କଟକ ଆସୁଥାନ୍ତି । ସେମାନଙ୍କୁ ମାରିଦେବା । ଏହା ଆଜିକାଲିର ମାଓବାଦୀ କାର୍ଯ୍ୟପନ୍ଥା ପରି ହିଂସାତ୍ମକ ।

ଅଗଷ୍ଟ ମାସ । ଭୀଷଣ ବର୍ଷା ହେଉଛି । ରାତି ୧୨ଟା । କଲିକତାରୁ ମାନ୍ଦ୍ରାଜ ଅଭିମୁଖେ ମେଲଗାଡ଼ି ବ୍ରାହ୍ମଣୀ ନଦୀର ପୋଲ ପାରି ହୋଇ ତୀବ୍ର ଗତିରେ ଆସୁଛି । ମାଧବାନନ୍ଦ ସିଂହ ଓ ତାଙ୍କର ସାଥୀମାନେ ରେଳଲାଇନ୍ ଓ ପାଖରେ ଥିବା ବଡ଼ ବଡ଼ ପଥର ୪/୬ ଖଣ୍ଡ ଆଣି ଲାଇନ୍ ଉପରେ ରଖିଦେଲେ । ମାନ୍ଦ୍ରାଜ ମେଲ୍ ବ୍ରାହ୍ମଣୀ ନଦୀ ପାରହେଲା ପରେ ଗତି ମନ୍ଥର ହୋଇଗଲା । ଡ୍ରାଇଭର ଆଗରୁ ଦେଖିପାରିଲେ ରେଳଲାଇନ ବନ୍ଦ । ବୋଧହୁଏ କୌଣସି ଦୁର୍ବୃତ୍ତର ଏହା କାଣ୍ଡ ।

ତେଣୁ ବହୁ ଦୂରରୁ Vacuum brake ପ୍ରୟୋଗ କରି ଗାଡ଼ି ବନ୍ଦ କରିଦେଲେ । ବହୁ ଜୋରରେ ହର୍ଣ୍ଣ ଦେଲେ । ଗାଡ଼ିରେ ଥିବା ପୋଲିସ୍‌ମାନେ ଦୌଡ଼ି ଦୌଡ଼ି ଆସିଲେ । ଲାଇନ୍ ସଫା କରିଦେଲେ । ସେତେବେଳେ ଫିସ୍ ପ୍ଲେଟ୍ ବାହାର କରିବା କୌଶଳ ଜଣାନଥିଲା । ପୋଲିସ ଚାରିଆଡ଼କୁ ଗୁଳି ଚଳାଇଲେ । ଆତଙ୍କବାଦୀମାନେ ପାଖ ବିଆଳି ଧାନ କିଆରୀ ମଝିରେ ବହୁ ଦୂରରେ লୁଚିଗଲେ । କିଛି ଜଣାପଡ଼ିଲା ନାହିଁ । ପରଦିନ ପୋଲିସ ୨୦ ଜଣ ଆସି ମୋର ମାମୁଁଘର ଗାଁ ବୃନ୍ଦାଦେଈପୁର ଶାସନ ଓ ପାଖ ଗ୍ରାମର ମୁଖିଆ ମୁଖିଆ ଲୋକଙ୍କୁ ଡାକି ନେଇ ବହୁ ନିର୍ଯ୍ୟାତନା ଦେଲେ । ଶେଷରେ ଘର ପିଛା ଟ୧୦୦୦ଙ୍କା ଲେଖାଏଁ ପିଟୁଣୀ ଟିକସ ବସାଇଲେ । ଜିନିଷ ପତ୍ର କୌଣସି ମତେ ବନ୍ଧାଦେଇ ଜରିମାନା ଦେବାକୁ ବାଧ୍ୟକଲେ । ମାଧସିଂହଙ୍କର ଏହି ଯୋଜନା ପଣ୍ଡ ହୋଇଗଲା । ସେ କେଉଁଆଡ଼େ ଫେରାର ହୋଇଗଲେ ।

ଏଣେ ପୂର୍ଣ୍ଣ ଅଗଷ୍ଟ ମାସ ଶେଷ ହେବାରୁ ସେପ୍ଟେମ୍ବର ମାସରେ ସ୍କୁଲ୍ ଖୋଲିଲା । ଖବର ନେଲୁ ଯେ ଅଗଷ୍ଟ ୧୨ ତାରିଖରେ ସ୍ୱର୍ଗତ ପଦ୍ମନାଭ ରାୟଙ୍କ ନେତୃତ୍ୱରେ ପ୍ରାୟ ୫୦ ହଜାର ଜନତା ଶୋଭାଯାତ୍ରା କରି ବ୍ରିଟିଶ ସରକାର ମୁର୍ଦ୍ଦାବାଦ, ମହତ୍ମାଗାନ୍ଧୀକୀ ଜୟ, ଭାରତ ମାତାକୀ ଜୟ କରି କଂଗ୍ରେସ ପତାକା ଧରି ଯାଜପୁର ଏସ.ଡ଼ି.ଓ. କୋଠି ଓ ଟ୍ରେଜେରୀ ଆଡ଼କୁ ମାଡ଼ି ଆସିଲେ । ସେମାନେ ଟ୍ରେଜେରୀ ଆଡ଼କୁ ମାଡ଼ି ଆସିଲାବେଳେ ଟ୍ରେଜେରୀ ଜଗିଛନ୍ତି ମାତ୍ର ୫ ଜଣ ସିପାହୀ (୪ ଜଣ

କନଷ୍ଟେବଲ ଓ ଜଣେ ହାବିଲଦାର) । ହାବିଲଦାର ଟ୍ରେଜେରୀ ସମ୍ମୁଖରେ ୪ଜଣ ଯାକ ସିପାହୀଙ୍କୁ ଏକ ଲାଇନରେ ଛିଡ଼ା କରାଇ ବନ୍ଧୁକ ଧରି ଅର୍ଡର କଲେ – Platoon Stand at Arms. ତାପରେ ଅର୍ଡ଼ର କଲେ Ready ଅର୍ଥ ready for firing. ଲୋକେ ମାନୁ ନଥାନ୍ତି । ତାପରେ ଅର୍ଡ଼ର କଲେ Fire ଅର୍ଥ ପ୍ରଥମ ତିନି ରାଉଣ୍ଡ blank firing. ଯେବେ କିଛି ନ ହୁଏ ଶେଷ ଅର୍ଡ଼ର ହେବ Firing. ସେତେବେଳେ ପ୍ରକୃତ ଫାୟାରିଂ ପୂର୍ବରୁ କେତେ ସତର୍କତା ଅବଲମ୍ବନ କରାଯାଉଥିଲା ଦେଖନ୍ତୁ । ଲୋକେ ମାନୁ ନଥାନ୍ତି । ତା ପରେ ଫାୟାର୍ । ତାହାର ଅର୍ଥ ଉପରକୁ ଫାୟାରିଂ । ଯେତେବେଳେ ଲୋକେ ଦେଖିଲେ ଯେ ସତକୁ ସତ ଗୁଳି ଚାଳନା ହେଲାଣି, ସେମାନେ ଛତ୍ର ଭଙ୍ଗ ଦେଲେ । ଆଗର ଲୋକ ପଛକୁ ଦଉଡୁଛନ୍ତି, ପଛର ଲୋକ ଆଗକୁ ଯାଉଛନ୍ତି । ତେଣୁ ନେତାମାନେ କହିଲେ, ପଛକୁ ଯାଅ । ଠିକ୍ ଏହି ସମୟରେ ଏକ ଉଡାଜାହାଜ ବହୁତ ନାଲି ନେଳି ପ୍ରଚାର ପତ୍ର ପକାଇଲେ । ଲୋକମାନଙ୍କୁ ଧମକପୂର୍ଣ୍ଣ ସତର୍କତା । ହଜାର ହଜାର କାଗଜ ଆକାଶମାର୍ଗରୁ ପଡ଼ିଲା । ତେଣୁ ଶୋଭାଯାତ୍ରା ବିଫଳ ହେଲା । ପ୍ରଧାନ ନେତାମାନେ ଗିରଫ ହେଲେ । ପଦ୍ମନାଭ ରାୟଙ୍କୁ ବହୁ ବର୍ଷ ଜେଲଦଣ୍ଡ ହୋଇଗଲା । ଆଉ ନେତାମାନେ ଥିଲେ ଶାନ୍ତନୁ କୁମାର ଦାସ, ମଦନ ମୋହନ ପଟନାୟକ, ଗଦାଧର ଦତ୍ତ, ସୁକିନ୍ଦାର ପରମେଶ୍ୱର ଜେନା ପ୍ରଭୃତି । ମୋର ପିତା ଅଳ୍ପକେ ରକ୍ଷା ପାଇଗଲେ । ମୋର ଭଲପଢ଼ିବା ଭବିଷ୍ୟତ ଜୀବନ ନଷ୍ଟ ହୋଇଯିବା ଆଶଙ୍କାରେ ଆଉ ସକ୍ରୀୟ ରାଜନୀତିରେ ଅଂଶ ଗ୍ରହଣ କଲେ ନାହିଁ ।

ଓଡ଼ିଶାର ସ୍ୱାଧୀନତା ସଂଗ୍ରାମରେ ଯାଜପୁର ସବ-ଡିଭିଜନ ଅଗ୍ରଭାଗରେ ଥିଲା । ତାପରେ ରକ୍ତଭୂମି ଇରମ ଯାହା ଭଦ୍ରଖ ପାଖରେ ଅବସ୍ଥିତ । ସେଠାରେ ସ୍ୱାଧୀନତା ଆନ୍ଦୋଳନ କରୁଥିବାରୁ ଗୁଳି ଫାୟାର ହୋଇ ୩୦ ଜଣ ସରିକି ଲୋକ ମରିଯାଇଥିଲେ । ଡକ୍ଟର ହରେକୃଷ୍ଣ ମହତାବ ମଧ୍ୟ ଡଗରପଡ଼ା ଓ ଭଦ୍ରଖ ଅଞ୍ଚଳରେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ । ଅନୁଗୁଳରେ ଓ ବରୀରେ ମାଳତୀ ଚୌଧୁରୀ ଓ ନବକୃଷ୍ଣ ଚୌଧୁରୀଙ୍କର ମଧ୍ୟ ବହୁତ ଅବଦାନ ଥିଲା । ଏହା ପୂର୍ବରୁ ବାଲେଶ୍ୱର ଇଞ୍ଚୁଡ଼ି ସମୁଦ୍ର ତଟରେ ଲୁଣମରା ଅଭିଯାନ ୧୯୩୧ ମସିହାରେ ଆରମ୍ଭ କରାଯାଇଥିଲା । ଏହାପରେ ରଣପୁର ଠାରେ ବ୍ରିଟିଶ ଅଫିସର କର୍ଣ୍ଣେଲ ବେଜେଲଗେଟ୍‌ଙ୍କ ହତ୍ୟାକାଣ୍ଡ, ନବରଙ୍ଗପୁରରେ ଲକ୍ଷ୍ମଣ ନାୟକଙ୍କ ଫାଶୀ । ଏହିପରି ଚାରିଆଡ଼େ ବିଦ୍ରୋହର ଅଗ୍ନି ବ୍ୟାପିଗଲା । ସାରା ଭାରତ ବର୍ଷରେ ଆଇନ୍ ଅମାନ୍ୟ ଆନ୍ଦୋଳନ ଆରମ୍ଭ ହୋଇଗଲା ।

ବିହାରର ପାଟନା ଠାରେ ଜଣେ ସ୍କୁଲ୍ ଛାତ୍ର ପତାକା ଖୁମ୍ବ ଉପରେ ୩୦ ଫୁଟ ଚଢ଼ି ଇଉନିୟନ ଜ୍ୟାକକୁ ଖସାଇ ଦେଇ ଜାତୀୟ ପତାକା ଉଡାଇଥିଲା । ଏହା ବ୍ରିଟିଶ କଲେକ୍ଟରଙ୍କୁ ଅସହ୍ୟ ହେଲା । ସେ ଉପସ୍ଥିତ ପୋଲିସଙ୍କୁ ଅର୍ଡ଼ର କଲେ ''ଫାୟାର'' । ହାବିଲ୍‌ଦାର ନିଜେ ଫାୟାରିଂ କଲେ । ପିଲାଟି ବାଦୁଡ଼ି ପରି ଉପରୁ ଖସି ପଡ଼ିଲା । ଠିକ୍ ଜର୍ଣ୍ଣେଲ ଡାୟାରଙ୍କର ଜାଲିଆନାୱାଲା ବାଗର ଏକ ଛୋଟ ସଂସ୍କରଣର ଅଧ୍ୟାୟ । ଏହି ବିଦ୍ରୋହ ପ୍ରବଳ ହେବାରୁ ଆଟଲିଙ୍କ ସରକାର ବ୍ରିଟେନ୍‌ରେ କ୍ୟାବିନେଟ୍ ମିଶନ୍ ବା କ୍ୟାବିନେଟ୍ ପାହ୍ୟାର ୫ ଜଣ ମନ୍ତ୍ରୀ କଂଗ୍ରେସ ନେତାମାନଙ୍କ ସଙ୍ଗରେ କଥାବାର୍ତ୍ତା କରିବାକୁ ଭାରତକୁ ୧୯୪୫ ମସିହାରେ ପଠାଇଥିଲେ । ଏହାର ନେତୃତ୍ୱ ନେଇଥିଲେ Sir Pathic Lawrence । ସେହି ଅନୁସାରେ ୧୯୪୫ ମସିହାରେ ନେତାମାନଙ୍କୁ ବିନା ସର୍ତ୍ତରେ ଖଲାସ କରିଥିଲେ । ଲର୍ଡ଼ ମାଉଣ୍ଟବେଟନଙ୍କୁ ଗଭର୍ଣ୍ଣର ଜେନେରାଲ୍ ଭାବରେ ୧୯୪୫ ମସିହାରେ ପ୍ରେରଣ କଲେ । ସେ କଂଗ୍ରେସ ନେତା ଓ ମୁସଲିମ୍ ଲିଗ୍‌ର ନେତା ମହମ୍ମଦ ଅଲ୍ଲି ଜିନାଙ୍କ ସଙ୍ଗେ କଥାବାର୍ତ୍ତା କଲେ । ଜିନା ଜିଦ୍ ଧରି ବସିଲେ ''ଲଢ଼କେ ଲେଙ୍ଗେ ପାକିସ୍ଥାନ'' । ଚାରିଆଡ଼େ ହିନ୍ଦୁ ମୁସଲମାନ ଦଙ୍ଗା । ଗାନ୍ଧିଜୀ ଏଥିରେ ମର୍ମାହତ ହୋଇ ପୂର୍ବ ବଙ୍ଗର ନୂଆଖାଲି ଅଞ୍ଚଳକୁ ଦଙ୍ଗା ଶାନ୍ତ କରିବାକୁ ଚାଲିଗଲେ । ସେ ୭ ଦିନ ଅନଶନ ଧର୍ମଘଟ ଆରମ୍ଭ କରିଥିଲେ । ତାଙ୍କ ମଧ୍ୟସ୍ଥତାରେ ଏହି ଦଙ୍ଗା କିଛି ମାତ୍ରାରେ ଶାନ୍ତ ହୋଇଥିଲା । ମାତ୍ର ଗାନ୍ଧିଜୀଙ୍କ ସହିତ ପରାମର୍ଶ ନକରି ନେହେରୁ ଭାରତ ପାକିସ୍ଥାନ ବିଭାଜନରେ ଅଗତ୍ୟା ରାଜି ହୋଇଗଲେ । କେବଳ ପଞ୍ଜାବ, ସିନ୍ଧୁ, ବେଲୁଚିସ୍ଥାନ ପାକିସ୍ଥାନରେ ରହିଲା । ଉତ୍ତର ପଶ୍ଚିମ ସୀମାନ୍ତ ପ୍ରଦେଶର ନେତା ଖାଁ ଅବଦୁଲ୍ ଗଫୁର ଖାଁ ଙ୍କ ନେତୃତ୍ୱରେ ପ୍ରବଳ ବିରୋଧ କଲେ । କାରଣ ସେ ଥିଲେ ଜଣେ ଆଦର୍ଶବାଦୀ ଉଦାରପନ୍ଥୀ ମୁସଲମାନ ନେତା । ସେ ଜିଦ୍ ଧରିବାରୁ ସେଥିରେ ଲୋକମତ ନିଆଗଲା । ଭୋଟର ଫଳାଫଳ ହେଲା ପାକିସ୍ଥାନ ସପକ୍ଷରେ । ମାତ୍ର ୧% ଜନମତ କମ୍ ହେବାରୁ ତାହା ଭାରତରେ ମିଶ୍ରଣ ହୋଇପାରିଲା ନାହିଁ । ପଞ୍ଜାବ ଓ ସିନ୍ଧୁ ପ୍ରଦେଶର ବହୁ ଭିନ୍ନ ଧର୍ମାବଲମ୍ବୀ ଲୋକ ପାଖ ରାଜ୍ୟକୁ ଚାଲି ଆସିଲେ । ଆସିଲାବେଳକୁ ଅନାହାର ଓ କଷ୍ଟରେ ବୟସ୍କ ଲୋକ, ନାରୀ ଓ ଶିଶୁ ପ୍ରାଣତ୍ୟାଗ କଲେ । ସେ ଅତି ଲୋମହର୍ଷଣକାରୀ ଓ କରୁଣ କାହାଣୀ । ଇଂଲଣ୍ଡର ପ୍ରସିଦ୍ଧ ଚଳଚିତ୍ର ଅଭିନେତା ଗାନ୍ଧୀଙ୍କ ଉପରେ ରଚିତ ସିନେମାରେ ଏହା ବିଶଦ ଭାବରେ ଦର୍ଶାଇଛନ୍ତି ।

# ଯାଜପୁରରେ ମାଟ୍ରିକ୍ ପରୀକ୍ଷା

୧୯୪୨ ମସିହା ଏହିପରି କଟିଛି । ୧୯୪୩ ମସିହା ମୋ ଜୀବନର ଅତି ଦୁଃଖଦ ବର୍ଷ । ମୋର ଭାଇନା ହୃଦାନନ୍ଦ ସେହି ବର୍ଷ ଟାଇଫଏଡ୍ ରୋଗରେ ପ୍ରାଣ ତ୍ୟାଗ କଲେ । ଦାରିଦ୍ର୍ୟ ଏବଂ ଔଷଧ କ୍ଲୋରୋମାଇସେଟିନ୍ ଔଷଧ ଆବିଷ୍କାର ହୋଇନଥିବାରୁ କିଛି ଉପାୟ ନଥିଲା । ବଡ଼ବାପା ନିଶାକର ମିଶ୍ର ନିଜ ବଡ଼ ପୁଅକୁ ଦେଖି ପାରିଲେ ନାହିଁ । ନଦୀବଢ଼ି ଯୋଗୁ ବୁଢ଼ାନଦୀର ଗୁଡ଼ିଆ ପୋଲ ପାଖରେ ବସ ବଦଳା ବଦଳି ହେଉଥାଏ । ମଝିରେ ଡଙ୍ଗାରେ ପ୍ରଖର ବୁଢ଼ାନଦୀକୁ ସନ୍ତର୍ପଣରେ ପାର ହେଉଥାନ୍ତି । ମୋର କକେଇ ଯାଜପୁରକୁ ଆସିଥିଲେ ପୁତୁରାକୁ ଦେଖିବାପାଇଁ । ମାତ୍ର ତାଙ୍କର ଚିତାଗ୍ନିକୁ ଦେଖିଲେ । ସେ ମଧ୍ୟ ଦୁଃଖରେ ଭାଙ୍ଗି ପଡ଼ିଲେ । ସ୍କୁଲ୍ ଦିନେ ବନ୍ଦ ହୋଇଗଲା । କକେଇ ଏବଂ ମୁଁ ବୁଢ଼ାନଦୀ ପାର ହୋଇ ଏପାଖକୁ ଆସିଲାବେଳକୁ ଅତି ଶୋକାକୁଳ ପରିବେଶ ସୃଷ୍ଟି ହେଲା । ବଡ଼ବାପା ଜଣେ ଗ୍ରାମବାସୀଙ୍କୁ ସଙ୍ଗରେ ନେଇ ଆସିଥିଲେ । ସେ ଆମ୍ଭମାନଙ୍କୁ କାନ୍ଦୁ ଥିବାର ଦେଖି ଖୁବ୍ ଜୋରରେ କାନ୍ଦିବାକୁ ଲାଗିଲେ । କକେଇ ସାନ୍ତ୍ୱନା ଦେଇ କାନ୍ଦି କାନ୍ଦି କହୁଥାନ୍ତି, ‘‘ଗୋଟିଏ ପୁଅ ସିନା ଚାଲିଗଲା, ଆଉ ଗୋଟିଏ ପୁଅକୁ ନିଅ । ଏହାକୁ ଆଶୀର୍ବାଦ କଲେ ଏହି ପିଲାଟି ଆମ୍ଭଙ୍କୁ ବୃଦ୍ଧକାଳେ ସହାୟ ହେବ । ସେହି ଅନୁସାରେ ଆମ୍ଭେମାନେ ଭଗ୍ନ ହୃଦୟରେ ଗ୍ରାମକୁ ଫେରିଲୁ । ଆସିଲା ପରେ ମୋର ମଧ ଟାଇଫଏଡ୍ ପରି ଗୋଟିଏ ରୋଗ ହେଲା, ସେହି ରୋଗରେ ଭୀଷଣ ଅସୁସ୍ଥ ଓ ଆକ୍ରାନ୍ତ ହୋଇ ୩ ମାସ ଘରେ ରହିଲି । ସ୍କୁଲକୁ ଦରଖାସ୍ତ ଦେଲି । ସ୍କୁଲ୍ ହେଡ଼ମାଷ୍ଟର ମହୋଦୟ ବହୁତ ଦୁଃଖ କଲେ ।

ଏହିପରି ୧୯୪୨/୪୩ ମସିହା ନବମ ଓ ଦଶମ ଶ୍ରେଣୀରେ ମୋର ପାଠପଢ଼ା ଶୁନ । ସ୍କୁଲକୁ ଏକା ଏକା ଫେରିଲି ଜାନୁଆରୀ ୧୯୪୪ ମସିହାରେ । ଭଗ୍ନ ସ୍ୱାସ୍ଥ୍ୟ ଏବଂ ଶୋକ ସନ୍ତପ୍ତ ମାନସିକ ଅବସ୍ଥା ।

ମାତ୍ର ଅରକ୍ଷିତକୁ ଦଇବ ସାହା । ଏହା ଅତ୍ୟନ୍ତ ସତ୍ୟ । ଯାଜପୁରର ଜଣେ ଲୋକପ୍ରିୟ ଡାକ୍ତର ଡଃ ଅବଦୁଲ ଖଲିଲ ବହୁତ ଗରିବ ପିଲାଙ୍କୁ ସାହାଯ୍ୟ କରୁଥାନ୍ତି । ମାତ୍ର ମୋତେ ପାଠ ପଢ଼ାଇବାର ପୂର୍ଣ୍ଣ ଦାୟିତ୍ୱ ନେବାପାଇଁ ତାଙ୍କର ସମ୍ବଳ ନଥିଲା । ଯୋଗକୁ ଜଣେ ଉଦାରଚେତା, ସହାନୁଭୂତିଶୀଳ, ଦୟାର୍ଦ୍ର ସାହାଯ୍ୟକାରୀ ଓକିଲ ସ୍ୱର୍ଗତଃ ଯାଜପୁରର ସ୍ୱନାମଧନ୍ୟ ଓକିଲ ହରିଧନ ମିତ୍ରଙ୍କ ପୁତ୍ର ସୁନୀଲ କୁମାର ମିତ୍ର ବ୍ୟକ୍ତିଗତ

କାର୍ଯ୍ୟବଶତଃ ସେହି ଡାକ୍ତରଙ୍କ ପାଖକୁ ଆସିଥିଲେ । ଡଃ. ଖଲିଲ ତାଙ୍କୁ ମୋର ଦୟନୀୟ ଅବସ୍ଥା ବିଷୟ କହିଲେ । ସେ ମୋତେ ଆଶ୍ୱାସନା ଦେଇ କହିଲେ, ''ମୋର ପୁତ୍ର ସୁଜିତ୍ କୁମାର ମିତ୍ର ଏକାଦଶ ଶ୍ରେଣୀର ଛାତ୍ର । ତମେ ତାକୁ ଜାଣ ?'' ମୁଁ କହିଲି, ସେ ମୋର ସହପାଠୀ । ସେ ମୋତେ କହିଲେ ଜଣେ ମାଟ୍ରିକ୍ ପରୀକ୍ଷାର୍ଥୀ ପୂର୍ଣ୍ଣଚନ୍ଦ୍ର ମହାନ୍ତି ମୋର ଗୋଟିଏ ଅଧିକା ଘରେ ଅଛନ୍ତି । ସେ ମାର୍ଚ୍ଚ ମାସରେ ଚାଲିଗଲେ ତୁମେ ସେଠାକୁ ଚାଲିଆସ । ବର୍ତ୍ତମାନ ୩ ମାସ ତୁମେ ହଷ୍ଟେଲ୍‌ରେ ରହିଥାଅ । ସକାଳେ ଓ ସନ୍ଧ୍ୟାରେ ଆସି ଆମ ଘରେ ଖାଇଦେଇ ଯାଉଥିବ । ତେଣୁ ତା ପରଦିନ ୩ ମାସ ପର୍ଯ୍ୟନ୍ତ ମୁଁ ସେହି ବନ୍ଦୋବସ୍ତ କଲି । ପରୀକ୍ଷା ଜୁନ୍ ମାସରେ । ମାତ୍ର ୬ମାସ ସମୟ । ପଣ୍ଡିତ ଗୋଦାବରୀଶ ମିଶ୍ର ଶିକ୍ଷାମନ୍ତ୍ରୀ । ତାଙ୍କ ଚେଷ୍ଟାରେ ଉତ୍କଳ ବିଶ୍ୱବିଦ୍ୟାଳୟ ଗଠିତ ହୋଇ ପ୍ରଥମେ ସମ୍ବଲପୁର, ବଲାଙ୍ଗୀର, ପୁରୀ ଏବଂ ଖ୍ରୀଷ୍ଟ କଲେଜ ମାନ ଆରମ୍ଭ ହେଲା । ଓଡ଼ିଶାରେ ଶିକ୍ଷାର ପ୍ରସାର ପାଇଁ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ଅବଦାନ ଅତୁଳନୀୟ ।

କେବଳ ଅଧିକ ସମୟ ପାଇଲେ ଯେ ପିଲେ ବେଶୀ ପଢ଼ିବେ ସେପରି ନୁହେଁ । ପାଠ ପଢ଼ିବାରେ ଅଧ୍ୟବସାୟ ଏବଂ ଧ୍ୟାନ ଏକାନ୍ତ ଆବଶ୍ୟକ । ଆମ୍ଭମାନଙ୍କ ଅଦମ୍ୟ ଚେଷ୍ଟା ଏବଂ ଖୁବ୍ ଭଲ ଭଲ କର୍ମନିଷ୍ଠ ଛାତ୍ର ବତ୍ସଳ ଶିକ୍ଷକମାନଙ୍କ ସହାୟତାରେ ମୁଁ ଏବଂ ସୁଜିତ୍ ଦୁଇଜଣ ଏବଂ ଆଉ ୪ ଜଣ ଏପରି ଛଅଜଣ ମାଟ୍ରିକ୍ ପରୀକ୍ଷାରେ ଖୁବ୍ ଭଲ ନମ୍ବର ରଖି ଉତ୍ତୀର୍ଣ୍ଣ ହେଲୁ । ଯାଜପୁର ସ୍କୁଲ୍ ସେହି ବର୍ଷ ଖୁବ୍ ସୁନାମ କରିଥିଲା । ମନଖୁସିରେ ହେଡମାଷ୍ଟର ସେଦିନ ସ୍କୁଲ୍ ବନ୍ଦ କରିଦେଲେ ।

ମୋର ମାଟ୍ରିକ୍ ପରୀକ୍ଷାରେ ଭଲ ନମ୍ବର ରଖି ପାସ୍ କରିବାରେ ମୁଖ୍ୟ ପ୍ରେରଣାଦାୟକ ହେଉଛନ୍ତି ସ୍ୱର୍ଗତଃ ସୁନୀଲ୍ କୁମାର ମିତ୍ର, ତାଙ୍କର ସ୍ତ୍ରୀ ଏବଂ ଶାଶୁ ଯେ କଲିକତାରୁ ଆସିଥିଲେ । ଶିକ୍ଷକ ହେଲେ ନରସିଂହ ବେହୁରିଆ । ସେ ଖୁବ୍ ମେଧାବୀ ଛାତ୍ର ଥିଲେ । ଗଣିତରେ ବିଶାରଦ । ସେ ରେଭେନ୍‌ସା କଲେଜରେ ପଢୁଥିଲେ । ଗ୍ରୀଷ୍ମାବକାଶ ସମୟରେ ସେ ଆମ୍ଭମାନଙ୍କୁ ଗଣିତ ପଢ଼ାଉଥିଲେ । ଅର୍ଦ୍ଧସୁପ୍ତ ଭାବରେ ଅତି ଅକ୍ଳେଶରେ ଜ୍ୟାମିତିର ଜଟିଳ ପ୍ରଶ୍ନ ଓ ଅନ୍ୟାନ୍ୟ ବିଷୟ ଗୁଡ଼ିକର ସମାଧାନ କରିଦେଉଥିଲେ । ସେ ମୋର ବଡ଼ଭାଇ ସଦୃଶ । ବି.ଏ. ରେ ବେଷ୍ଟ ଗ୍ରାଜୁଏଟ୍ ହୋଇ ପରେ ଆଇ.ଏ.ଏସ. ପାଇ କମିଶନର ହୋଇ ଖୁବ୍ ସୁନାମ ସହକାରେ ଅବସର ନେଇଥିଲେ । ଜମିଜମା ବନ୍ଦୋବସ୍ତରେ ସେ ସିଦ୍ଧହସ୍ତ ଥିଲେ । ତାଙ୍କ ପୁଅମାନେ

ନିଜ ନିଜ କ୍ଷେତ୍ରରେ ସୁପ୍ରତିଷ୍ଠିତ । ଗୋଟିଏ ପୁଅ ONGC ରେ Managing Director । ନାମ ସାର୍ଥକ ବେହୁରିଆ ।

ଆଉ ଜଣେ ସ୍ମରଣୀୟ ଶିକ୍ଷକ ହେଉଛନ୍ତି ସ୍ୱର୍ଗତଃ କେ.ବି. ପଟ୍ଟନାୟକ (କୁଣ୍ଡଲୀ ଭୀମସେନ ପଟ୍ଟନାୟକ)।ଭଞ୍ଜନଗର ବାସିନ୍ଦା । ସେ ଇଂରାଜୀ ବିଷୟରେ ଅତି ବିଚକ୍ଷଣ । ଇଂଲିସ୍ ୱାର୍ଡ଼ ନିର୍ବାଚନରେ ଅତି ପାରଙ୍ଗମ । ମହାରାଜା କଲେଜ ବିଜୟନଗରମରୁ ଇଂଲିସ ଅନର୍ସରେ ଫାଷ୍ଟ କ୍ଲାସ୍ ପାଇ ଅଧ୍ୟାପକ ପୋଷ୍ଟ ନପାଇ ହାଇସ୍କୁଲ୍‌ରେ ଇଂରାଜୀ ଶିକ୍ଷକ ହୋଇ ପଢ଼ାଉଥିଲେ । ପୂରା ସେକ୍‌ସପିୟରଙ୍କ ନାଟକଗୁଡ଼ିକ ତାଙ୍କର ମୁଖସ୍ଥ । ବିନା ଟ୍ୟୁସନ୍ ଫିସରେ ବହୁତ ପିଲାଙ୍କୁ ଘରୁ ଜଳଖିଆ ଦେଇ ପଢ଼ାଉଥିଲେ । ତାଙ୍କର ଇଂରାଜୀ ଶିକ୍ଷାଦାନ ପ୍ରତି ଆଗ୍ରହ ଏବଂ ଛାତ୍ରବାତ୍ସଲ୍ୟ ଅତୁଳନୀୟ । ମୃତ୍ୟୁ ପର୍ଯ୍ୟନ୍ତ ତାଙ୍କ ସହିତ ମୋର ପାରିବାରିକ ସଂପର୍କ ଥିଲା । ତାଙ୍କର ପେନ୍‌ସନ୍ ପାଇବା ଏବଂ ଚାରିଗୋଟି କନ୍ୟା ବିବାହରେ ମୁଁ କିଛି ସହାୟତା କରିଥିଲି । ମୃତ୍ୟୁ ଶଯ୍ୟାରେ ମଧ ସେ ସେକ୍‌ସପିଅରଙ୍କ କାବ୍ୟରୁ ଆବୃତ୍ତି କରୁଥିଲେ-

"The fault dear Brutus lies not in our stars,
But in ourselves that
we are enderlings." (Julius Caesar)

x x x

"Schiller creates tragedies
by shedding much blood.
But Shakespeare creates tragedies
by dropping a handkerchief." (Othello)

ସେଗୁଡ଼ିକ ମୋ ମାନସପଟରେ ବର୍ତ୍ତମାନ ସୁଦ୍ଧା ଜାଜ୍ୱଲ୍ୟମାନ । ଯାଜପୁର ହାଇସ୍କୁଲ୍‌ରେ ଉପରୋକ୍ତ ଦୁଇଜଣ ବିଶିଷ୍ଟ ବ୍ୟକ୍ତି ଚିର ସ୍ମରଣୀୟ ରହିବେ । ଜଗତରେ ବିତ୍ତବାନ ଲୋକ ବହୁତ ମାତ୍ର ଚିତ୍ତବାନ ଲୋକ ବିରଳ । ସୁନୀଲ ମିତ୍ରଙ୍କର ୪ ପୁଅ ଓ ୪ ଜଣ କନ୍ୟା ନିଜ ନିଜ କର୍ମକ୍ଷେତ୍ରରେ ସୁପ୍ରତିଷ୍ଠିତ । ବଡ଼ପୁଅ ସୁଜିତ (ମୋର ଅନ୍ତରଙ୍ଗ ବନ୍ଧୁ) Calcutta Presidency College ରେ Statistics ରେ ପ୍ରସିଦ୍ଧ Statistician Dr. Mahalanobis ଙ୍କ ପାଖରେ M.Sc. ଏବଂ Doctorate ପାଇ ଆମେରିକାରେ ୧୫ ବର୍ଷ ପ୍ରଫେସର ପଦବୀରେ ରହି ଖୁବ୍ ସୁନାମ ଅର୍ଜନ କରିଥିଲେ ।

ଆମେରିକାରୁ ଫେରି କଲିକତାରେ ନିଜ ବାସଗୃହକୁ ଶସ୍ତାରେ ବିକ୍ରି କରି ଦିଲ୍ଲୀ ହସଖସ୍‌ରେ ବସବାସ କଲେ । ତାଙ୍କର ଷ୍ଟାଟିସ୍‌ଟିକ୍‌ସରେ ବହୁତ ସୁନାମ ଥିଲା । ସେ ସୁଇଡେନ୍‌ର ଷ୍ଟକହୋମ୍ ଠାରେ ଏକ ଆନ୍ତର୍ଜାତୀୟ ସମ୍ମିଳନୀରେ ଯୋଗଦେବା ପାଇଁ ନିମନ୍ତ୍ରଣ ପାଇଥିଲେ । ସେ ଶାରୀରିକ ଅସୁସ୍ଥତା ହେତୁ ଅକ୍ଷମତା ପ୍ରକାଶ କଲେ । ମାତ୍ର ସେମାନେ ତାଙ୍କୁ ଓ ତାଙ୍କର ସହଧର୍ମିଣୀ ଉଭୟଙ୍କୁ ଯାବତୀୟ ଖର୍ଚ୍ଚ ଦେଇ ସୁଇଡେନ୍ ନେଇଥିଲେ । ଏହା ମୋତେ ବହୁତ ଆନନ୍ଦ ଦେଇଥିଲା । Dr. Mahalanobisଙ୍କ ପାଇଁ ତାଙ୍କ ସଂଖ୍ୟା ଆନ୍ତର୍ଜାତୀୟ ସ୍ତରରେ ମଧ୍ୟ ପ୍ରସାର ଲାଭ କରିଥିଲା । ତୃତୀୟ ପୁତ୍ର ଡକ୍ଟର ସଞ୍ଜିତ କୁମାର ମିତ୍ର କାଲିଫର୍ଣ୍ଣିଆ ବିଶ୍ୱବିଦ୍ୟାଳୟରେ ନାମଜାଦା ଫିଜିକ୍‌ସ ପ୍ରଫେସର । ଆମେରିକାରେ ଯେଉଁ ଦଶଜଣ ଭାରତୀୟ ବିଭିନ୍ନ କ୍ଷେତ୍ରରେ ଉଚ୍ଚକୋଟୀର ସୁନାମ ଅର୍ଜନ କରିଛନ୍ତି ସେ ସେମାନଙ୍କ ମଧ୍ୟରେ ଜଣେ । ତାଙ୍କର ଜଣେ ଜାମାତା Dr. K.L.N. Swamy ଓଡ଼ିଶାର Christ College, କଟକରେ ବହୁବର୍ଷ ଇଂଲିସ୍ ପ୍ରଫେସର ରୂପେ କାର୍ଯ୍ୟକରି ସ୍ୱେଚ୍ଛାମୂଳକ ଅବସର ଗ୍ରହଣ କରି ଭଗବାନ ସାଇବାବାଙ୍କ ବେଙ୍ଗଲୋରର White Field ରେ ଥିବା ସାଇବାବା କଲେଜରେ ପ୍ରିନସ୍‌ପାଲ ଭାବେ ସ୍ୱଳ୍ପ ଦରମାରେ କାମ କରି କଲେଜଟିକୁ ପ୍ରତିଷ୍ଠିତ କରାଇପାରିଛନ୍ତି । ମୁଁ ଏବଂ ମୋର ସ୍ତ୍ରୀ କିଛି ବର୍ଷ ପୂର୍ବେ ସାଇବାବା White Field କୁ ଆସିଥିଲାବେଳେ ଡଃ ସ୍ୱାମୀଙ୍କ ଅତିଥି ଭାବେ ତାଙ୍କ ଘରେ ରହି ସାଇବାବାଙ୍କ ଦର୍ଶନ ଲାଭ କରିଥିଲୁ । ତାଙ୍କ ପରିବାର ସଙ୍ଗେ ଆମ୍ଭ ପରିବାରର ଅତି ଘନିଷ୍ଠ ସଂପର୍କ ବର୍ତ୍ତମାନ ପର୍ଯ୍ୟନ୍ତ ରହିଛି ।

ସୁନୀଲ ବାବୁ ବଡ଼ପୁଅ ପାଖରେ ଆମେରିକାରେ ପ୍ରାଣତ୍ୟାଗ କଲାପରେ ତାଙ୍କର ଚିତାଭସ୍ମ ଆଣି ସୁଜିତ ଓ ତାଙ୍କ ସ୍ତ୍ରୀ ଓ ମା କଲିକତାରେ ତାଙ୍କ ଶୁଦ୍ଧି କ୍ରିୟା ସଂପାଦନ କରିଥିଲେ । ମୋତେ ସେହି ଶୋକ ସମ୍ବାଦ ଦେବାରୁ ମୁଁ କଲିକତା ଯାଇ ଶୁଦ୍ଧି କାର୍ଯ୍ୟରେ ଯୋଗଦାନ କରିଥିଲି । ସେଥିରେ ତାଙ୍କ ପରିବାର ସଦସ୍ୟ ଏବଂ ବନ୍ଧୁବାନ୍ଧବ ବହୁତ ଆନନ୍ଦ ଲାଭ କରିଥିଲେ । ମହତ୍ ଲୋକଙ୍କ ସହିତ ସଂପର୍କ ରଖିପାରିଲେ ଆଜୀବନ ରହେ । ମା' ଲୋତକଭରା କଣ୍ଠରେ କହିଥିଲେ,''କୈଳାସ ଆମାର ସବଚେଇ ବଡ଼ଛେଲେ'' । ମୋ ଆଖିରୁ ସ୍ୱତଃ ଲୋତକ ସ୍ରବଣ ହେଲା ।

ଜଣେ ଖାନଦାନ ବଙ୍ଗୀୟ ପରିବାରରୁ ବହୁତ ଗୁଡ଼ିଏ ଶିକ୍ଷଣୀୟ ବିଷୟ ରହିଛି । ପ୍ରଥମ ହେଲା ପରିବାରର ଭାଇ ଭଉଣୀ ଏବଂ ବାପା ମାଙ୍କ ପ୍ରତି ବ୍ୟବହାର ବହୁତ ସୌହାର୍ଦ୍ଦପୂର୍ଣ୍ଣ । ଭାଇ ଭାଇ କଳି କଜିଆ ଲାଗିଲେ ଅତି ବଡ଼ ଗାଳି ହେଲା, ''ତୁମି ଅଶିଷ୍ଟ, ଅଭଦ୍ର, ବର୍ବର କୋଥାକାର । ଭାଲ ବ୍ୟବହାର ଜାନନା ।'' ଆମ ଓଡ଼ିଆ

ପରିବାରରେ ଯେପରି ଅଭଦ୍ର ଭାଷା ବ୍ୟବହାର କରନ୍ତି, ତାହା ମୁଁ କେବେ ଶୁଣିନାହିଁ । ପରିବାରଗୁଡ଼ିକ ମାତୃକେନ୍ଦ୍ରିକ । ଯାହା ଅଭାବ ଅଭିଯୋଗ ମାଙ୍କ ପାଖରେ । ମା ବାପାଙ୍କୁ ପେଶ୍ କରି ଶକ୍ତି ଅନୁସାରେ ପୂରଣ କରିବେ । ପୁଣି ପିତାମାତାଙ୍କ ପ୍ରତି ଭକ୍ତି, ଆଗନ୍ତୁକଙ୍କ ପ୍ରତି ସମ୍ମାନ ।

ପ୍ରତ୍ୟେକ ପରିବାରରେ ଗୋଟିଏ ହାରମୋନିୟମ ନିଶ୍ଚୟ ଥିବ । ମୋର ଜଣେ ବନ୍ଧୁ ଭାବଗ୍ରାହୀ ଦାସ ମଜାରେ କହନ୍ତି, ''ଓଡ଼ିଆ ଲୋକ ଦୁଇଜଣ ହେଲେ ଗପସପ କରୁଥିବେ । ତିନିଜଣ ହେଲେ ପଶା ଖେଳ । ଅଧିକ ହେଲେ ମାଡ଼ଗୋଳ । ମାତ୍ର ବଙ୍ଗାଳୀ ପରିବାରରେ ଦୁଇଟି ପିଲା ହେଲେ ମନୋଯୋଗ ସହକାରେ ଅଧ୍ୟୟନ କରିବେ । ତୃତୀୟକୁ ପଢ଼ିବା ବା ପଢ଼ାଇବା, ଚାରିଜଣ ହେଲେ ସାରିଗାମା ପାଧାନିସା ଓ ରବୀନ୍ଦ୍ର ସଂଗୀତ ଗାନ । ଗୁଜରାଟୀ ଜଣେ ନିଜ ନିଜ ବ୍ୟକ୍ତିଗତ ବ୍ୟବସାୟ, ଦୁଇଜଣ ଭାଗୁଆଳି ବ୍ୟବସାୟ ଓ ଅଧିକ ହେଲେ Limited Company ତିଆରି କରିବା । ତେଲୁଗୁ ଲୋକର ଜମି ଓ କୃଷିର ସଂପ୍ରସାରଣ ।

ବଙ୍ଗାଳୀ ପରିବାରରେ ଗୁରୁଜନମାନଙ୍କୁ ପାଦ ଛୁଇଁ ନମସ୍କାର ହେବା, ଦୂରରେ ଥିଲେ ସର୍ବଦା ବଙ୍ଗଳା ମାତୃଭାଷାରେ ପତ୍ରାଳାପ କରିବା ଏବଂ ବଙ୍ଗଳା ଭାଷାର ଆଦର । ପ୍ରତିବର୍ଷ ଦୁର୍ଗାପୂଜାରେ ଇଉରୋପ ଓ ଆମେରିକାରେ ପ୍ରାୟ ୨୦ କୋଟି ଟଙ୍କାର ବହି ବିକ୍ରୀ । ଶାନ୍ତିନିକେତନ ତରଫରୁ ରବୀନ୍ଦ୍ର ଗ୍ରନ୍ଥାବଳୀ ୨୦୦୦ କୋଟି ଟଙ୍କାର ବିକ୍ରୀ ହୋଇଛି । ବଙ୍ଗଳା, ବିହାର, ଓଡ଼ିଶା ଓ ଦିଲ୍ଲୀରେ State Bank of India ରେ Account ଖୋଲି ଯେଉଁ ଲୋକ ଟ୫୦୦/- ଅଗ୍ରୀମ ଦେବେ, ସେମାନଙ୍କୁ ଟ୫୦୦୦ ରିହାତି ଦରରେ ୬ ମାସ ଭିତରେ ପୂରା ଗ୍ରନ୍ଥାବଳୀ ଏକ ସେଟ୍ ଦିଆଯିବ । ଓଡ଼ିଶାରୁ ବହୁତ ଲୋକ ଆଣିଥିଲେ । ମୋର ଭାଇନା ପ୍ରଫେସର ସ୍ୱର୍ଗତ ଭୋଳାନାଥ ମିଶ୍ର ମଧ୍ୟ ସେଥିରୁ ଗୋଟିଏ ସେଟ୍ ଆଣି ନିୟମିତ ପଢ଼ାପଢ଼ି କରୁଥିଲେ । ଆମର ପ୍ରସିଦ୍ଧ ଜ୍ଞାନପୀଠ ବିଜେତା ଗୋପୀନାଥ ମହାନ୍ତିଙ୍କ ପାଇଁ ସେହିପରି ଗୋଟିଏ ଯୋଜନା କଲେ ଭଲ ହୁଅନ୍ତା । ଆଉ ଗୋଟିଏ ବଡ଼ ଶିକ୍ଷଣୀୟ ବିଷୟ ହେଲା ସେମାନେ ଜ୍ଞାନୀ ଏବଂ ପରସ୍ପରକୁ ସାହାଯ୍ୟ ସହଯୋଗ କରନ୍ତି । ବାର୍ଷିକ ସାର୍ବଜନୀନ ଦୁର୍ଗାପୂଜା ସେମାନଙ୍କୁ ଏକତ୍ର କରି ଏକତାବଦ୍ଧ କରେ । ଓଡ଼ିଶାର ଗୋଡ଼ ଟଣାଟଣି କଙ୍କଡ଼ା ପ୍ରବୃତ୍ତି ସେମାନଙ୍କର ନାହିଁ । ଏଠାରେ କେହି କାହାରି ଶିରୀ ଦେଖି ପାରନ୍ତି ନାହିଁ । ପ୍ରତି ସରକାରୀ ବିଭାଗରେ ପରଶ୍ରୀକାତରତା ଏବଂ ଗୋଷ୍ଠୀ ସଂଘର୍ଷ । ଏଗୁଡ଼ିକ ମନରୁ ଦୂର କରି ନିଜ ସହକର୍ମୀଙ୍କ ସଙ୍ଗରେ ଭ୍ରାତୃଭାବ ଜାଗ୍ରତ ନ କଲେ ବିଭାଗ ଗୁଡ଼ିକ ପୁରା ଦକ୍ଷତା ହାସଲ କରି ପାରିବେ ନାହିଁ ।

# ମୋର କଲେଜ ଶିକ୍ଷା

ମାଟ୍ରିକ ପରୀକ୍ଷା ପରେ ମୋର ଜୀବନ କଲେଜ ପଢ଼ିବା ବେଳେ ତୀବ୍ର ଓ ଅସହ୍ୟ ହୋଇଉଠିଲା । ମୁଁ କଲେଜକୁ ଆସିଲାବେଳକୁ ଅଗଷ୍ଟ ପ୍ରଥମ ସପ୍ତାହ । ପାଠପଢ଼ା ବହୁ ଅଗ୍ରସର ହୋଇଯାଇଥାଏ । ମୁଁ ରେଭେନ୍‌ସା କଲେଜରେ ନାମ ଲେଖାଇବାପାଇଁ ଦରଖାସ୍ତ କରିଥିଲି । ସେତେବେଳେ ମୂଳ School Leaving Certificate ଦାଖଲ କରାଯାଉଥାଏ । ଜେରକ୍ସ ଯନ୍ତ୍ର ନଥିଲା । ମାସିକ ଖର୍ଚ୍ଚ ଟ୧୦୦ ରୁ ଉର୍ଦ୍ଧ୍ୱ । ଏହା ମୋ ବାପାଙ୍କର ଶକ୍ତି ବାହାରେ ଥିବାରୁ ମୁଁ ନୂତନ ଆରମ୍ଭ ହୋଇଥିବା ଖ୍ରୀଷ୍ଟ କଲେଜର ପ୍ରିନ୍‌ସିପାଲ୍ ରେଭେରେଣ୍ଡ ବ୍ରହ୍ମାନନ୍ଦ ମହାନ୍ତିଙ୍କୁ ସାକ୍ଷାତ କଲି । ସେ ସବୁ ଶୁଣି କହିଲେ, ତୁମେ ତୁମର ସାଟିଫିକେଟ୍ ଫେରାଇ ଆଣି ଏହି କଲେଜରେ ନାମ ଲେଖାଇଲେ ମୁଁ ସବୁ ସୁବିଧା କରିଦେବି । ଏହା ଏକ ସୁବର୍ଣ୍ଣ ସୁଯୋଗ ମଣି ମୁଁ ରେଭେନ୍‌ସା କଲେଜର ହେଡ୍ କ୍ଲର୍କ ସ୍ୱର୍ଗତ ଚନ୍ଦ୍ରଶେଖର ମିଶ୍ର (ସ୍ୱନାମଧନ୍ୟ ଦୁର୍ଗାମାଧବ ମିଶ୍ରଙ୍କ ପିତା) ଙ୍କୁ କହିବାରୁ ସେ କହିଲେ, ''ତୁମେ ଫାଷ୍ଟ ଡିଭିଜନ୍‌ରେ ପାସ୍ କରିଛ । ସାର୍ଟିଫିକେଟ୍ ଫେରାଇବା ପାଇଁ ପ୍ରିନ୍‌ସିପାଲ ସାହେବଙ୍କ ଲିଖିତ ଅର୍ଡର ଆବଶ୍ୟକ ।''

ପ୍ରିନ୍‌ସିପାଲ୍ ଥାଆନ୍ତି ପ୍ରସିଦ୍ଧ ଉଦ୍ଭିଦ ବିଜ୍ଞାନୀ ତଥା IES (Indian Education Services) ଡିଗ୍ରୀଧାରୀ ସ୍ୱନାମଧନ୍ୟ ଡଃ. ପ୍ରାଣକୃଷ୍ଣ ପରିଜା । ଉଦ୍ଭିଦ ବିଜ୍ଞାନରେ ସେ ଇଂଲଣ୍ଡର କ୍ୟାମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟରେ ''ବ୍ଲାକ୍‌ମ୍ୟାନ୍-ପରିଜା'' ମତବାଦ ସୃଷ୍ଟି କରି ଖ୍ୟାତି ଅର୍ଜନ କରିଥିଲେ । ତାଙ୍କୁ ସାକ୍ଷାତ କରି ଅନୁମତି ଦେବାପାଇଁ ମୁଁ ତିନିଦିନ ଦୌଡ଼ିଲି । ଚପରାଶିଟି ଦୟାପରବଶ ହୋଇ ଚତୁର୍ଥ ଦିନ କହିଲା, ''ଆପଣ ଗୋଟାଏ ବେଳେ ଆସନ୍ତୁ । ସେ ସେତେବେଳେ ଅଫିସ୍ ଭିତରେ Lunch ଖାଆନ୍ତି । ଘରୁ ସହଧର୍ମିଣୀ ଯାହା ଦେଇଥାଆନ୍ତି ଖାଇସାରି ଅଧଘଣ୍ଟାଏ ବିଶ୍ରାମ । ଠିକ୍ ସେଇ ସମୟ ପୂର୍ବରୁ ମୁଁ ଯାଇ ଖବର ଦେଇ ଦେଖା କରିବାକୁ ଡକାଇ ଦେବି ।'' ସେଇଆ ହେଲା । ଡଃ. ପରିଜା ମୋତେ ପଚାରିଲେ, "What is your problem ?" ମୁଁ ସବୁ ବିଷୟ କହି ସାର୍ଟିଫିକେଟ୍ ଫେରସ୍ତ କରିବାକୁ ଅନୁମତି ଦେବାକୁ ପ୍ରାର୍ଥନା କରିବାରୁ ସେ କହିଲେ, ''କଅଣ Christ College ର ପ୍ରିନ୍‌ସିପାଲ ତୁମକୁ ପଢ଼ିବାକୁ ସୁବିଧା କରିଦେବେ, "As if we cannot". ମୁଁ କହିଲି ''ସାର୍, ଆପଣ ଯେବେ ରେଭେନ୍ସା କଲେଜରେ ସୁବିଧା କରି ଦେଇପାରିବେ ମୁଁ ଅନ୍ୟ କେଉଁ କଲେଜକୁ ଯିବି ନାହିଁ ।''

୩/୪ ମାସ ଚାଲିଗଲା । କ୍ଲାସ ଆରମ୍ଭ ହୋଇଗଲା । ମୋର ଟଙ୍କା ପଇସାର ବହୁତ ଅଭାବ । ମୁଁ ୪ ମାସ ପରେ ଡ. ପରିଜାଙ୍କ ସଙ୍ଗେ ଆଉଥରେ ସାକ୍ଷାତ କଲି । ସେ କହିଲେ ସେ ସବୁ ତ ଡେରି ହେବ । ତୁମେ ଯେବେ ଅସୁବିଧାରେ ଅଛ, ନିଜ ପକେଟ୍‌ରୁ କିଛି ଟଙ୍କା ବାହାର କରି ଯାଚିଲେ । ମୁଁ ହାତ ଯୋଡ଼ି କହିଲି, ''ସାର୍, ମୁଁ ଏପରି ଦରିଦ୍ର ହୋଇନାହିଁ ଯେ ଆପଣ ଟଙ୍କା ଦେଲେ ମୁଁ ନେଇ ହୋଟେଲ୍‌ରୁ ମିଲ୍ ଖାଇବି । ଯଦି ମୋତେ ବାସ୍ତବିକ ଦୟା ଦେଖାଉଛନ୍ତି, ତେବେ ମୋର ପାଠ ପଢ଼ିବା ପାଇଁ କିଛି ସ୍ଥାୟୀ ବ୍ୟବସ୍ଥା କରି ଦିଅନ୍ତୁ ।'' ପରିଜା ସାହେବ ଦୟାରେ ବିଗଳିତ ହୋଇଗଲେ । ସଙ୍ଗେ ସଙ୍ଗେ ଟେଲିଫୋନ ରୁମ୍‌କୁ ଯାଇ କଟକ କଲେକ୍‌ଟର L.K. Jha, ICS କୁ ଫୋନ୍ କରି କହିଲେ, "Now Sukinda is under Court of Wards. ସୁକିନ୍ଦାର ଜଣେ ମେଧାବୀ ପିଲା ରେଭେନ୍‌ସା କଲେଜରେ ନାମ ଲେଖାଇଛି । ତାକୁ ମାସିକ କିଛି ବୃତ୍ତି ବନ୍ଦୋବସ୍ତ କରିଦେଇ ପାରିବେ ?'' କଲେକ୍‌ଟର ସାହେବ ଉତ୍ତର ଦେଲେ ୨ ଦିନ ଭିତରେ ଆପଣ ତାର ନାମ ସୁପାରିଶ୍ କରି ମୋ ପାଖକୁ ପଠାଇଲେ ମୁଁ ଟ୨୦/- ଲେଖାଏଁ ମାସିକ ଷ୍ଟାଇପେଣ୍ଡ ମଂଜୁର କରିଦେବି । ମୁଁ ଦରଖାସ୍ତ ଦେଇନାହିଁ । ପରିଜା ସାହେବ ସଙ୍ଗେ ସଙ୍ଗେ ଚିଠି ପଠାଇ ୩ ଦିନ ଭିତରେ କଲେକ୍‌ଟର ସାହେବଙ୍କ ଅର୍ଡର ଅଣାଇଦେଲେ । ମୋର ଆର୍ଥିକ ସମସ୍ୟା ବହୁ ପରିମାଣରେ ଲାଘବ ହୋଇଗଲା । ଏହା ବ୍ୟତୀତ ଅନ୍ୟାନ୍ୟ ବହୁତ ଛାତ୍ରବୃତ୍ତି ପ୍ରଦାନକାରୀ ସଂସ୍ଥାରୁ ସେ ମୋ ପାଇଁ ଆହୁରି ବହୁତ ଟଙ୍କା ପାଇବାର ବନ୍ଦୋବସ୍ତ କରିଦେଇଛନ୍ତି । ପ୍ରଥମ ମାସର ଟଙ୍କା ପାଇବା ପରେ ମୁଁ ଟଙ୍କାକୁ ଧରି କଲେଜରେ ଥିବା ତାଙ୍କ ବଙ୍ଗଳାକୁ ଯାଇ ଦେଖାକଲି । କିଛି ସମୟ ଅପେକ୍ଷା କରିବା ପରେ ସେ ଡ୍ରେସ ପରିବର୍ତ୍ତନ କରି ବାରଣ୍ଡାକୁ ଆସିଲେ । ପଚାରିଲେ, ''କିହୋ ପୁଣି କାହିଁକି ଆସିଛ ?'' ମୁଁ କହିଲି, ''ସାର୍, ଆଜି ପ୍ରଥମେ ଟଙ୍କା ପାଇ କୃତଜ୍ଞତା ଜଣାଇବା ପାଇଁ ଆପଣଙ୍କ ନିକଟକୁ ଆସିଲି ।'' ସେ ଅତ୍ୟନ୍ତ ମୁଗ୍ଧ ହୋଇ ଛିଡ଼ା ହୋଇ ମୋତେ କହିଲେ, "Very good my dear boy, you will prosper in life."

ଡଃ. ପରିଜାଙ୍କ ପରି ଦୟାର୍ଦ୍ର ଚିତ୍ତ ଛାତ୍ର ବତ୍ସଳ ଓ ଛାତ୍ରଙ୍କୁ ଶିକ୍ଷା ବିଷୟରେ ପ୍ରେରଣା ଦେବା ଶିକ୍ଷା ବିଶାରଦ ବ୍ୟକ୍ତି ବିରଳ । ତାଙ୍କର ଏପରି ପ୍ରେରଣା ଓ ସାହାଯ୍ୟ ନ ପାଇଥିଲେ ମୁଁ ଉଚ୍ଚ ଶିକ୍ଷା ପାଇପାରିନଥାନ୍ତି । ବର୍ତ୍ତମାନ କଲେଜ ଶିକ୍ଷକମାନେ ଏଥିରୁ କିଛି ଶିକ୍ଷା କରିବେକି ? ମୋର କଟକ ପୋଷ୍ଟିଂ ହୋଇଥିଲାବେଳେ ମୁଁ ତାଙ୍କୁ

ଯାଇ ଦେଖା କରିଥିଲି । ସେ ବହୁତ ଆନନ୍ଦିତ ହେଲେ । ଏହାହିଁ ହେଉଛି ଗୁରୁ-ଦକ୍ଷିଣା । ନିଜେ ପ୍ରତିଷ୍ଠିତ ହେଲାପରେ ଗୁରୁଙ୍କୁ ସ୍ମରଣ କରିବା ଏକାନ୍ତ କର୍ତ୍ତବ୍ୟ ।

ଏହାପରେ ଆଇ.ଏ. ପଢ଼ିଲି । Mathematics, Geography, Logic ନେଇ ପଢ଼ିଲି । ଗଣିତ ପ୍ରତି ମୋର ବହୁତ ଆଗ୍ରହ ଥିଲା । କିନ୍ତୁ ଭୂଗୋଳ ବିଷୟଟି ପଢ଼ିବା ଦ୍ୱାରା ମୋର ଜ୍ଞାନର ପରିସର ସଂପ୍ରସାରିତ ହୋଇପାରିଥିଲା । କୋର୍ସ ଥିଲା ବିଶ୍ୱର Climatic Zones । ସୂର୍ଯ୍ୟଙ୍କ ଚତୁର୍ଦ୍ଦିଗରେ ପୃଥିବୀର ଘୂର୍ଣ୍ଣନ, ଦିନରାତି ହେବା, ଋତୁ ପରିବର୍ତ୍ତନ ପ୍ରଭୃତି Physical Geography, Political Geography, Commercial Geography ଇତ୍ୟାଦି । ପୃଥିବୀର ସବୁଦେଶ ଉପରେ ଅଧ୍ୟାୟ । ଆମର ପ୍ରଫେସର ଥିଲେ Dr. M.M. Hasan. ଖୁବ୍ ଉତ୍ତମ ଲୋକ । ମୁଁ ପ୍ରଥମେ ସମୟ ଦେଇପାରୁ ନଥିଲି । କାରଣ ୧୦୦ ନମ୍ବର ମଧ୍ୟରେ ୨୦ ନମ୍ବର ପ୍ରାକ୍ଟିକାଲ । ମୋର ଡ୍ରଇଂ ପ୍ରଥମେ ଭଲ ହେଉନଥିଲା । ମାତ୍ର ଶିକ୍ଷକଙ୍କ ପ୍ରେରଣାରେ ମାଇନର ସ୍କୁଲ୍‌ର ଶେଷ ଭାଗକୁ ଡ୍ରଇଁ ପ୍ରତି ଆଗ୍ରହ ହେଲା । ଅକ୍ଷର ମଧ ଖରାପ ବୋଲି କହିହେବ ନାହିଁ । ମାତ୍ର ଆଇ.ଏ.ରେ ଡ୍ରଇଁ ଓ ପ୍ରାକ୍ଟିକାଲରେ ଭଲ ହେଲା । ଏହିପରି ୧୦୦ ରୁ ୭୯ ରଖି ବିଶ୍ୱବିଦ୍ୟାଳୟରେ ଦ୍ୱିତୀୟ ସର୍ବୋଚ୍ଚ ନମ୍ବର ଭୂଗୋଳରେ ରଖି ଆଇ.ଏ.ରେ ପ୍ରଥମ ଶ୍ରେଣୀରେ ପାଶ୍ କଲି ।

ଡଃ. ପରିଜାଙ୍କ ବ୍ୟତୀତ ଆଉ କେତେକ ସ୍ୱନାମଧନ୍ୟ ପ୍ରଫେସରଙ୍କ ନାମ ମନେ ପଡୁଛି । ସେମାନେ ହେଉଛନ୍ତି ଡଃ. ରତ୍ନାକର ପତି । କଲିକତା ବିଶ୍ୱବିଦ୍ୟାଳୟରୁ ଫିଲସଫିରେ ଏମ୍.ଏ. ପାସ୍ କରି ବିରିବାଟୀ ନିଜ ଗ୍ରାମରେ ନିଜ ଘରର ମାଟି କାନ୍ଥ ତିଆରି କରୁଥିଲେ । ଉତ୍କଳମଣି ଗୋପବନ୍ଧୁ ତାଙ୍କ ରୂପ ଓ ଗୁଣରେ ମୁଗ୍ଧ ହୋଇ ଏବଂ ତାଙ୍କର କର୍ମ ପ୍ରତି ଆଗ୍ରହ ଦେଖି ଅତ୍ୟନ୍ତ ପ୍ରୀତ ହୋଇଥିଲେ । ଉତ୍କଳମଣି ସେଠାକୁ ଯାଇଥିଲେ ବନ୍ୟା ରିଲିଫ୍ ବାଣ୍ଟିବା ପାଇଁ । ତାଙ୍କର ଚରିତ୍ରବତ୍ତା, ନିଃସ୍ୱାର୍ଥପରତା ଓ କାର୍ଯ୍ୟନିଷ୍ଠା ଦେଖି ଉତ୍କଳମଣି ତାଙ୍କ ପ୍ରତି ଆକୃଷ୍ଟ ହୋଇ ତାଙ୍କୁ ନିଜର କନ୍ୟାଦାନ କରିଥିଲେ । ସେହି ଦମ୍ପତିଙ୍କର ଜ୍ୟେଷ୍ଠ ସନ୍ତାନ ଡଃ ତ୍ରିବିକ୍ରମ ପତି ମୋର ସହପାଠୀ ଥିଲେ । ସେ ଜଣେ ଭାରତ ବିଖ୍ୟାତ ଗାଣିତିକ । ନିକଟରେ ସ୍ୱର୍ଗାରୋହଣ କରିଛନ୍ତି । ମୁଁ ତାଙ୍କ ଶୋକ ସଭାରେ ଯୋଗଦେଇ ଅଶ୍ରୁ ତର୍ପଣ କରିଥିଲି ।

ଦ୍ୱିତୀୟରେ ଉଲ୍ଲେଖ କରିବି ଡଃ. ବଳଭଦ୍ର ପ୍ରସାଦଙ୍କର । ସେ ପାଟନାରୁ ଆସିଥିଲେ ଓ Chemistry ବିଭାଗରେ Head of Deptt. ଥିଲେ । ଅତି ସଚ୍ଚୋଟ ଓ

ଜ୍ଞାନବନ୍ତ । Social Service Guild ର ଅଧ୍ୟକ୍ଷ ଥାଇ ଅତି ଦକ୍ଷ ଓ ନିରପେକ୍ଷ ଭାବେ ଦରିଦ୍ର ଓ ମେଧାବୀ ଛାତ୍ରମାନଙ୍କୁ ସାହାଯ୍ୟ କରୁଥିଲେ । ସର୍ତ୍ତ ଥିଲା କର୍ମ ନିଯୁକ୍ତି ପାଇ ରୋଜଗାରକ୍ଷମ ହେଲେ ସେ ଟଙ୍କା ଫେରସ୍ତ କରିଦେବେ । ବହୁତ ଉଦୀୟମାନ ଦରିଦ୍ର ଛାତ୍ର ସେ ଟଙ୍କା ପାଇ ଉପକୃତ ହୋଇଛନ୍ତି । ମୁଁ ଛାତ୍ର ପ୍ରତିନିଧି ହିସାବରେ ସେ କମିଟିରେ ୧୯୪୮ରେ ଥିଲି । ଗଣିତର ମୁଖ୍ୟ ପ୍ରଫେସର ବାମାଚରଣ ଦାସ ଓ ଡଃ. ରମାନାଥ ମହାନ୍ତି, ଆଉ ମଧ ଆମ ଯାଜପୁରର ଶ୍ରୀ ସାଧୁଚରଣ ଦାଶ, ତାଳଚେରର ଶ୍ରୀ ବ୍ରଜବନ୍ଧୁ ମିଶ୍ର ପ୍ରଭୃତି । ଓଡ଼ିଆ ଓ ସଂସ୍କୃତ ମିଳିତ ବିଭାଗରେ ମୁଖ୍ୟ ଥିଲେ ଡଃ କରୁଣାକର କର । ଗଣିତରେ କାଲକାଟା ପ୍ରେସିଡେନ୍‌ସିର ରିଟାୟାର୍ଡ ପ୍ରଫେସର ଡଃ. ହିରେନ କାନ୍ତ ଗାଙ୍ଗୁଲି ୩ ବର୍ଷ Contract Service ରେ ଆସିଥିଲେ । ସେ ଅତି ଆଦର୍ଶ ସଂପନ୍ନ ବ୍ୟକ୍ତି ଥିଲେ । ସେ ମୋତେ ବହୁତ ଦିଗ୍‌ଦର୍ଶନ ଦେଇଛନ୍ତି । ଓଡ଼ିଆରେ ଆଠଗଡ଼ର ପ୍ରଫେସର ଜୟକୃଷ୍ଣ ମିଶ୍ର । ସେ ଓଡ଼ିଆ ସାହିତ୍ୟରେ ଓତଃପ୍ରୋତ ଭାବେ ଜଡ଼ିତ । ସ୍ୱଭାବକବି ଗଙ୍ଗାଧର ମେହେରଙ୍କ ତପସ୍ୱିନୀ କାବ୍ୟ ପଢ଼ାଇଲାବେଳେ ସେ ତନ୍ମୟ ହୋଇଯାଉଥିଲେ ।

''ମଙ୍ଗଳେ ଅଇଲା ଉଷା      ବିକଚ ରାଜୀବ ଦୃଶା
ଜାନକୀ ଦର୍ଶନ ତୃଷା ହୃଦୟେ ବହି
କର ପଲ୍ଲବେ ନୀହାର      ମୁକ୍ତା ଧରି ଉପହାର
ସତୀଙ୍କ ବାସ ବାହାର ପ୍ରାଙ୍ଗଣେ ରହି
କଳକଣ୍ଠ କଣ୍ଠେ କହିଲା
ଦରଶନ ଦିଅ ସତୀ      ରାତି ପାହିଲା ।'' ଇତ୍ୟାଦି

ପ୍ରକୃତିର ଏପରି ଜୀବନ୍ତ ରୂପେ ବର୍ଣ୍ଣନା ମଧ୍ୟ ଇଂରାଜୀ ସାହିତ୍ୟରେ ବିରଳ । ଜୟକୃଷ୍ଣ ମିଶ୍ର ମୋତେ ଏତେ ଭଲ ପାଉଥିଲେ ଯେ ବଲାଙ୍ଗୀରରେ ସ୍କୁଲ୍ ଇନିସ୍‌ପେକ୍ଟର ଥିଲାବେଳେ ମୁଁ ତାଙ୍କୁ ସାକ୍ଷାତ କରିବାରୁ ସେ ଆନନ୍ଦରେ ଗଦ୍‌ଗଦ୍ ହୋଇ ଯାଇଥିଲେ । କି ଉଚ୍ଚ ଗୁରୁ-ଶିଷ୍ୟ ସଂପର୍କ !

ଇଂରାଜୀରେ ପ୍ରଫେସର ଥିଲେ ମାଡ୍ରାସର P.S. Sundaram ଆଉ ମଧ ଦୁର୍ଗାଚରଣ ଦାସଙ୍କ ଜ୍ୟେଷ୍ଠପୁତ୍ର ବିଧୁଭୂଷଣ ଦାସ । ତାଙ୍କ ସଙ୍ଗେ ମୋର ପରିଚୟ ହୋଇଗଲାରୁ ସେ ମୋତେ ଇଂରାଜୀ ପଢ଼ିବା ଓ ଲେଖିବାରେ ମାର୍ଗଦର୍ଶନ କରାଇଛନ୍ତି । ତାଙ୍କ ସହଧର୍ମିଣୀ ଶ୍ରୀମତୀ ପ୍ରଭାତ ନଳିନୀ ଦାସ ମଧ ଇଂରାଜୀରେ ଅଧ୍ୟାପିକା ଥିଲେ ।

ସ୍ୱର୍ଗତଃ ବିଧୁଭୂଷଣ ଦାସ ମୋର ପୂଜ୍ୟ ଗୁରୁ । ପରେ କଲେଜ ଡି.ପି.ଆଇ. ଥିଲାବେଳେ ତାଙ୍କ ସହିତ ମୋର ଭଲ ସଂପର୍କ ଥିଲା । ତାଙ୍କ ସହଧର୍ମିଣୀଙ୍କୁ ମୁଁ ଗୁରୁପତ୍ନୀ ରୂପେ ସମ୍ମାନ କରୁଥିଲି । ଏହିପରି କଲେଜରେ ବି.ଏ.(ଅନର୍ସ) Mathematics Ist class Hons ସହିତ ପାସ୍ କରି ମୁଁ ଏମ.ଏ. ପଢ଼ିଲି । ମୋର ଘନିଷ୍ଠ ସହପାଠୀ ଥିଲେ ସ୍ୱର୍ଗତଃ ଘନଶ୍ୟାମ ସାମଲ । ଗଣିତରେ ବହୁତ ସମୟ ଦେବାରୁ ଅନ୍ୟାନ୍ୟ ବିଷୟକୁ ଧ୍ୟାନ ଦେଇ ପାରିନଥିଲି । ଘନଶ୍ୟାମ ସାମଲଙ୍କ ପରି ମେଧାବୀ ସହପାଠୀ ନମିଳିଥିଲେ ମୁଁ ଏପରି ଆଶାତୀତ ଫଳ ପାଇ ପାରିନଥାନ୍ତି ।

ଗଣିତରେ ଉତ୍କଳ ବିଶ୍ୱବିଦ୍ୟାଳୟ ଅଧୀନରେ ପରୀକ୍ଷା ଦେଇ ସେ ଓ ଶ୍ରୀମତୀ ପ୍ରତିଭା ଦେବୀ (ଯାହାଙ୍କୁ ପରେ ସେ ବିବାହ କରିଥିଲେ) ପ୍ରଥମ ଶ୍ରେଣୀ ପାଇଥିଲେ । ମୋର ପାରିବାରିକ ଅସୁବିଧା ଓ ଅସୁସ୍ଥତା କାରଣରୁ ମୁଁ ଏମ.ଏ. ପରୀକ୍ଷାରେ ଭଲ କରିନପାରି ସେକେଣ୍ଡ କ୍ଲାସ ପାଇଥିଲି । ସେଥିଯୋଗୁଁ ମୋର ପ୍ରଫେସର ଡଃ. ରମାନାଥ ମହାନ୍ତି ବହୁତ ମନ ଦୁଃଖ କରିଥିଲେ । ମାତ୍ର ''ବିଧିର ବିଧାନ , କେ କରିବ ଆନ''।

ଡଃ ସାମଲ ଏବଂ ପ୍ରତିଭା ମାଡାମ୍ ଶିକ୍ଷକ ଭାବେ ନିଯୁକ୍ତ ହେଲେ । ମୁଁ ମନଦୁଃଖରେ ଗ୍ରାମରେ ଏକ ମାସ ବସି ରହିଥିଲି । ଏହି ସମୟରେ ଭଗବାନଙ୍କ ଦୂତ ସ୍ୱରୂପ ଜଣେ ବୃଦ୍ଧ ପ୍ରଫେସର ମୋ ଜୀବନରେ ଆବିର୍ଭାବ ହୋଇଥିଲେ । ସେ ହେଉଛନ୍ତି Dr. Hiren Kant Ganguly । ସେ କଲିକତା ପ୍ରେସିଡେନ୍ସି କଲେଜରେ ଜଣେ ଖ୍ୟାତନାମା Mathematics ପ୍ରଫେସର । ଅବସର ପରେ Contract Service ରେ ତିନିବର୍ଷ ପାଇଁ ରେଭେନ୍ସାକୁ ଆସିଥିଲେ । ତାଙ୍କୁ ଗୋଟିଏ ଚିଠି ଲେଖିଲି । ସେ ଏକ ସପ୍ତାହ ମଧ୍ୟରେ ଉତ୍ତର ଦେଲେ, My dear Kailash, You are one of my most lovable and brilliant students. There is no greater defeat in life than depression. Gather your courage and sit in the Competitive Examination. Immediately on receipt of this letter go to Cuttack and try. With my best blessings. ମୁଁ ସେହି ଅନୁସାରେ କାର୍ଯ୍ୟ କଲି ଏବଂ Combined Competitive Examinationରେ ବସିଲି । ଖୁବ୍ ଉଚ୍ଚ position ରଖି Orissa Finance Service ରେ ମନୋନୀତ ହେଲି ।

# ବିଦ୍ୟାଶିକ୍ଷାରୁ ମୋର ଉପାର୍ଜିତ ଜ୍ଞାନ

ଇଂଲଣ୍ଡର ଜଣେ ବିଶିଷ୍ଟ ଶିକ୍ଷାବିତ୍ କହିଛନ୍ତି-

୧, "Education is what you remember after forgetting everything."

ଶିକ୍ଷାର ସମାପ୍ତି ପରେ ଯେଉଁ ସାରକଥା ତୁମ ମନରେ ଲିପିବଦ୍ଧ ହୋଇଗଲା ତାହା ହିଁ ଶିକ୍ଷା ।

୨. ଦ୍ୱିତୀୟ ଶିକ୍ଷା ହେଉଛି-

ବିଶ୍ୱକବି ରବୀନ୍ଦ୍ରନାଥଙ୍କ କବିତା

"Where the mind is without fear
Where the head is held high
Where the world is not divided
into small fragments by narrow domestic walls,
Where the clear stream
of reason has not lost its way into
dreary desert sand of dead habits
Into that heaven of freedom
Oh God, let my country awake.

୩. ଯେଉଁ କାର୍ଯ୍ୟ କରିବ ମନପ୍ରାଣ ଦେଇ କରିବ, କେବେ ମନରେ ନୈରାଶ୍ୟ ଭାବକୁ ସ୍ଥାନ ଦେବ ନାହିଁ । ବର୍ତ୍ତମାନ ସମୟ ହେଉଛି ସର୍ବୋତ୍କୃଷ୍ଟ । ଅତୀତ ଚାଲିଗଲାଣି । ଭବିଷ୍ୟତ ଅନିର୍ଦ୍ଦିଷ୍ଟ । ଯେଉଁ ବର୍ତ୍ତମାନ ଆମର ହାତରେ ଅଛି ତାହାର ସଦ୍‌ବ୍ୟବହାର କରି କାୟମନୋବାକ୍ୟରେ ଭଗବାନଙ୍କୁ ସ୍ମରଣ କରି କାର୍ଯ୍ୟରେ ଲାଗିଯାଅ । ନିଶ୍ଚୟ ସଫଳ ହେବ ।

"Trust no future however pleasant
Let the dead past bury its dead.
Act act in the living present
Heart within and God over head.

୪. ପିଲାଦିନେ ଗଳ୍ପ ପଢ଼ିଥିଲି ମତ୍ସ୍ୟ ତିନି ପ୍ରକାରର । ଅନାଗତ ବିଧାତା, ପ୍ରତ୍ୟୁତ୍ପନ୍ନମତି ଓ ଦୀର୍ଘସୂତ୍ରୀ ।

ପ୍ରଥମଟି ହେଲା ବିପଦ ଆସିବା ପୂର୍ବରୁ ସତର୍କ ରହିବା । ଦ୍ୱିତୀୟଟି ହେଲା ସଙ୍ଗେ ସଙ୍ଗେ ଉପସ୍ଥିତ ବୁଦ୍ଧି ଖଟାଇ କାର୍ଯ୍ୟରେ ଲଗାଇବା, ତୃତୀୟଟି

ଆଳସ୍ୟପରାୟଣତା । ଶେଷ କିସମର ପ୍ରାଣୀ ସର୍ବଦା ବିପଦରେ ପଡ଼ନ୍ତି ।  ତା ଠାରୁ ଦୂରରେ ରହିବା ଉଚିତ । ମୁଁ କିନ୍ତୁ ସର୍ବଦା ପ୍ରଥମ ପ୍ରକାର ମନ୍ତ୍ରକୁ ଗ୍ରହଣ କରି ଆସିଛି । ମୁଁ ବହୁତ ସମୟରେ ପ୍ରତ୍ୟୁତ୍ପନ୍ନମତିତା ଦେଖାଇ ପାରେ ନାହିଁ ।

୫. ସବୁଠାରୁ ବଡ଼କଥା ହେଲା ପିତାମାତା ଓ ଗୁରୁଜନମାନଙ୍କୁ ଭକ୍ତି ଏବଂ ସମ୍ମାନ ।

୬. ଗୁରୁଶିଷ୍ୟ ସଂପର୍କ ସେତେବେଳେ ଆଦର୍ଶ ସ୍ଥାନୀୟ ଥିଲା । ମୋର ହାଇସ୍କୁଲର ଇଂରାଜୀ ଶିକ୍ଷକ କେ.ବି. ପଟ୍ଟନାୟକଙ୍କ ସାଙ୍ଗରେ ମୋର ଓ ମୋର ସହପାଠୀଙ୍କର ଭକ୍ତି ଅନୁକରଣୀୟ ଥିଲା । ପଟ୍ଟନାୟକ ସାର ବିନା ଟିଉସନ୍ ଫିସ୍‌ରେ ମୋତେ ପରୀକ୍ଷା ପୂର୍ବରୁ ପଢ଼ାଉଥିଲେ । ଘରୁ ଜଳଖିଆ ଖାଇବାକୁ ଦେଉଥିଲେ । ମାଟ୍ରିକୁଲେଶନ ପରୀକ୍ଷା ସମୟରେ ଆମେ ତିନିଜଣ ଛାତ୍ର କଟକରେ ଗୋଟେ ଭଡ଼ାଘରେ ୧୦/୧୫ ଦିନ ରହିଥିଲୁ । ସାର ଗାଧୋଇବାବେଳେ ନିଜ ବାସି ଲୁଗାପଟା କୂଅ ପାଖରେ ରଖି ଟୀକରାଣୀକୁ ସାବୁନ୍ ମାରି ଧୋଇ ଦେବାକୁ କହିଲେ । ଟୀକରାଣୀଟି ଡେରି କରିବାରୁ ମୁଁ ଆଗ ସେଗୁଡ଼ିକ ଧୋଇ ଶୁଖାଇଦେଲି । ମୋର ସାଙ୍ଗ ସୁଜିତ ତାପରେ ଗାଧୋଇବାକୁ ଯାଇ ଲୁଗା ନ ପାଇ ଦେଖିଲା ମୁଁ ଶୁଖାଇ ଦେଇଛି । ସେ କାନ୍ଦ କାନ୍ଦ ହୋଇ ସାରଙ୍କ ପାଖେ ଗୁହାରି କଲା । ସାର ପଚାରିବାରୁ ମୁଁ କହିଲି, ''ସାର ସେ ମୋ ଠାରୁ ୨ ବର୍ଷ ସାନ । ତାପରେ ଲୁଗା ଧୁଆରେ ଅଭ୍ୟସ୍ତ ନୁହେଁ । ସେଥିଯୋଗୁ ତାକୁ କଷ୍ଟ ହେବ ନାହିଁ ଏବଂ ଆପଣଙ୍କ ଆଦେଶ ଶୀଘ୍ର ପାଳିତ ହେବ, ସେଥିପାଇଁ ମୁଁ ଆଗ କରିନେଲି ।

ସାର ଉଭୟଙ୍କୁ କୋଳକୁ ଟାଣିନେଇ କହିଲେ, ''ତୁମେ ଦୁଇଜଣଯାକ ମୋର କେବଳ ଛାତ୍ର ନୁହଁ , ମୋର ପୁତ୍ର ଠାରୁ ଅଧିକ । ଭଗବାନ ତୁମର ମଙ୍ଗଳ କରନ୍ତୁ ।'' ପଟ୍ଟନାୟକ ସାର୍‌ଙ୍କ ସଙ୍ଗରେ ତାଙ୍କ ଜୀବନର ଶେଷ ନିଃଶ୍ୱାସ ପର୍ଯ୍ୟନ୍ତ ମୋର ଆତ୍ମୀୟତା ଥିଲା । ସେ ଏକଥା ବହୁତ ଲୋକଙ୍କ ପାଖରେ ପ୍ରକାଶ କରିଛନ୍ତି ।''

# ଭାରତର ସ୍ୱାଧୀନତା ପ୍ରାପ୍ତି ଓ ଗାନ୍ଧିଜୀଙ୍କ ସ୍ୱର୍ଗବାସ

ଲର୍ଡ୍ ମାଉଣ୍ଟବ୍ୟାଟେନ୍‌ଙ୍କ କୂଟନୈତିକ କୌଶଳ ଯୋଗୁ ଭାରତର ସ୍ୱାଧୀନତା ପ୍ରାପ୍ତି ହେବା ସିଦ୍ଧାନ୍ତ ହୋଇଗଲା । ପଣ୍ଡିତ ଜହରଲାଲ ନେହୁରୁ, ବଲ୍ଲଭଭାଇ ପଟେଲ ଓ ଅନ୍ୟ କେତେକ ନେତା ଆଲୋଚନା ପରେ ଏହି ସିଦ୍ଧାନ୍ତରେ ଉପନୀତ ହୋଇଥିଲେ । ମାତ୍ର ଏହି ଆନନ୍ଦ ପୂର୍ଣ୍ଣମାତ୍ରାରେ ଉପଭୋଗ କରିହେଲା ନାହିଁ । ଭାରତ ଓ ପାକିସ୍ଥାନ ଦୁଇଟି ଦେଶ ହେଲା । ଏହି ଫଳାଫଳ ସ୍ୱାଧୀନତା ଆନ୍ଦୋଳନର ଏକ ଚିରନ୍ତନ କଳଙ୍କ ଦାଗ ହୋଇଗଲା । ଏବେ ଶୁଣନ୍ତୁ ଆମେ ଛାତ୍ରମାନେ କିପରି ଏହାକୁ ଆନନ୍ଦ ମନରେ ଗ୍ରହଣ କଲୁ ।

୧୯୪୭ ମସିହା ଅଗଷ୍ଟ ୧୪ ତାରିଖ ସନ୍ଧ୍ୟା । ମୁଁ ରେଭେନ୍‌ସା କଲେଜ୍‌ର 3rd Year B.A. ଛାତ୍ର East Hostelରେ ରହୁଥିଲି । ସମସ୍ତଙ୍କୁ କହି ଦିଆଗଲା ରାତି ଭୋଜନ ସନ୍ଧ୍ୟା ୯ ଘଣ୍ଟା ଭିତରେ ଶେଷ । ଫିଷ୍ଟ ମିଲ୍ । ବହୁତ କିସମର ତରକାରୀ । ମୁଁ U.O.T.C. (University Officers Training Corps) ରେ ଯୋଗ ଦେଇଥିଲି । U.O.T.C.ର 500 Cadets ଥିଲେ । Major Samsher Singh ପାରେଡ୍‌ର chargeରେ ଥିଲେ ଓ ଏଥିପାଇଁ ୧୫ ଦିନ ଆଗରୁ parade rehersal କରାଯାଉଥିଲା । ରେଭେନ୍‌ସା କଲେଜ୍‌ରେ ଟେନିସ୍ ପଡ଼ିଆରେ ପ୍ୟାରେଡ୍ ହେବାର ଥିଲା । ରାତି ୧୨ଟା ବେଳେ ଇଉନିୟନ୍ ଜ୍ୟାକ୍‌କୁ ଅବତରଣ କରି ଜାତୀୟ ତ୍ରିରଂଗା ପତାକା ଉତ୍ତୋଳନ ହେବା କଥା । ରେଭେନ୍‌ସା କଲେଜର ୨୫୦୦ ଛାତ୍ର, ପ୍ରଫେସର ସମସ୍ତେ ଗ୍ରୁଣ୍ଡ ପ୍ରିନ୍‌ସ୍‌ପାଲଙ୍କ ସହିତ । ଠିକ୍ ୧୫ ମିନିଟ୍ ପୂର୍ବରୁ ବିଗ୍ୟୁଲ୍ ବାଜିଉଠିଲା । ୧୦ ମିନିଟ୍ ଉଭୟ ଦେଶର ଜାତୀୟ ସଂଗୀତ ବୋଲା ହେଉଥାଏ । ଠିକ୍ ରାତି ୧୨ ଘଣ୍ଟା ସମୟରେ ବିଗ୍ୟୁଲ୍ ବାଜିଲା ଜୋର୍‌ରେ । ପ୍ୟାରେଡ୍ ଆଟେନ୍‌ସନ । ଆମେ ସମସ୍ତେ ସେହି ପୋଜିସନ୍‌ରେ ରହିଲୁ । ଠିକ୍ ୧୨ଟା ବେଳେ ୟୁନିୟନ୍ ଜ୍ୟାକ୍ ଅବତରଣ କଲା ଏବଂ ଆମ ଜାତୀୟ ପତାକା ଉପରକୁ ଉଠିଲା । ପ୍ୟାରେଡ୍ ସାଲୁଟ୍ । ଏହିପରି ୫ ମିନିଟ୍ ରହିଲେ । ଘନ ଘନ ୫ ମିନିଟ୍ ଯାଏ କରତାଳି ଧ୍ୱନି । ତାପରେ ଜାତୀୟ ସଂଗୀତ ବୋଲାହେଲା । ତାପରେ ଇନ୍‌କିଲାବ ଜିନ୍ଦାବାଦ, ବନ୍ଦେ ମାତରଂ, ଭାରତ ମାତାକୀ ଜୟ ଇତ୍ୟାଦି ସ୍ଲୋଗାନ୍ । ଆମେମାନେ ପ୍ୟାରେଡ଼ରେ ସାଲ୍ୟୁଟ୍ ପୋଜିସନ୍‌ରେ ଠିଆ ହୋଇଛୁ । ଆଖିରେ ଆନନ୍ଦର ଅଶ୍ରୁ । ଏହି ଅଶ୍ରୁ ଦୁଇପ୍ରକାର ।

ଅତି ଆନନ୍ଦରେ, ଅତି ଦୁଃଖରେ ସ୍ୱତଃ ସ୍ରବଣ । ଦେଶର ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ ଚିନ୍ତା ଓ ସ୍ୱପ୍ନ ଛାଏଁ ଛାଏଁ ଜାଗ୍ରତ । ଅଖଣ୍ଡ ଭାରତ ଦୁଇଭାଗ ହୋଇ ଭାରତ ଓ ପାକିସ୍ତାନ ହୋଇଗଲା । ଭାରତରେ ସ୍ୱାଧୀନତା ଦିବସ ପାଳିତ ହେଲା ଅଗଷ୍ଟ ୧୫ ତାରିଖରେ ଓ ପାକିସ୍ତାନରେ ପାଳିତ ହେଲା ଅଗଷ୍ଟ ୧୪ ତାରିଖରେ । ସବୁଦିନ ପାଇଁ ଗୋଟିଏ ଦୁଃଖ ରହିଗଲା । ପୁଣି କେବେ ଏକାଠି ହୋଇଯିବା ସ୍ୱପ୍ନ ଏବେ ମଧ୍ୟ ଦେଖୁଛି । ବହୁ ବଡ଼ ବଡ଼ ନେତା ଭାରତରୁ ଯାଇ ପାକିସ୍ତାନରେ ଉଚ୍ଚ ପ୍ରତିଷ୍ଠିତ; ଯଥା- ମହମ୍ମଦ ଅଲ୍ଲି ଜିନ୍ନା ଓ ଜେନେରାଲ୍ ମୁସାଫିର୍ । ଏଣେ ଆମର ପ୍ରଧାନମନ୍ତ୍ରୀ ମନମୋହନ ସିଂହ ଲାହୋରର ଏବଂ ଏଲ୍.କେ.ଆଡ଼ଭାନୀ ସିନ୍ଧିର । କିସ ପୁଣି ଦେଖା ନ ଯାଏ ଜୀଇଥିଲେ ମହୀରେ ।

ଏହି ସ୍ୱାଧୀନତା ପାଇଁ କେତେ ବଳିଦାନ । କେତେ ବରପୁତ୍ର ଦେଶ ମାତୃକା ସକାଶେ ପ୍ରାଣ ବଳି ଦେଇଛନ୍ତି । ମାତ୍ର ଏତେ ଦୁଃଖ କଷ୍ଟ ଅର୍ଜି ସ୍ୱାଧୀନତା ସ୍ୱାଦବିହୀନ ହୋଇଗଲା । ଦୁଇ ଦେଶରୁ ସୀମାବାଟ ଦେଇ ଏପାଖରୁ ସେପାଖକୁ ଓ ସେପାଖରୁ ଏ ପାଖକୁ କି ଦୁଃଖ କଷ୍ଟରେ ପିଲା କବିଲା ଓ ଗଣ୍ଠିଲି ଧରି ଯିବା ଆସିବା କରୁଛନ୍ତି । ବହୁତ ଦୁଃଖଦାୟକ ଓ ବର୍ଣ୍ଣନାତୀତ ଦୃଶ୍ୟ ।

ସେହିପରି ପୂର୍ବବଙ୍ଗ ଶରଣାର୍ଥୀଙ୍କ ଅବସ୍ଥା ଦେଖନ୍ତୁ । ଢାକା ସହରର ନାମ ହୋଇଛି ଦୁର୍ଗାପୂଜାରେ ଢ଼ାକ୍ ବା ଢୋଲ ବାଜା ଯୋଗୁ ଢାକା । ସେତେବେଳେ ହିନ୍ଦୁ ଜମିଦାରମାନେ ବହୁ ଆଡ଼ମ୍ବରରେ ଦୁର୍ଗାପୂଜା ପାଳନ କରୁଥିଲେ । ଗଭର୍ଣ୍ଣର ଓ ଗଭର୍ଣ୍ଣର ଜେନେରାଲ୍ ପ୍ରଭୃତି ଉଚ୍ଚ ପ୍ରତିଷ୍ଠିତ ବ୍ରିଟିଶ୍ ସାହେବମାନେ ସସ୍ତ୍ରୀକ ସେଥିରେ ଯୋଗ ଦେଉଥିଲେ । ମଦ୍ୟମାଂସ ପରିବେଷଣ ହେବାରେ ବାରଣ ନଥିଲା ।

୧୯୧୨ରେ ଭାରତର ରାଜଧାନୀ କଲିକତାରୁ ଦିଲ୍ଲୀ ଉଠିଗଲା । ଏଣେ ଖୁଦିରାମର ବ୍ରିଟିଶ୍ ଗଭର୍ଣ୍ଣରଙ୍କୁ ହତ୍ୟା ଉଦ୍ୟମ । ସୁଭାସ ଚନ୍ଦ୍ର ବୋଷଙ୍କ ଆଜାଦ ହିନ୍ଦ୍ ଫୌଜ ଗଠନ । ତାଙ୍କର ଦେଶ ଛାଡ଼ି ଶତ୍ରୁପକ୍ଷଙ୍କ ସଙ୍ଗେ ସାମିଲ୍ । ସେ ଯାହାହେଉ ପୂର୍ବବଙ୍ଗର ଲକ୍ଷ ଲକ୍ଷ ଶରଣାର୍ଥୀ ଅତି ଦୁଃଖରେ ଶରଣାର୍ଥୀ ଭାବେ ସୀମାପାର ହୋଇ ଚାଲି ଆସିଲେ । ଢାକା, ଚିଟାଗଙ୍ଗ ସବୁଆଡେ ରକ୍ତର ସୁଅ ଛୁଟିଲା । ସେତେବେଳର ଅବସ୍ଥା ସ୍ମରଣ କଲେ ଆଖିରେ ଲୁହ ଆସେ । ଆମ୍ଭ ଗ୍ରାମର ମଧୁସୂଦନ ମିଶ୍ର ବୋଲି ଜଣେ ବ୍ରାହ୍ମଣ ପୂଜକ ଯେଶୋରର ଜଣେ ଜମିଦାର ଘରେ ରହୁଥିଲେ । ଜମିଦାର ଓ ତାଙ୍କ ପରିବାରକୁ ହତ୍ୟା କରାଯିବା ପରେ ମଧୁନନା ଅତି ଦୟନୀୟ ଭାବେ ପିନ୍ଧିବା ଲୁଗା ଓ ଗୋଟିଏ ଗାମୁଛା ଧରି ଉପାସ ଭୋକରେ ୪ ଦିନ ପରେ ଆସି ଗ୍ରାମରେ

ପହଞ୍ଚିଲେ । ତାଙ୍କ ପିତାମାତା ତାଙ୍କୁ ଦେଖି କୋଟିନିଧି ପରି ଆଦର କଲେ । ପରେ ଆମ ଭୁବନେଶ୍ୱର ସମବାୟ ଖାଉଟି ଦୋକାନରେ କଣ୍ଟ୍ରୋଲ୍ ଜିନିଷ ବିକ୍ରି କରିବା ଦାୟିତ୍ୱରେ ମାତ୍ର ଟ୬୦୦/- ଦରମାରେ ରଖାଇଦେଇଥିଲି । ସେ ସେଠାରେ ୧୦ ବର୍ଷ କାଳ ଅତି ସଚ୍ଚୋଟ ଓ ଦକ୍ଷତା ସହକାରେ କାର୍ଯ୍ୟ କରି ଗ୍ରାମକୁ ଚାଲି ଯାଇଥିଲେ । ପୂର୍ବବଙ୍ଗ ଶରଣାର୍ଥୀମାନଙ୍କୁ ଓଡ଼ିଶାର କେନ୍ଦ୍ରାପଡ଼ା, ଜମ୍ଭୁ, ଭୂଷଣ୍ଡପୁର, ମାଲକାନଗିରି ଓ ଭୁବନେଶ୍ୱରରେ ଜାଗା ଦିଆଯାଇଥିଲା । ମାତ୍ର ଦୁଃଖର କଥା ସେମାନଙ୍କ ମଧ୍ୟରୁ ପ୍ରାୟ ଅନେକ ଶରଣାର୍ଥୀ ଥଇଥାନ ହୋଇପାରି ନଥିଲେ । ମାତ୍ର ପଶ୍ଚିମ ପଟରୁ ପଞ୍ଜାବ ଓ ସିନ୍ଧ୍ ପ୍ରଭୃତି ଜାଗାରୁ ଆସିଥିବା ଶରଣାର୍ଥୀମାନେ ନିଜ ଉଦ୍ୟମ ବଳରେ ପ୍ରତିଷ୍ଠିତ ହୋଇ ପାରିଛନ୍ତି ।

ଭାରତରେ ଦଙ୍ଗା ସୃଷ୍ଟି ହୋଇଗଲାରୁ ନେହୁରୁ ଗାନ୍ଧିଜୀଙ୍କୁ ଜରୁରୀ ଖବର ପଠାଇଲେ ଦିଲ୍ଲୀ ଫେରିଆସିବାକୁ । ସେ ଉଭୟ ସଂପ୍ରଦାୟର ଲୋକଙ୍କୁ ବୁଝାଇ ଦଙ୍ଗା ଶାନ୍ତି କରିବାକୁ ଚେଷ୍ଟା କରୁଥାନ୍ତି । ୧୯୪୬ ଏବଂ ୧୯୪୭ ଏହି ଦୁଇ ବର୍ଷ ଦେଶ ବଡ଼ ଅଶାନ୍ତ ପରିସ୍ଥିତିରେ ଗତି କରୁଥିଲା ।

ଏଣେ ଗାନ୍ଧିଜୀ ବଙ୍ଗଳାରୁ ବିରଳା ଭବନକୁ ଆସିଗଲେ । ମନରେ ଗଭୀର କ୍ଷୋଭ । ଯେତେବେଳେ ଶୁଣିଲେ ଯେଉଁ ମୌଳିକ ମହାମନ୍ତ୍ର ହିନ୍ଦୁ ମୁସଲମାନ ଏକତାକୁ ଭିତ୍ତି କରି ସ୍ୱାଧୀନତା ସଂଗ୍ରାମ ହୋଇଛି, ତାହା ଭାଙ୍ଗି ଚୁରମାର ହୋଇଯାଇଛି ଓ ସେଥିଯୋଗୁ ଦେଶ ବିଭାଜନ ହେବା ସ୍ଥିର ହେଲା । ସେଥିରେ ତାଙ୍କର ଜୀବନ ବ୍ୟାପୀ ପରିଶ୍ରମ ବୃଥା ହେବାରୁ ସେ ଦୁଃଖରେ ଭାଙ୍ଗି ପଡ଼ିଲେ । ସେହି ଦେଶ ବିଭାଜନ ଭାରତର ବଡ଼ ବଡ଼ ସହରରେ, ଯଥା: କଲିକତା, ଢାକା ଓ ଉତ୍ତର ପ୍ରଦେଶର ବହୁ ସ୍ଥାନରେ ହିନ୍ଦୁ ମୁସଲମାନ ଦଙ୍ଗା ସୃଷ୍ଟି କଲା । ବଙ୍ଗଳାର ପ୍ରଧାନ ମନ୍ତ୍ରୀ ଥିଲେ ସୁରାବର୍ଦ୍ଦି ଖାଁ । ସେ ମଧ ଦଙ୍ଗାକୁ ଉସୁକାଉ ଥିଲେ କିମ୍ବା ଦଙ୍ଗା ଶାନ୍ତ କରିବାରେ ନୀରବ ଦର୍ଶକ ସାଜିଥିଲେ ।

ଗାନ୍ଧିଜୀ ଦିଲ୍ଲୀ ଡକାଯାଇ ଆସିଗଲା ପରେ ବିରଳା ଭବନରେ ରହି ପ୍ରତିଦିନ ସନ୍ଧ୍ୟାରେ ପ୍ରାର୍ଥନା ସଭା କରୁଥିଲେ । ପ୍ରାର୍ଥନା ହେଲା-

''ରଘୁପତି ରାଘବ ରାଜାରାମ,
ପତିତପାବନ ସୀତାରାମ ।
ଈଶ୍ୱର ଆଲ୍ଲା ତେରେ ନାମ
ସବ୍‌କୋ ସନ୍ମତି ଦେ ଭଗବାନ ।'' ଇତ୍ୟାଦି ।

ଏହି ପ୍ରାର୍ଥନା ସଭାରେ ଆମ ରେଭେନ୍‌ସା କଲେଜର ଜଣେ ସାହସୀ ଛାତ୍ର ଶ୍ରୀ ରାମଚନ୍ଦ୍ର ମହାନ୍ତି କିଛି ଟଙ୍କା ପଇସା ନଥାଇ କିପରି ଟ୍ରେନ୍‌ରେ ଦିଲ୍ଲୀ ଚାଲିଗଲେ, ସେହି ମଜାକଥା ଶୁଣନ୍ତୁ । ଠିକ୍ ବଗୁଲିଆର ପୃଥିବୀ ଭ୍ରମଣ ପରି । ରାମଚନ୍ଦ୍ର ମହାନ୍ତି ଇଷ୍ଟ ହଷ୍ଟେଲ୍‌ରେ ୧୯୪୭ ରେ ରହୁଥିଲେ । ଦିନେ ତାଙ୍କ ମନକୁ ଖିଆଲ ଉଠିଲା ଦିଲ୍ଲୀ ଯାଇ ଗାନ୍ଧୀଙ୍କ ପ୍ରାର୍ଥନା ସଭାରେ ଯୋଗ ଦେବେ । ସେ ଅତି ଦରିଦ୍ର ପିଲା । ଟଙ୍କା କେଉଁଠୁ ଆଣିବେ ? ପାଖରେ ମୋଟରେ ଟ୨୦/୩୦ ଥିଲା । ସମୁଦ୍ରକୁ ଶଙ୍ଖେ ପାଣି । ସେ ଗୋଟିଏ ପ୍ଲାଟ୍‌ଫର୍ମ ଟିକେଟ୍ କିଣି ପୁରୀ ହାଉଡ଼ା ଏକ୍‌ସ୍‌ପ୍ରେସ୍‌ରେ ବସିଗଲେ । ଟି.ଟି.ଆଇ. ଟିକଟ୍ ମାଗିଲାବେଳକୁ ସେ ଇଂଲିଶ୍‌ରେ କହିଲେ, ସେ ଜଣେ ଛାତ୍ର । ଗାନ୍ଧିଜୀଙ୍କୁ ଦର୍ଶନ କରିବାକୁ ଦିଲ୍ଲୀ ଯାଉଛନ୍ତି । ପାଖରେ ଟଙ୍କା ନଥିବାରୁ ଟିକେଟ୍ କିଣି ପାରିନାହାନ୍ତି । ପାଖରେ ଥିବା ରାଧାକୃଷ୍ଣ ଓ ରାମ ଲକ୍ଷ୍ମଣ ସୀତାଙ୍କ ଫଟୋ ଦେଖାଇଲେ । ଟି .ଟି. ଆଇ. ସ୍ମିତହାସ୍ୟ କରି କହିଲେ, ଠିକ୍ ଅଛି, ତୁମ ଇଚ୍ଛା । ରାମବାବୁ ତାଙ୍କୁ ଅନୁରୋଧ କଲେ ଆପଣ କଲିକତା ଗେଟ୍‌ରେ ଟିକିଏ କହିଦେଲେ ମୁଁ ଏ ଗେଟ୍‌ରୁ ସେ ଗେଟ୍‌କୁ ଚାଲିଯିବି । ସେଇଆ ହେଲା । କଲିକତାରେ ଆଉ ଗୋଟିଏ ପ୍ଲାଟ୍‌ଫର୍ମ ଟିକେଟ୍ କିଣି ଦିଲ୍ଲୀ ଗାଡ଼ିରେ ବସିଲେ ଓ ନାନା ପ୍ରକାର କାକୁତି ମିନତି ଅନୁରୋଧ ଦ୍ୱାରା ସେ ଦିଲ୍ଲୀରେ ପହଞ୍ଚି ସିଧା ସିଧା ବିରଳା ଭବନରେ ସନ୍ଧ୍ୟାବେଳେ ହେଉଥିବା ଗାନ୍ଧିଜୀଙ୍କ ପ୍ରାର୍ଥନା ସଭାରେ ପଛରେ ବସିଗଲେ ।

ଘଣ୍ଟାଏ ପରେ ପ୍ରାର୍ଥନା ସରିଗଲା । ରାମବାବୁ ଅନ୍ୟ ଦେଖଣାହାରୀଙ୍କ ସଙ୍ଗେ ସିଧା ମଞ୍ଚ ଉପରକୁ ଚାଲିଗଲେ । ଗାନ୍ଧିଜୀଙ୍କ ପାଖରେ ସାଷ୍ଟାଙ୍ଗ ପ୍ରଣିପାତ । ଗାନ୍ଧିଜୀ ପଚାରିଲେ, ''ତୁମ୍ ବେଟା କୌନ୍ ହୋ; କାହାଁ ସେ ଆୟେ ହୋ । କିସ୍‌କେ ଲିୟେ ?'' ରାମବାବୁ କହିଲେ, ''ମୁଁ ଜଣେ ରେଭେନ୍‌ସା କଲେଜ, କଟକ, ଓଡ଼ିଶାର ଛାତ୍ର । ଆପଣଙ୍କ ଦର୍ଶନ କରିବା ଏକମାତ୍ର ଲକ୍ଷ୍ୟ । ମୁଁ ଆପଣ ପାଖରେ ରହିବି ।'' ଗାନ୍ଧିଜୀ କହିଲେ, ''ଅବି ନେହିଁ । ପଢ଼ାଇ ଖତମ୍ ହୋନେ କେ ବାଦ୍ । କହାଁ ରହେତେ ହୋ ''। ରାମବାବୁ କହିଲେ, ''ଷ୍ଟେସନରୁ ସିଧା ଆସିଲି । କେଉଁଠି ରହିନାହିଁ ।'' ''ଆଚ୍ଛା ଠିକ୍ ହୈ, ଆପକା ପ୍ରାନ୍ତ ସେ ମହତାବ ଜୀ ଆୟେ ହେଁ; ମେଁ ଉନ୍‌କେ ସାଥ ଆପ୍‌କା ମୁଲାକାତ୍ କର ଦୁଙ୍ଗା ।'' ଏହା କହି ଡଃ ହରେକୃଷ୍ଣ ମହତାବ, ଯେ କେନ୍ଦ୍ରର ମନ୍ତ୍ରୀ ହୋଇଥିଲେ, ତାଙ୍କ ସଙ୍ଗରେ ରାମବାବୁଙ୍କ ପରିଚୟ କରାଇଦେଲେ । ମହତାବ ତାଙ୍କୁ ଦେଖି କହିଲେ, ''କିହୋ, ତୁମେ କୁଆଡ଼େ ?'' ''ମୁଁ ଗାନ୍ଧିଜୀଙ୍କ ଦର୍ଶନ ପାଇଁ

ଆସିଛି ''। ''ତୁମ ଜିନିଷ ପତ୍ର'' ? ମୋର ଛୋଟ ବ୍ୟାଗ୍‌ଟିଏ । ସେଥିରେ ଗୋଟିଏ ପ୍ୟାଣ୍ଟ, ଗୋଟିଏ ସାର୍ଟ ଓ ଖଣ୍ଡେ ଗାମୁଛା । ତାପରେ ମହତାବ ବାବୁ ତାଙ୍କୁ ସଙ୍ଗରେ ଗାଡ଼ିରେ ବସାଇ ନିଜ କ୍ୱାଟରକୁ ନେଇଗଲେ । ସେଠାରେ ରହିବାର ଓ ଖାଇବାର ବନ୍ଦୋବସ୍ତ କରି ୪ ଦିନ ରଖାଇ ଦିଲ୍ଲୀ ଦେଖିବାର ବନ୍ଦୋବସ୍ତ କରିଦେଲେ । ଫେରିବା ଟିକେଟ୍ କରାଇଦେଇ କଟକ ପଠାଇଦେଲେ । ଏଣେ ରାମବାବୁ କୁଆଡ଼େ ଗଲେ ବୋଲି ଚହଳ । ଥାନାକୁ ଖବର ଦିଆଗଲା । ଥାନାବାଲା ଖବର ଦେଲେ ଗୋଟିଏ ୧୫/୧୬ ବର୍ଷର ପିଲା, ୨/୩ ଦିନ ପୂର୍ବେ କଲିକତା ଗାଡ଼ିରେ ଏକା ଏକା ଯାଇଛି, ବୋଧହୁଏ କଲିକତା ବା ଦିଲ୍ଲୀ । ଏଣେ ମହତାବ ବାବୁ ରେଭେନ୍‌ସା କଲେଜ୍ ପ୍ରିନ୍‌ସ୍‌ପାଲ୍‌ଙ୍କ ପାଖକୁ ଖବର ଦେଲେ ଯେ ପିଲାଟିଏ ଓଡ଼ିଶାରୁ ଆସି କ୍ୱାଟ୍‌ର୍‌ରେ ପହଞ୍ଚିଛି । ସେ ୪ ଦିନ ପରେ ଫେରିଯିବ । ତା ପାଇଁ ବ୍ୟସ୍ତ ହେବନାହିଁ । ସେ ଫେରି ଆସିଲା ପରେ ଥାନାରେ ଖବର ଦିଆଗଲା । ଏହିପରି ରାମଚନ୍ଦ୍ର ମହାନ୍ତିଙ୍କର ମହାତ୍ମା ଗାନ୍ଧୀଙ୍କ ସଙ୍ଗେ ଦର୍ଶନ । ମୁଁ ତାଙ୍କର ଜଣେ ଅନ୍ତରଙ୍ଗ ବନ୍ଧୁ ହୋଇଥିବାରୁ ସେ ମୋତେ ସବୁ ବୃତ୍ତାନ୍ତ ତନ୍ନ ତନ୍ନ କରି ବୁଝାଇ କହିଛନ୍ତି । ସେ ସେହିପରି ଦୁଃସାହସ କରି ଆମେରିକା ଯାଇ ସେଠାରେ ଗୋଟିଏ ବିଶ୍ୱବିଦ୍ୟାଳୟରେ ଫିଜିକ୍‌ସ୍‌ରେ ପ୍ରଫେସର ଅଛନ୍ତି । ତାଙ୍କ ଭାଇ ମହେନ୍ଦ୍ର ମହାନ୍ତିଙ୍କ ସ୍ମୃତି ଉଦ୍ଦେଶ୍ୟରେ Zoology Dept. ରେ ଦୁଇଗୋଟି ବୃତ୍ତି Best graduate ମାନଙ୍କୁ ପ୍ରଦାନ କରାଯାଉଛି । ତାହା ବର୍ତ୍ତମାନ ଯାଏ ଗତ ୨୫ ବର୍ଷ ହେଲା ଚାଲିଛି ।

ଏଣେ ଗାନ୍ଧିଜୀ ବଙ୍ଗଳାରୁ ଦିଲ୍ଲୀ ବିରଳା ଭବନକୁ ଆସିଗଲେ । ମନରେ ଗଭୀର କ୍ଷୋଭ । ଯେତେବେଳେ ଶୁଣିଲେ ଯେଉଁ ମହାମନ୍ତ୍ର ହିନ୍ଦୁ ମୁସଲମାନ ଏକତା ଭାଙ୍ଗିଯାଇ ଦେଶ ବିଭାଜନ ହେବା ସ୍ଥିର ହେଲା, ସେଥିରେ ତାଙ୍କର ଏତେ ପରିଶ୍ରମ ବୃଥା ହେଲା । ସେହି ଦେଶ ବିଭାଜନ ଭାରତର ବଡ଼ ବଡ଼ ସହର; ଯଥା: କଲିକତା, ଢାକା, ଲକ୍ଷ୍ନୌ ଓ ଉତ୍ତର ପ୍ରଦେଶର ବହୁ ସ୍ଥାନରେ ହିନ୍ଦୁ ମୁସଲମାନ ଦଙ୍ଗା ସୃଷ୍ଟି କଲା । ଉଭୟ ସଂପ୍ରଦାୟର ଅନେକ ନିରୀହ ଜନତା ବଳି ପଡ଼ିଲେ । ବଙ୍ଗଳାର ପ୍ରଧାନ ମନ୍ତ୍ରୀ ଥିଲେ ସୁରାବର୍ଦ୍ଦି ଖାଁ । ଗାନ୍ଧୀଜୀ ଦିଲ୍ଲୀରୁ ଡକାଯାଇ ଫେରିଗଲା ପରେ ସେ ଦିଲ୍ଲୀ ବିରଳା ଭବନରେ ରହି ପ୍ରତିଦିନ ସନ୍ଧ୍ୟାରେ ପ୍ରାର୍ଥନା ସଭା କରୁଥିଲେ ।

ଏହିପରି ଏକ ଘଣ୍ଟା ପ୍ରାର୍ଥନା ସଭା କରି ସଂପ୍ରଦାୟ ସଂପ୍ରଦାୟ ମଧ୍ୟରେ ସଦ୍‌ଭାବନା ବଜାୟ ରଖିବାକୁ ନିବେଦନ କରୁଥାଆନ୍ତି । ସ୍ୱାଧୀନତା ପରେ ୧୯୪୮ ଜାନୁଆରୀ ୩୦ ତାରିଖରେ ସେହି ପ୍ରାର୍ଥନା ସଭାରେ ନାଥୁରାମ ଗଡ୍‌ସେ ନାମକ ଜଣେ ଉଗ୍ରପନ୍ଥୀ

ହିନ୍ଦୁଙ୍କ ଗୁଳି ମାଡ଼ରେ ସେ ପ୍ରାଣତ୍ୟାଗ କରିଥିଲେ । ମୃତ୍ୟୁ ବେଳକୁ ସେ ଉଚ୍ଚାରଣ କରିଥିଲେ, ''ହେ ରାମ'' । ଏହି ଶୋକ ସମଗ୍ର ଭାରତବାସୀଙ୍କୁ ଗଭୀର ଦୁଃଖ ଦେଇଥିଲା । ଆମ୍ଭେମାନେ ସେତେବେଳେ ରେଭେନ୍‌ସା କଲେଜର ଛାତ୍ର । ସେହି ସଂଧ୍ୟାରେ ଏହି ଶୋକ ସଂବାଦ ବିଜୁଳି ବେଗରେ ପ୍ରଚାରିତ ହୋଇଗଲା । ଆମ୍ଭେମାନେ ୪ର୍ଥ ବର୍ଷ ଛାତ୍ର । ସମସ୍ତେ ସମୂହ ଏବଂ ବ୍ୟକ୍ତିଗତ ଭାବେ କାନ୍ଦିଛୁ । ସେ ଦୁଃଖ ବର୍ଣ୍ଣନାତୀତ । ପଣ୍ଡିତ ନେହେରୁ ସମସ୍ତଙ୍କୁ ସାନ୍ତ୍ୱନା ଦେଇ କାନ୍ଦ କାନ୍ଦ ସ୍ୱରରେ କହିଥିଲେ, ''The light has gone out." ଅଧ ଘଣ୍ଟାଏ କୋହ ଭରା ସ୍ୱରରେ ଭାଷଣ ଦେଇଥିଲେ । ସ୍କୁଲ କଲେଜ୍ ତା ପର ଦିନ ବନ୍ଦ ହେଲା । ଦେଶ ବିଦେଶରୁ ନେତାମାନେ ଆସି ୩୧ ତାରିଖ ଜାନୁଆରୀ ଦିନ ଅନ୍ତ୍ୟେଷ୍ଟିକ୍ରିୟା ହେବାବେଳେ ଉପସ୍ଥିତ ଥିଲେ । ବହୁତ ବିଦେଶର ନେତା ଆସି ନପାରି ନିଜର ପ୍ରତିନିଧି ପଠାଇଥିଲେ । ଏହିପରି ଅତ୍ୟନ୍ତ ଶୋକାକୁଳ ଅବସ୍ଥାରେ ଗାନ୍ଧିଜୀଙ୍କ ମର ଶରୀର ଭସ୍ମରେ ପରିଣତ ହେଲା । ଓଡ଼ିଆରେ ଜଗନ୍ନାଥ ଦାସଙ୍କ ଭାଗବତରେ ଅଛି-

''ପ୍ରାଣୀର ଭଲମନ୍ଦ ବାଣୀ
ମରଣ କାଳେ ତାହା ଜାଣି ।''

ଯେଉଁ କେତେଜଣ ବ୍ୟକ୍ତି ଇହଧାମରୁ ଗଲାବେଳେ ପ୍ରତିବେଶୀ, ଗ୍ରାମ, ରାଜ୍ୟ ଏବଂ ଦେଶର ଲୋକେ ଦୁଃଖ କରି କହନ୍ତି, ସେହିମାନେ ସ୍ୱର୍ଗକୁ ଯାଆନ୍ତି । ଯେଉଁମାନେ ଚାଲିଗଲା ପରେ ଲୋକେ କହନ୍ତି, ''ଲୋକଟା ଅତି ବଦ୍‌ମାସ ଓ ଖରାପ ଲୋକ । ସେ ଗଲାପରେ ଗ୍ରାମ ଉଶ୍ୱାସ ହୋଇଯିବ, ସେ ନିଶ୍ଚିତ ନର୍କକୁ ଯିବ । ଏହା ହିଁ ଧର୍ମ । ଏହାହିଁ ରାଜନୈତିକ ମୂଳମନ୍ତ୍ର । ଏହି ବିଷୟରେ ପରେ ମୋର ଅତି ଅକିଞ୍ଚନ ମତାମତ ଦେବି । ଗାନ୍ଧିଜୀ ଚାଲିଗଲେ । ତାଙ୍କର ସ୍ମୃତି ରକ୍ଷାପାଇଁ ଜାନୁଆରୀ ୩୦ ତାରିଖଟି ଶହୀଦ ଦିବସ ରୂପେ ଦେଶସାରା ପାଳିତ ହେଉଛି । ମାତ୍ର ଗାନ୍ଧିଜୀଙ୍କ ପ୍ରଦର୍ଶିତ- ମାର୍ଗ ସତ୍ୟ, ଶାନ୍ତି, ଦୟା, କ୍ଷମା, ଜାତି, ଧର୍ମ ବିବାଦ ଏବଂ ଭୋଟ ଲଢ଼େଇରେ ବଢ଼ି ବଢ଼ି ଚାଲିଛି । ତାଙ୍କର ଅହିଂସା ପନ୍ଥାରେ ଦକ୍ଷିଣ ଆଫ୍ରିକାର ନେତା ନେଲ୍‌ସନ୍ ମ୍ୟାଣ୍ଡେଲା କଳା ଗୋରା ଭେଦଭାବ ଦୂର କରି ସେ ଦେଶକୁ ସ୍ୱାଧୀନ କରିଥିଲେ । ଇଂଲଣ୍ଡର ଏକ ବିଖ୍ୟାତ ଚଳଚ୍ଚିତ୍ର ନିର୍ମାତା ଆଟେନ୍‌ବରୋ ଗାନ୍ଧିଜୀଙ୍କ ଜନ୍ମରୁ ମୃତ୍ୟୁ ପର୍ଯ୍ୟନ୍ତ ସଂପୂର୍ଣ୍ଣ ଘଟଣାବହୁଳ ଜୀବନୀକୁ ଆଧାର କରି ଏକ ପ୍ରସିଦ୍ଧ ଚଳଚ୍ଚିତ୍ର ନିର୍ମାଣ କରିଛନ୍ତି । ଗାନ୍ଧି ଭୂମିକାରେ Ben Kingsley ଅତି ଜୀବନ୍ତ ଅଭିନୟ କରିଛନ୍ତି । ସେ ସିନେମାଟି ପୃଥିବୀର ସବୁ ଦେଶରେ ପ୍ରଦର୍ଶିତ ହୋଇଛି । ତାହା ସର୍ବଜନ ଆଦୃତ ।

# ମହାତ୍ମାଗାନ୍ଧୀ ଓ ଗାନ୍ଧୀବାଦ

ମହାତ୍ମା ଗାନ୍ଧୀ ଆମ ଜାତିର ଜନକ- ଏହା ସମଗ୍ର ଦେଶ ବିଶ୍ୱାସ କରୁଛି ଜନମତ ନିର୍ବିଶେଷରେ । ବ୍ରିଟିଶ୍ ସରକାରଙ୍କୁ ବିଦାୟ ଦେଇ ପରାଧୀନ ଭାରତକୁ ସ୍ୱାଧୀନ କରିବାରେ ସେ ଥିଲେ ଏକ ଯାଦୁଗର । ଯେପରି ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିୟାନ ସବୁ ଧର୍ମ ଏବଂ ହିନ୍ଦୁ ଧର୍ମର ସବୁ ଜାତି ବ୍ରାହ୍ମଣ, ହରିଜନ, ଆଦିବାସୀ ସମସ୍ତଙ୍କୁ ଏକତ୍ର କରି ଅହିଂସା ପନ୍ଥାରେ ଭାରତ ଛାଡ଼ ଆନ୍ଦୋଳନ କରି ଶେଷରେ ଜୟଲାଭ କଲେ, ତାହା ତାଙ୍କର ଦୂରଦୃଷ୍ଟି ଓ ବିଜ୍ଞତାର ପରିଚାୟକ । ସେ ଓଡ଼ିଶାକୁ ୩/୪ ଥର ଆସିଛନ୍ତି । ପ୍ରଥମେ ଲୁଣମରା ଆନ୍ଦୋଳନ ବେଳେ ୧୯୩୧ ମସିହାରେ । ପୁଣି ଦୁଇଥର ଆସିଥିଲେ । ଶେଷ ବେଳକୁ ୧୯୪୮ ମସିହାରେ ଦୁଇଟି ଡବା ବିଶିଷ୍ଟ ଏକ ସ୍ୱତନ୍ତ୍ର ଟ୍ରେନ୍ ଯୋଗେ ମାନ୍ଦ୍ରାଜ ଯାଉଥିଲେ । କଟକ ଷ୍ଟେସନ୍‌ରେ ହଜାର ହଜାର ଲୋକ । ସେତେବେଳେ ରାତି ୧ ଘଣ୍ଟା । କଟକ ରେଲୱେ ଷ୍ଟେସନ ଜନତାରେ ଭରପୂର । କଟକରେ ଗାଡ଼ିର ରହଣି ନଥିବା ଶୁଣି ଲୋକେ ଅଧୀର ହୋଇ ରେଳ ଲାଇନ୍ ଉପରେ ଶହ ଶହ ସଂଖ୍ୟାରେ ଛିଡ଼ା ହୋଇଥାନ୍ତି । 'ମହାତ୍ମାଗାନ୍ଧୀଙ୍କ ଜୟ' ଧ୍ୱନିରେ ପ୍ଲାଟ୍‌ଫର୍ମ ପ୍ରକମ୍ପିତ । ଗାନ୍ଧିଜୀ ଏହା ଜାଣି ଗାଡ଼ିକୁ ରଖିବାକୁ କହିଲେ । ପ୍ଲାଟ୍‌ଫର୍ମରେ ଗାଡ଼ି ରହିବାରୁ ଲୋକେ ଧସେଇ ପଶିବାକୁ ଚେଷ୍ଟା କଲେ । ଗାନ୍ଧିଜୀ ଡବା ଦ୍ୱାର ପାଖକୁ ଆସି ଯୋଡ଼ ହସ୍ତରେ ନମସ୍କାର କରି କହିଲେ, ''ଜରା ଶୃଙ୍ଖଳା ରଖିୟେ, ହଲ୍ଲା ମତ୍ କିଜିଏ । ଅଭି ହରିଜନ ଫଣ୍ଡ କେ ଲିଏ ଦାନ ଗ୍ରହଣ କରୁଁଗା । ଆପକୀ ମର୍ଜୀ ଯୋ ହୋ ଦିଜୀୟେ ।'' ଜଣେ ମାରୱାଡ଼ି ଲୋକ ଟ୧୦୦୦/- ଦେଲେ । ସେ ମନା କରିଦେଲେ । ମେଁ ଇତନା ଦାନ ନେହିଁ ଲୁଁଗା । ମେହେରବାନ କରକେ ୱାପସ ଲେ ଲିଜିଏ । ତା ପରେ ଜଣେ ରିକ୍ସା ଚାଳକ ଚାରିଅଣା ଦେଲେ । ସେ ଅତି ଆଗ୍ରହର ସହିତ ଗ୍ରହଣ କଲେ । ଟ୍ରେନ୍‌ଟି ୧୦ ମିନିଟ୍ ରହି ଛାଡ଼ିଦେଲା । ଲୋକମାନେ ମହାତ୍ମାଗାନ୍ଧୀଙ୍କ ଜୟଗାନ କରି ଲୋତକଭରା କଣ୍ଠରେ ଫେରିଲେ । ମୁଁ କିନ୍ତୁ ହତଭାଗା । ମୋର ଦ୍ୱିତୀୟ ମା'ଙ୍କ ସ୍ୱର୍ଗାରୋହଣ ହୋଇଯିବାରୁ ମୁଁ ଗ୍ରାମକୁ ଯାଇଥିଲି । ତାର ଦୁଇଦିନ ପରେ ଫେରି ସାଙ୍ଗମାନଙ୍କଠାରୁ ସବୁକଥା ଶୁଣିଲି । ଗାନ୍ଧିଜୀଙ୍କୁ ସ୍ୱଚକ୍ଷୁରେ ଦର୍ଶନ କରିବାର ସୌଭାଗ୍ୟ ମୋର ନାହିଁ ବୋଲି ଧରିନେଲି । ଏହା ଗାନ୍ଧିଜୀଙ୍କର ଅନ୍ତିମ ଥର ପାଇଁ ଓଡ଼ିଶା ଆଗମନ ।

ପୃଥିବୀ ଇତିହାସରେ ଅହିଂସା ଆନ୍ଦୋଳନ ଏବଂ ଭାରତରୁ ବ୍ରିଟିଶ୍ ସରକାରଙ୍କୁ ବିଦାୟ ଦେବାରେ ଗାନ୍ଧିଜୀ ହେଉଛନ୍ତି ପୃଥିବୀ ଇତିହାସରେ ଅଦ୍ୱିତୀୟ । ତାଙ୍କର ନାମ ମୃତ୍ୟୁ ପୂର୍ବରୁ ଏବଂ ମୃତ୍ୟୁପରେ ଏପରି ତିନିଥର ଶାନ୍ତି ପ୍ରତିଷ୍ଠା ପାଇଁ ନୋବେଲ୍ ପୁରସ୍କାର ନିମନ୍ତେ ପ୍ରସ୍ତାବ ଦିଆଯାଇଥିଲା । ମାତ୍ର ପ୍ରତ୍ୟେକ ଥର ବ୍ରିଟିଶ୍ ସରକାରଙ୍କ ତରଫରୁ ତୀବ୍ର ବିରୋଧ ଯୋଗୁ ତାଙ୍କର ନାମ ଯୋଗ୍ୟ ବିବେଚିତ ହେଲା ନାହିଁ । ପ୍ରଥମ ଥର କଟିଗଲା ସେ ବ୍ରିଟିଶ୍ ସାମ୍ରାଜ୍ୟର ବିଚ୍ଛେଦ ସକାଶେ କାର୍ଯ୍ୟ କରୁଛନ୍ତି ବୋଲି । ଦ୍ୱିତୀୟ ଥର କଟିଗଲା ତାଙ୍କ ଯୋଗୁ ସାଂପ୍ରଦାୟିକ ଦଙ୍ଗାର ସୃଷ୍ଟି ଓ ଦେଶ ବିଭାଜନ କାର୍ଯ୍ୟ ପାଇଁ । ତୃତୀୟ ଥର ମରଣୋତ୍ତର ନୋବେଲ୍ ପୁରସ୍କାର ଦେବା ନିରର୍ଥକ । କିନ୍ତୁ ନୋବେଲ୍ କମିଟିର କର୍ମକର୍ତ୍ତାଗଣ ପରିଶେଷରେ ଅନୁତାପରେ ଦଗ୍ଧ ହୋଇ ତାହା ସମ୍ବାଦପତ୍ରରେ ପ୍ରକାଶ କଲେ ।

ଗାନ୍ଧିଜୀ ଚାଲିଗଲେ, ମାତ୍ର କାଳକ୍ରମେ ସେହି ଉଦାର ଗାନ୍ଧିନୀତି ମଧ୍ୟ ଲୋପ ପାଇଗଲା । ସାଂପ୍ରଦାୟିକ ହିଂସା ଓ ଦଙ୍ଗା, ଭୋଟ ଲଢ଼େଇରେ ଜାତିଗତ, ଗୋଷ୍ଠୀଗତ ବୈଷମ୍ୟ କ୍ରମେ ଉତ୍କଟ ହେବାକୁ ଲାଗିଛି । ଅନ୍ତତଃ ଗାନ୍ଧିଜୀଙ୍କର ମୂଳନୀତି ଉଦାରତା, ସାଂପ୍ରଦାୟିକ ବନ୍ଧୁତା ହେଲେ ତଥା ଜାତିଗତ ବୈଷମ୍ୟ କମିଯାଇ ଆମେ ସର୍ବେ ଭାରତୀୟ ଏହି ଉଦାର ଚେତନା ଜାଗ୍ରତ ହେଲେ ଗାନ୍ଧିଜୀଙ୍କ ପ୍ରତି ପ୍ରକୃଷ୍ଟ ଶ୍ରଦ୍ଧାଞ୍ଜଳି ହୋଇପାରିବ । ଏହି ଶପଥ ଆମ୍ଭେ ନେବା ଉଚିତ ।

ସମୟକ୍ରମେ ବର୍ତ୍ତମାନ ଆମ ଦେଶରୁ ଆଦର୍ଶ ବା ଚରିତ୍ରବତ୍ତା, ସାଧୁତା ଉଭେଇଗଲା । ଏହାର ବହୁତ କାରଣ ଅଛି । ସମୟ ଅନୁସାରେ ମୂଲ୍ୟବୋଧ ହ୍ରାସ ପାଉଛି । ଭୋଟ ରାଜନୀତି ଲୋକଙ୍କୁ ଦୁର୍ନୀତି ଓ ଅସାଧୁ ମାର୍ଗ ଶିଖାଇଲା । ତାପରେ ଲୋକଙ୍କର ଚରିତ୍ରବତ୍ତା, ଜ୍ଞାନ ଆହରଣ ପ୍ରଭୃତି ମୌଳିକ ବୃତ୍ତି ଉପରେ ଗୁରୁତ୍ୱ ନଦେଇ ବିଦ୍ୟାକୁ କେବଳ ଅର୍ଥୋପାର୍ଜନର ପନ୍ଥା ବୋଲି ଗ୍ରହଣ କଲେ । ପୁନର୍ବାର ଯାହା ଦରମା ପାଇଲେ, ପୁଣି ସଦ୍ ଓ ଅସଦ୍ ଉପାୟରେ ଉପୁରି ଧନ ଉପାର୍ଜନ । ଛାତ୍ରୀମାନଙ୍କୁ ଶିକ୍ଷକମାନେ ଅସଦାଚରଣ କରିବା ପ୍ରତିଦିନ ଖବର କାଗଜରେ ବାହାରୁଛି ।  ତେଣୁ ଛାତ୍ର ଓ ଗୁରୁ ଚିନ୍ତା କରନ୍ତୁ ଆମେ ଉନ୍ନତି କରୁଛୁ ନା ଅବନତି କରୁଛୁ ?

# ମୋର ଚାକିରୀରେ ଯୋଗଦାନ

ମୁଁ ମିଳିତ ପ୍ରତିଯୋଗିତା ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ଖୁବ୍ ଉଚ୍ଚ ସ୍ଥାନ ଅଧିକାର କରି ୧୯୫୧ ଅକ୍ଟୋବର ମାସରେ Commercial Tax Department ରେ ପୁରୀଠାରେ ଯୋଗଦାନ କଲି । ବିଶ୍ୱବିଖ୍ୟାତ ନୀଳାଦ୍ରି କ୍ଷେତ୍ର ଜଗନ୍ନାଥ ଧାମରେ ପ୍ରଥମେ ଯୋଗ ଦେବାରୁ ମୋର ଅପାର ଆନନ୍ଦ । ସରକାରୀ କାମ ଚାଲିଲା । ମାତ୍ର ପ୍ରଭୁ ଜଗନ୍ନାଥଙ୍କ ଦୈନିକ ଦର୍ଶନ ଓ ପର୍ବପର୍ବାଣି ବିଷୟରେ କିଞ୍ଚିତ ଜ୍ଞାନ ଲାଭ ହେଲା । ମୁଁ ମୋର ସହକର୍ମୀଙ୍କ ସାଙ୍ଗରେ ଦୋଳଗୋବିନ୍ଦ ସାହିର ଖଟୁଆ ସାହି ଗଳିରେ DAG Office ଷ୍ଟାଫ୍ ମାନଙ୍କ ସାଙ୍ଗରେ ଏକତ୍ର ରହିଲି । ସେତେବେଳେ AG Office ରାଞ୍ଚିରେ ଥିଲା । ପୁରୀଠାରେ DAG Office ରେ କେବଳ GP Fund ଏବଂ Works Accounts Section ଥିଲା । ଏକ ମେସ୍‌ରେ ରହିଲି । ଅନ୍ୟାନ୍ୟ ବନ୍ଧୁମାନେ ହେଲେ ସ୍ୱର୍ଗତଃ କାଳିନ୍ଦୀ ତ୍ରିପାଠୀ, ବନମାଳି ମହାନ୍ତି ପ୍ରଭୃତି । କିଛିଦିନ ପରେ ଆମେ ତିନଜଣ ଅଫିସର ଗାର୍ଲସ୍କୁଲ୍ ପାଖରେ ଗୋଟିଏ ଭଡ଼ାଘରେ ମେସ୍ କରି ରହିଲୁ । ଖର୍ଚ୍ଚ ବହୁତ । କାରଣ, ଘର ନେଇଥିଲେ ନବକିଶୋର ଦାସ ଜଗତସିଂହପୁରର । ସେ ଖର୍ଚ୍ଚପତ୍ରରେ ବେପରୁଆ । ମାସକୁ ଜଣକା ଟ ୨୦୦/- ଖର୍ଚ୍ଚ । ମାତ୍ର ମୋର ଦରମା ମାତ୍ର ଟ.୨୬୦ । ତେଣୁ ମୋର ପିତା ପରାମର୍ଶ ଦେଲେ ତୁ ଆଉ ଗୋଟିଏ ଭଡ଼ାଘର ନେଇ ରହ । ମୁଁ ସମୁଦ୍ରକୂଳ ବାଲିସାହିରେ ଟ ୪୦/- ଭଡାଘର ନେଇ ଚାଲିଗଲି । ଅଫିସ୍ କାମ ପରେ ପ୍ରତିଦିନ ସମୁଦ୍ରକୂଳକୁ ୫ଟା ବେଳେ ଯାଇ ନୀଳ ସାଗରର ଢେଉ ଉପଭୋଗ କରେ । ଆମର ପ୍ରତିବେଶୀ ଓ ମୋର ଜ୍ୟେଷ୍ଠ ଭ୍ରାତା ସଦୃଶ ସ୍ୱର୍ଗତଃ ମାୟାଧର ମିଶ୍ର ଆମ ଦଂପତିକୁ ଦେଖି ବହୁତ ଆନନ୍ଦ ଅନୁଭବ କରନ୍ତି । ନିଜ ଦାମ୍ପତ୍ୟ ଜୀବନର ଯୁବାବସ୍ଥା ସ୍ମରଣ କରନ୍ତି । ସନ୍ଧ୍ୟା ୭ଟା ବେଳକୁ ଜଗନ୍ନାଥ ଦର୍ଶନ କରିବା ଦୈନନ୍ଦିନ କାର୍ଯ୍ୟ । ସାଙ୍ଗମାନେ ହେଲେ ନବକିଶୋର ଦାସ, ଜଣେ ତେଲୁଗୁ ଅଫିସର P.V. Appla Narasaya, କଟକର ସଦାନନ୍ଦ ରଥ ଏବଂ ଆହୁରି ଅନେକ ସମବୟସ୍କ ଯୁବକ । ପୁରୀରେ ମୁଁ ୨ବର୍ଷ ଅବସ୍ଥାନ କରିଥିଲି । ଗୁଣ୍ଡିଚା ବାହୁଡ଼ା ସମୟରେ ଦୈନିକ ଆଡ଼ପ ମଣ୍ଡପକୁ ଯାଇ ଜଗନ୍ନାଥ ଦର୍ଶନ କରିବା, ରଥ ଦଉଡ଼ି ଟାଣିବା ମୋର ଦୈନନ୍ଦିନ କାମ । ଚନ୍ଦନ ଯାତ୍ରା ସମୟରେ ପ୍ରଭୁ ସନ୍ଧ୍ୟା ୫ଟା ବେଳେ ନରେନ୍ଦ୍ର ପୋଖରୀକୁ ଭକ୍ତଙ୍କ ଗହଣରେ ପାଲିଙ୍କିରେ ଯାଇ ଚାପ ଖେଳନ୍ତି । ସବୁଠାରୁ ମଜା ହେଉଛି ଭଉଁରୀ ଦିନ ।

ଭଉଁରୀ ହେଉଛି ଚନ୍ଦନ ପୂର୍ଣ୍ଣିମାର ୫ ଦିନ ପରେ । ଏହି ଦିନ ଚନ୍ଦନ ଯାତ୍ରା ଶେଷ । ନରେନ୍ଦ୍ର ପୋଖରୀ କୂଳରେ ହଜାର ହଜାର ଭକ୍ତ ସମବେତ । ସନ୍ଧ୍ୟା ୮ ଟା ବେଳେ ଜଗନ୍ନାଥ ମହାପ୍ରଭୁଙ୍କ ପ୍ରତିନିଧି ମଦନମୋହନ ଓ ଅନ୍ୟ ଠାକୁରମାନଙ୍କୁ ଦୁଇଟି ଡଙ୍ଗା ବାନ୍ଧି ଚାପ କରି ପୋଖରୀରେ ଜଳକ୍ରୀଡ଼ା କରାନ୍ତି । ସେଥିରେ ବହୁତ ନୀତିନିୟମ ଥାଏ । ରାତି ୧୧/୧୨ଟା ବେଳେ ଜଳ ଉତ୍ସବ ଶେଷ ହୁଏ । ଘୋଷଯାତ୍ରା ବା ଗୁଣ୍ଡିଚା ବାହୁଡ଼ା ପରକୁ ଏହି ଉତ୍ସବଟି ସୁପ୍ରସିଦ୍ଧ । ପୁରୀରେ ଲୋକମୁଖରେ ପ୍ରବାଦ ଅଛି, ''ଭଉଁରୀ ଉପଭୋଗ କରିବାକୁ ତାରଣା ପଇସା ଦରକାର । ଅଣାକର ତେଲ (ତେଲ ଲଗାଇ ପୋଖରୀରେ ଗାଧୋଇବା), ଅଣାକର ମାଲ (ଭାଙ୍ଗ), ଅଣାକର ସୋଲ (ସୋଲ ବିଡ଼ା ଧରି ପୋଖରୀକୁ ଯିବା, ଯେପରି ବେଶୀ ପାଣିରେ ଗୋଡ଼ ଖସିଗଲେ ପହଁରି ଚାଲି ଆସିବ), ଆଉ ଅଣାକର ଗେଲ ନିଜ ସମବୟସ୍କ ପିଲା ଓ ଭାଇ ଭଉଣୀ ସାଙ୍ଗସାଥୀଙ୍କ ସଙ୍ଗରେ (ଥଟ୍ଟା ତାମସା) । ପାଠକେ ଗେଲର ତାତ୍ପର୍ଯ୍ୟ ବୁଝନ୍ତୁ ।

ଭଉଁରୀ ଶେଷଦିନ ଅଫିସର ସବୁ ଷ୍ଟାଫ୍ ଚାନ୍ଦା ଦେଇ ଭୋଜି କରନ୍ତି । ସବୁ ସାଦା ଉପରେ । ମାତ୍ର ଏତେ ସୁସ୍ୱାଦୁ ୧୦ ପ୍ରକାରରୁ ଅଧିକ ବ୍ୟଞ୍ଜନ । ମୁଁ ବହୁତ ସ୍ଥାନରେ ଭୋଜି ଖାଇଛି, ମାତ୍ର ଆମ ଅଫିସରେ ୧୯୫୨ ମସିହା ଭଉଁରୀର ଭୋଜି ମୋର ଏପର୍ଯ୍ୟନ୍ତ ମନେଅଛି । ଆଉ ଗୋଟିଏ ଆମିଷ ତରକାରୀ ହୁଏ ବାଲି ସାହିର ଶ୍ୟାମାକାଳୀଙ୍କ ମନ୍ଦିରରେ, ମାଛ ମହୁର ଏବଂ ଆମ୍ବୁଲ ରାଇ । ଏଗୁଡ଼ିକ ଓଡ଼ିଶା ପ୍ରସିଦ୍ଧ । ବାସ୍ତବିକ ଖାଇବା ଓ ଖୋଇବା(ଅତିଥି ଚର୍ଚ୍ଚା) ପାଇଁ ପୁରୀ ଭାରତ ବିଖ୍ୟାତ । ଏହାହିଁ ଜଗନ୍ନାଥ ସଂସ୍କୃତି । ମୁଁ ଶୁଣିଛି ସାର୍ ଉଇଲିଅମ୍ ହଣ୍ଟର ଯିଏ ଏକଦା ପୁରୀ କଲେକ୍ଟର ଥିଲେ ସେ ଅବସର ପରେ ଓଡ଼ିଶା ଇତିହାସ ଲେଖିବା ପାଇଁ ତଥ୍ୟ ସଂଗ୍ରହ କରିବା ଉଦ୍ଦେଶ୍ୟରେ ପୁରୀ ଷୋଳ ଶାସନର ଏକ ପଣ୍ଡିତ ବିଦ୍ୱାନଙ୍କ ଗୃହରେ ଆତିଥ୍ୟ ଗ୍ରହଣ କରିଥିଲେ । ବ୍ରାହ୍ମଣ ଓ ତାଙ୍କ ପତ୍ନୀ ଅର୍ଦ୍ଧାହାରରେ ସାଧାରଣ ଅନ୍ନ, ଡାଲି, ତରକାରୀ ଦେଇ ଅତିଥି ସତ୍କାର କରିଥିଲେ । ସେ ଗଲାବେଳେ ଅର୍ଥ ଯାଚିବାରୁ ବ୍ରାହ୍ମଣ ଅତି ବିନମ୍ର ଭାବରେ ମନା କଲେ । ଏହିପରି ଆହୁରି ଅନେକ ଉଦାହରଣ ମୁଁ ପଞ୍ଚାୟତ ଶାସନ ଅଧ୍ୟାୟରେ ଉଲ୍ଲେଖ କରିବି ।

ପୁରୀରେ ଅବସ୍ଥାନ ସମୟରେ ଦୁଇଟି ଉଲ୍ଲେଖନୀୟ ଅଭିଜ୍ଞତା ମୁଁ ଉଲ୍ଲେଖ ନକଲେ ଅପୂରଣୀୟ ରହିଯିବ । ପ୍ରଥମଟି ହେଲା ୧୯୫୨ ମସିହାରେ ଭାରତର

ପ୍ରଥମ ଲୋକସଭା ନିର୍ବାଚନ । ମୁଁ ଚାକିରିରେ ଯୋଗ ଦେବାର ଦୁଇମାସ ପରେ ଅର୍ଥାତ୍ ଫେବୃଆରୀ ମାସରେ ଭାରତର ସବୁ ରାଜ୍ୟରେ ପ୍ରଥମ ସାଧାରଣ ନିର୍ବାଚନ ହେଲା । ମୋତେ ଆଗରୁ ନୋଟିସ୍ ନ ଦେଇ ମାତ୍ର ୩ ଦିନ ମଧ୍ୟରେ କଲେକ୍ଟର / ଏସ୍.ଡି.ଓ. ନିର୍ଦ୍ଦେଶ ଦେଲେ ପଞ୍ଚାୟତ ନିର୍ବାଚନରେ ପ୍ରିଜାଇଡିଂ ଅଫିସର ଭାବେ ବାଲିପାଟଣା ଥାନାର ତୁରିନ୍ତିରା ପଞ୍ଚାୟତରେ । ଦୀର୍ଘ ୭ ଦିନ ଭୋଟ । ସକାଳ ୮ ଘଣ୍ଟାରୁ ଦିବା ୧ ଘଣ୍ଟା । ପୁଣି ୨ ଘଣ୍ଟାରୁ ୫ ଘଣ୍ଟା । ସବୁକାମ ସାରି ଭୋଟ ବାକ୍ସ ସିଲ୍ କରି ଆସିଲାବେଳକୁ ସନ୍ଧ୍ୟା ୭ ଘଣ୍ଟା । ପୁଣି ଏଠାରେ ରହିବା ପାଇଁ ଜଣକର ଖମାର ଘର । ଗୋଟିଏ ୩ ଫୁଟ ଓସାର ପଲଙ୍କ । ଉଠା ପାଇଖାନା । ଗାଧୋଇବା ପାଇଁ ଗୋଟିଏ ଦଳଭରା ପୋଖରୀରେ ଥଣ୍ଡା ପାଣି । ଗାଧୋଇ ପଡ଼ିଲେ ମେଲେରିଆ ଜ୍ୱର ହେବା ନିଶ୍ଚିତ । ପୋଲିସ ଷ୍ଟାଫ ଅନ୍ୟ ଘରେ ଆସି ରହନ୍ତି । କଲେକ୍ଟରଙ୍କ ଅଫିସର ଆଉ ୫ ଜଣ କର୍ମଚାରୀ । ଏକାଠି ରୋଷେଇ । ଆମ ଷ୍ଟାଫ୍‌ମାନଙ୍କର ରୋଷେଇ ଆମଘରେ ଏକାଠି ହେଉଥାଏ । ତୁରିନ୍ତିରା ହେଉଛି ବିଖ୍ୟାତ ବିପ୍ଳବୀ କବି ଅନନ୍ତ ପଟ୍ଟନାୟକଙ୍କର ଗ୍ରାମ । ତାଙ୍କର ଘର ବି ଖୁବ୍ ନିକଟରେ । ତାଙ୍କର ଗ୍ରାମ ପ୍ରତି ବହୁତ ଅବଦାନ ।

ନିର୍ବାଚନ ଦୁଇଦିନ ପୂର୍ବରୁ ଆମେ ଗୋଟିଏ ବସ୍‌ରେ ଗଲୁ । ଭୋଟ୍ କାଗଜ ଓ ବ୍ୟାଲେଟ ପେପର ଖୋଲାରେ ବାଟରେ ଗୋଟିଏ ଜାଗାରେ ଜଣେ ଅଫିସର ଦେଲେ ଓ ଦସ୍ତଖତ କରିବାକୁ କହିଲେ । ମୁଁ ମୋ ସାଧାରଣ ବୁଦ୍ଧିରେ କହିଲି, ‘‘ମୋର ରହିବା ଠିକଣା ନାହିଁ । କେହି ଗାର୍ଡ଼ ନାହାନ୍ତି । ଏପରି ନିରାପତ୍ତା ନଥିବା ସ୍ଥାନରେ ଓ ରାସ୍ତା ଉପରେ ଏତେ କାଗଜ ପତ୍ରର ଦାୟିତ୍ୱ ନେଇପାରିବି ନାହିଁ । ସେମାନେ ମୋତେ ଭୟ ଦେଖାଇଲେ, ‘‘ତୁମେ ନ ନେଲେ ତୁମ ଚାକିରୀ ଉପରେ ଅସୁବିଧା ହେବ ।’’ ମୁଁ ହାତ ଯୋଡ଼ି ମନା କଲି । ଖୋର୍ଦ୍ଧା ଏସ.ଡ଼ି.ଓ. ଥିଲେ ପରବର୍ତ୍ତୀ କାଳରେ ଚିଫ୍ ସେକ୍ରେଟେରୀ Sri SMH Burney. ସେ ତା’ପରଦିନ ସକାଳ ୧୦ ଘଣ୍ଟା ବେଳେ ନିର୍ବାଚନ କେନ୍ଦ୍ରରେ ଅନ୍ୟ କେତେକ ଅଫିସରଙ୍କ ସଙ୍ଗରେ ହାଜର । ମୋତେ ପଚାରିଲେ, ‘‘ତୁମେ ଗଲାକାଲି ନିର୍ବାଚନ କାଗଜ ପତ୍ର ନେଲ ନାହିଁ କାହିଁକି ?’’ ମୁଁ ମୋର ଅସୁବିଧା କଥା ବର୍ଣ୍ଣନା କଲାରୁ ସେ କହିଲେ ଠିକ୍ ଅଛି । ସବୁଜିନିଷର ଏକ ତାଲିକା ପ୍ରସ୍ତୁତ କରି ଆଣିଥିଲେ । ମୁଁ ଦାୟିତ୍ୱ ନେଇ ଦସ୍ତଖତ କରିବାରୁ ସେ କହିଲେ, ତୁମେ କିଛି ଭୁଲ୍ କରିନାହଁ । ଖୁବ୍ ହୁସିଆର ଅଫିସର । ସେ ବଡ଼ ସମଝଦାର ଓ ଭଦ୍ର

ଅଫିସର । ପରେ ତାଙ୍କ ବିଷୟରେ ଲେଖିବି । ନିର୍ବାଚନ ୭ ଦିନ ଚାଲିଗଲା । କୃଷ୍ଣ ବାରିକ ନାମକ ଆମ ଅଫିସର ଗୋଟିଏ ବିଶ୍ୱସ୍ତ ଚପରାଶି ଆସିଥିଲା । ସେ ମୋତେ ସକାଳେ ଚା କରିଦେବା, କୂଅରୁ ପାଣି କାଢ଼ିଦେବା, ଗରମ ପାଣି ଦେବା, ଯାହା ହେଲେ ଟିକିଏ ଜଳଖିଆ ଦେବା ସବୁ କାମ କରୁଥିଲା । ରାତିରେ ସୋରିଷ ତେଲ ଗୋଡ଼ରେ ମାଲିସ୍ କରୁଥିଲା । ମୁଁ କାମ ସାରି ବୁଥ୍‌କୁ ୮ଟା ପୂର୍ବରୁ ଗଲାପରେ ସେ ନିଜେ ତାର ପ୍ରାତଃକର୍ମ ସାରି ସମସ୍ତଙ୍କ ପାଇଁ ରୋଷେଇ କରୁଥିଲା । ଖାଦ୍ୟପେୟର କିଛି ଅଭାବ ନଥିଲା । ନିଜେ ଅନନ୍ତ ପଟ୍ଟନାୟକ କେତେଥର ଆସି ସୁବିଧା ଅସୁବିଧା ତଲାସ କରିଯାଉଥିଲେ । ତାଙ୍କ ପରି ଉଚ୍ଚମନା ଓ ପରୋପକାରୀ ବ୍ୟକ୍ତି ବିରଳ । ଜଳଖିଆ ଖାଇବା ପାଇଁ ବୁଥ୍ ପାଖରେ ଏକ ଗୁଡ଼ିଆ ଦୋକାନ ଥିଲା । ବରା, ପକୁଡ଼ି, ସବୁ ପ୍ରକାର ମିଠା ଓ ଚା । ଆମ କଲେକ୍‌ଟରଙ୍କ ଅଫିସର କର୍ମଚାରୀମାନେ ମୋ ନାମ କହି ବହୁତ ଖାଇଗଲେ । ମାତ୍ର ମୁଁ ଖୁବ୍ ଅଳ୍ପ ଖାଇଛି । ଆମେ ଆସିଲା ବେଳକୁ ଦୋକାନୀ ମୋତେ ଫେରାଦ କଲା । ଷ୍ଟାଫମାନେ କହିଲେ ନିର୍ବାଚନ ଖର୍ଚ୍ଚରେ ପକାଇ ଦିଅନ୍ତୁ । ମୁଁ ମନାକଲି । ମୋର ସ୍ୱଳ୍ପ ଦରମାରୁ ସେତକ ଦେଇଦେଲି । ଗାଁ ବାଲା ଶୁଣି ବହୁତ ଖୁସୀ ହେଲେ ।

ଏ ତ ଗଲା ନିର୍ବାଚନ କଥା । ମାର୍ଚ୍ଚ ମାସରେ ମୋର କାକଟପୁର ଗଙ୍ଗା ନାରାୟଣ ପୁର ଶାସନର ଦୈତାରୀ ଶତପଥୀଙ୍କ କନ୍ୟା ବାସନ୍ତୀଙ୍କ ସଙ୍ଗରେ ବିବାହ ହେଲା । ବିଭାଘରର ଯାବତୀୟ ଦାୟିତ୍ୱ ନେଇଥିଲେ ତାଙ୍କ ବଡ଼ଜୋଇଁ ଦୀନବନ୍ଧୁ ମହାପାତ୍ର । ସେ ନିମାପଡ଼ା ଅଣ୍ଡିଆ ଶାସନର ପଣ୍ଡିତ ମଧୁସୂଦନ ମହାପାତ୍ରଙ୍କର ପୁତ୍ର । କୃଷି ବିଭାଗରେ ଏଡ଼ିସନାଲ୍ ଡାଇରେକ୍‌ଟର ଭାବେ ଚାକିରୀରୁ ଅବସର ଗ୍ରହଣ କରିଥିଲେ । ଅତି ଦକ୍ଷ ଓ କର୍ମଠ ଅଫିସର, ମାତ୍ର ସ୍ପଷ୍ଟଭାଷୀ ଓ ଉଚ୍ଚ ଅଫିସରଙ୍କୁ ରୋକ୍ ଠୋକ୍ ମୁହଁ ଉପରେ ଜବାବ ଦିଅନ୍ତି । ଚାକିରୀରେ ବିଶେଷ ଉନ୍ନତି କରିପାରିଲେ ନାହିଁ । ମାତ୍ର ବିଭାଘର, ବ୍ରତଘର ସାମାଜିକ କାର୍ଯ୍ୟର ସୁବନ୍ଦୋବସ୍ତ କରିବାରେ ଧୁରନ୍ଧର । ବନ୍ଧୁବାନ୍ଧବମାନଙ୍କର ସାମାଜିକ ସମୂହ କାର୍ଯ୍ୟ ସୁଚାରୁରୂପେ ସଂପାଦନା କରନ୍ତି । ତାଙ୍କର ସ୍ତ୍ରୀ ବିଧୁମତି ମହାପାତ୍ର ଅତି ଦୟାଶୀଳା ଉଦାରମନା ଏବଂ ଅତିଥି ପରାୟଣା ମହିଳା । ସେ ଉଭୟେ ଆମ ପାରିବାରିକ ଜୀବନରେ ଏପରି ଏକ ଆଲୋକ ବର୍ତ୍ତିକା ଥିଲେ ଯେ ଆମ ସ୍ୱାମୀ ସ୍ତ୍ରୀଙ୍କ ମଧରେ ଉତ୍ତମ ସଂପର୍କ ଥିଲା, ଯଦିଚ ପ୍ରଥମେ ପ୍ରଥମେ ବହୁତ ବିଷୟରେ ମତଭେଦ ହେଉଥିଲା । ମୋର ଶାଶୁ ରମାମଣି ଦେବୀ ଜଣେ

ବିଶିଷ୍ଟ ପଣ୍ଡିତ ଓ ଖାନଦାନ୍ ଘରର କନ୍ୟା । ନିଆଳିର ଟୋଲା ଗୋପୀନାଥ ପୁର ଶାସନରୁ ଆସିଥିଲେ । ଶ୍ୱଶୁର ଦୈତାରୀ ଶତପଥୀ ଉତ୍କଳମଣି ଗୋପବନ୍ଧୁଙ୍କ ବକୁଳବନ ବିଦ୍ୟାଳୟରେ ବିଦ୍ୟାଲାଭ କରିଥିଲେ । ଉତ୍କଳମଣିଙ୍କ ଆଦର୍ଶବାଦର ପ୍ରଭାବ ତାଙ୍କ ଚରିତ୍ରରେ ପ୍ରତିଫଳିତ ହୋଇଥିଲା ।

ସେ ଟାଟା କଂପାନୀରେ ଯାମସେଦପୁର ଠାରେ ଦୀର୍ଘ ୪୦ ବର୍ଷ କର୍ମରତ ଥିଲେ । ତାଙ୍କ ଜୀବନରେ ସେ କିଛି ସଞ୍ଚୟ କରି ନାହାନ୍ତି । ଯାମସେଦପୁରର ଉତ୍କଳ ଆସୋସିଏସନ୍‌ରେ ସେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ । ଯାମସେଦପୁରର ଓଡ଼ିଆମାନଙ୍କର ଦୁର୍ଗାପୂଜାରେ ସେ ଯଥାଶକ୍ତି ଦାନ କରୁଥିଲେ । ତାଙ୍କ ସ୍ୱଳ୍ପ ଦରମାରେ ସେ ପୁତୁରା ଝିଆରୀ ଓ ଅନ୍ୟମାନଙ୍କ ଉଚ୍ଚଶିକ୍ଷାରେ ସହାୟକ ହୋଇଥିଲେ । ଏହିପରି ଉଦାରଚେତା ପରିବାରରେ ମୁଁ ବିବାହ କରିଥିଲି । ମୋ ସ୍ତ୍ରୀ ପ୍ରଥମେ ଆମ୍ଭ ଗ୍ରାମକୁ ଜୁଲାଇ ୧୯୫୨ରେ ଯିବା ସମୟରେ ଯେନାପୁର ଠାରୁ ଆମ୍ଭ ଗ୍ରାମ ପର୍ଯ୍ୟନ୍ତ ଡଙ୍ଗାରେ ବ୍ରାହ୍ମଣୀ ନଦୀର ଉଜାଣି ସ୍ରୋତରେ ଦୀର୍ଘ ୮ ଘଣ୍ଟା ବସି ଯାଇଥିଲେ । ସେ କହନ୍ତି ସେହି ସ୍ମୃତି ଯେତିକି ଆମୋଦଦାୟକ ସେତିକି କଷ୍ଟଦାୟକ । ସେଠାରେ ଏକମାସ ରହିଲା ପରେ ଅଗଷ୍ଟ ମାସରେ ପୁରୀକୁ ଆସିଲେ । ଗ୍ରାମରେ ନାତୁଣୀ ବୋହୂକୁ ଅସୁବିଧା ହେବ ଭାବି ମୋର ଅଜା ଚଉଷଠି ପଢ଼ା ବୃନ୍ଦାଦେଈପୁର ଶାସନର ଦାମୋଦର ଶତପଥୀ ମୋର ଆଈକୁ ଆମ୍ଭ ଗ୍ରାମକୁ ଏକ ସପ୍ତାହ ପାଇଁ ପଠାଇଥିଲେ । ଆଈ ନାତୁଣୀବୋହୂକୁ ବୁଝାଇ ସୁଝାଇ ବଳାଇ ବଳାଇ ଖୁଆଉଥିଲେ । ମୋର ଆଈଙ୍କର ସ୍ନେହ ଅତୁଳନୀୟ । ମୁଁ ମାମୁଁ ଘରକୁ ଗଲେ ମୋର ୪ ଜଣ ମାମୁଁ ବ୍ୟସ୍ତ ହୋଇପଡ଼ିବେ । ଭଣଜାକୁ କଅଣ ଖୁଆଇବେ । ଆଈ କହିବ, "ମୋ ନାତିକୁ ମୁଁ ଖାଇବାକୁ ଦେବି । ତୁମେ ସବୁ ସେଥିରେ ମୁଣ୍ଡ ପୂରାଅ ନାହିଁ ।"

ସେ ଭଲ ଉସୁନା ଚାଉଳ ପଖାଳ, ଆଳୁଭଜା, ବାଡ଼ିରୁ କସି କାକୁଡ଼ି, ଘୋଳଦହି, ଜହ୍ନି ଓ ଛଚିନ୍ଦ୍ରା ଗରମ ଭଜା ଆଣି ବାଢ଼ିଦେବ । ଓଃ କି ଦିବ୍ୟ ଖାନା । ମୋ ପାଖରେ ଜଗି ବସି କହୁଥିବ ଆଉ ଟିକିଏ ଭାତ, ଆଉ ଟିକିଏ ଭଜା, ଏହିପରି କେତେ କଅଣ କଥା କହୁଥାଏ । ଖାଇବାର ସବୁଠାରୁ ସ୍ୱାଦ ହେଉଛି ଖାଦ୍ୟ ନୁହେଁ, ଆଦର ଓ ସ୍ନେହ । ଆଦରରେ ପଖାଳ ଗଣ୍ଡାଏ ଦେଲେ ତାହା ଅମୃତ । ମାତ୍ର ହତାଦରରେ ବା ବିନା ଆଦରରେ ଖାଦ୍ୟ ପରଷିଲେ ଭୋକ ମରିଯାଏ । ସେଥିପାଇଁ କହନ୍ତି ଖୁଆଇବା ତିନି ପ୍ରକାର । ଖା, ଭୁଞ୍ଜ, ଗିଳ୍ । ଉତ୍ତମ, ମଧ୍ୟମ ଓ ଅଧମ ଆଦର । ଦରିଦ୍ର ସୁଦାମା

ଶ୍ରୀକୃଷ୍ଣଙ୍କ ପାଖକୁ ଦ୍ୱାରକାକୁ ଖୁଦ ଭଜା ନେଇ ଯାଇଥିଲେ । କି ସୌହାର୍ଦ୍ଦ୍ୟରେ ଶ୍ରୀକୃଷ୍ଣ ସହପାଠୀ ଦରିଦ୍ର ସୁଦାମାକୁ ଆଦର ସମ୍ବର୍ଦ୍ଧନା ଦେଲେ । ଗୋଡ଼ ଧୋଇ ଦେବା ପରେ ରୁକ୍ମିଣୀ ପାଦ ପୋଛିଦେଲେ । ଶ୍ରୀକୃଷ୍ଣ ପଚାରିଲେ ସଖା ମୋ ପାଇଁ କଅଣ ଆଣିଛ ? ସୁଦାମା ଲଜ୍ଜାରେ ମୁଖ ଅବନତ କଲେ । ଶ୍ରୀକୃଷ୍ଣ ତାଙ୍କ ଗାମୁଛା ଖୋଲି ଦେଖିଲେ କେତେ ମୁଠା ଖୁଦ ଭଜା । ସେ ଖୁଦ ଭଜା ଅତି ଆନନ୍ଦରେ ଖାଇବାକୁ ଲାଗିଲେ । ଆହା କି ସୁସ୍ୱାଦ ! ରୁକ୍ମିଣୀ କହିଲେ, ତୁମେ କଅଣ ସବୁ ଏକା ଖାଇଦେବ କି ? ସେ ଓ ଅଷ୍ଟପାଟରାଣୀ ସମସ୍ତେ ମୁଠାଏ ମୁଠାଏ ଖାଇଲେ । ସୁଦାମା ଫେରିବାପରେ ଦେଖିଲେ ନିଜ ଗୃହ ରାଜପ୍ରାସାଦ ହୋଇଯାଇଛି । ଧନଧାନ୍ୟରେ ପରିପୂର୍ଣ୍ଣ । ସେଥିଯୋଗୁ ଓଡ଼ିଆରେ ପ୍ରବାଦ ଅଛି -

''ଦେଇଥିଲେ ପାଇ, ବୁଣିଥିଲେ ବାଇ
ପଡ଼ିଆ ବାଡ଼ିରେ ଗୋଧନ ଚରାଇ ।''

ଏହି ସଂସ୍କୃତି ସ୍ନେହ ସହାନୁଭୂତି କୁଆଡ଼େ ଉଭେଇ ଗଲା ?

# ମୋର ସମ୍ବଲପୁରକୁ ବଦଳି

ଜୁଲାଇ ୧୯୫୩ ମସିହାରେ ମୋର ପୁରୀରୁ ସମ୍ବଲପୁର ବଦଳି ହେଲା । ମୁଁ ଟ୍ରେନ୍‌ରେ ଯାଇ ଯାମସେଦପୁରରେ ମୋ ସ୍ତ୍ରୀଙ୍କୁ ଛାଡ଼ିଦେଲି । କାରଣ ସେ ଅନ୍ତଃସତ୍ତ୍ୱା ଥିଲେ । ସମ୍ବଲପୁର ୩ ଦିନ ମଧ୍ୟରେ ପହଞ୍ଚିଲି । ଆମର C.T.O. ଥିଲେ ମୋର ଜ୍ୟେଷ୍ଠଭ୍ରାତା ସଦୃଶ ବରହମପୁରର ଭଦ୍ର ବ୍ୟକ୍ତି ଡି.ଏସ୍. ମହାନ୍ତି । ଅତି ଉତ୍ତମ ଲୋକ । ଝାରସୁଗୁଡ଼ାରୁ ସକାଳ ୮ଟା ସମୟରେ ଫାଟକ (ସମ୍ବଲପୁର ରୋଡ଼) ଷ୍ଟେସନରେ ପହଞ୍ଚିଲାବେଳକୁ ମିଃ. ଡି.ଏସ୍. ମହାନ୍ତି ସାହେବ ଗାଡ଼ି ଧରି ହାଜର । ମୋତେ ଚିହ୍ନା ଦେଲେ । ସେ ଗାଡ଼ି ଆଣି ଆସିଥିଲେ । ମହାନଦୀ କୂଳ ବାଲିବନ୍ଧାରେ ଆଗରୁ ଆମ ଅଫିସର ଦୁଇଜଣ ଅଫିସର ରହୁଥାଆନ୍ତି । ସେମାନେ ହେଲେ ଗିରୀଶ ଚନ୍ଦ୍ର ପାତ୍ର ଯେ ଖୁବ୍ ସୁନାମ ଅର୍ଜ୍ଜନ କରି I.A.S. ପାଇଛନ୍ତି । ମାତ୍ର ପାରାଲେସିସ୍ ରୋଗ ଯୋଗୁ କିଛି ବର୍ଷ ପୂର୍ବେ ବେମାର ହୋଇ Wheel Chair ରେ ଚଳପ୍ରଚଳ କରୁଛନ୍ତି । ଆଉ ଜଣକ ହେଲେ ଆମ ଗାଁ ପାଖ ବଳରାମପୁର ଚଳଗଡ଼ର ପ୍ରଫୁଲ୍ଲ ପଟ୍ଟନାୟକ । ଆମେ ତିନିଜଣ ଯାକ ସମବୟସ୍କ ହୋଇଥିବାରୁ ପରସ୍ପର ମଧ୍ୟରେ ଥଟ୍ଟା

ମଜାରେ ସମୟ ଅତିବାହିତ ହେଉଥିଲା । ଏହାପରେ ଅଗଷ୍ଟମାସ ହେଲା । ମହାନଦୀ ଉଛୁଳୁଛି । ସକାଳୁ ଦେଖିଲୁ ଜଣେ ଯୁବକ ମଟର ଟିଉବରେ ମହାନଦୀ ମଝିରେ ବୀର କାହାଳୀ ବଜାଉଛନ୍ତି । ଅତି ଦୁଃସାହସିକ କାର୍ଯ୍ୟ । ସମ୍ବଲପୁର ଏକ ନଦୀମାତୃକା ଅଞ୍ଚଳ । ମା ସମଲେଶ୍ୱରୀଙ୍କ କରୁଣାରୁ ଏଠାରେ ଖାଦ୍ୟ ଦ୍ରବ୍ୟର ଅଭାବ ନଥିଲା । ମନ୍ଦିରଟି ଠିକ୍ ନଦୀ କୂଳରେ । ଆମେ ସେହି ନଦୀରେ ଗାଧୋଉ । ସେହି ବଢ଼ିପାଣି ଆଣି ମାଠିଆରେ ରଖି ଫିଟ୍‌କିରୀ ଟିକିଏ ପକାଇ ଦେଲେ ତାପରଦିନ ସ୍ୱଚ୍ଛ ପାଣି । ଧୀରେ ଧୀରେ ଉପର ପାଣି ଆଣି ପିଇ ତଳିଆ ପାଣି ଟାକରାଣୀ ଫିଙ୍ଗି ଦେଇ ନଦୀରେ ସଫା କରି ଆରଦିନ ପାଣିଆଣେ । ଆଜିକାଲି କି ସ୍ୱଚ୍ଛଳ ଜଳଧାରା ଯୋଜନା ଚାଲିଛି । ଦେଖନ୍ତୁ, ପୂର୍ବକାଳେ ଲୋକେ କିପରି ଗୋଳିଆ ନଦୀଜଳକୁ ସଫା କରି ପିଇବା ପାଣି ସଂଗ୍ରହ କରୁଥିଲେ ।

ସମ୍ବଲପୁରର ଜଳବାୟୁ ଅତି ଗରମ । ଖରାଦିନେ ସର୍ବୋଚ୍ଚ ଉତ୍ତାପ ୪୫°C । ବର୍ଷା ଦିନେ ମୂଷଳଧାରାରେ ବର୍ଷା ହୁଏ । ଶୀତଦିନେ ଭୟାନକ ଥଣ୍ଡା । ସର୍ବନିମ୍ନ ଉତ୍ତାପ ୮ / ୧୦°C ।

ବାଲିବନ୍ଧାରେ ଗୋଟିଏ ଗୀତାରୁଢ଼ି ମନ୍ଦିର (ଗୀତା ମନ୍ଦିର) ସ୍ୱନାମଧନ୍ୟ ଗୃହୀ ସନ୍ନ୍ୟାସୀ ଡଃ. ଜନାର୍ଦ୍ଦନ ପୂଜାରୀ ନିଜର ଗୋଟିଏ ଘରେ ସ୍ଥାପନା କରିଥିଲେ । ପ୍ରତି ସଂଧ୍ୟାରେ ଜଣେ ପଣ୍ଡିତ ଭଗବତ୍ ଗୀତା ଅତି ସୁଲଳିତ ସ୍ୱରରେ ଗାନ କରୁଥିଲେ । ନିଜେ ଡଃ. ପୂଜାରୀ ପ୍ରବଚନ ଦେଉଥିଲେ । ସନ୍ଧ୍ୟା ୭ଟାରୁ ୮ ଘଣ୍ଟା । ମୋର ସହକର୍ମୀ ଅନ୍ୟ ଦୁଇଜଣ ସେଠାକୁ ଯାଉନଥିଲେ । ମାତ୍ର ମୁଁ ନିୟମିତ ଯାଉଥିଲି । ତାପରେ ଭଜନ । ପରିବେଶ ଭଗବତ୍ ଭାବାବିଷ୍ଟ । ସେ ବିଷୟରେ କିଛି ଲେଖିବା ଉଚିତ ମନେକରୁଛି । Dr. Rajen Mohanty ଖରସୁଆଁର । ତାଙ୍କ ସଙ୍ଗେ ମୋର ପାରିବାରିକ ନିବିଡ଼ତା ଥିଲା । ସେ କହୁଥିଲେ ଡଃ ପୂଜାରୀ ଥରେ ସାଥିମାନଙ୍କ ସଙ୍ଗରେ ବଦ୍ରିନାଥ କେଦାରନାଥ ଦର୍ଶନରେ ଯାଇଥିଲେ । ପାହାଡ଼ ଭିତରେ କେଉଁଆଡ଼େ ହଜିଗଲେ । ତାର ପତ୍ତା ମିଳିଲା ନାହିଁ । ସମସ୍ତେ ଭାବିଲେ ସେ କେଉଁଠି ପର୍ବତ ଉପରୁ ଖସିପଡ଼ି ଚାଲିଗଲେ । ୩ ମାସ ପରେ ସେ ଅତି ପ୍ରଶାନ୍ତଚିତ୍ତରେ ଆଧ୍ୟାତ୍ମିକ ମାର୍ଗର ପଥିକ ହୋଇ ଗୁରୁଦୀକ୍ଷା ନେଇ ଆସିଛନ୍ତି । ସଂପୂର୍ଣ୍ଣ ପରିବର୍ତ୍ତନ । ସେହି ଦିନରୁ ଡାକ୍ତରୀ ସେବା କରୁଛନ୍ତି । ମାତ୍ର ପଇସା ନିଜେ ଧରି ନାହାନ୍ତି । ତାଙ୍କ ପରି ଆଧ୍ୟାତ୍ମିକ ମାର୍ଗର ପଥିକ ଓଡ଼ିଶାରେ ବିରଳ । ଡଃ. ପୂଜାରୀଙ୍କ ବିଷୟରେ ବହୁତ

ପ୍ରଶଂସା ଶୁଣିଛି । ତାଙ୍କ ଗ୍ରାମ ମାନେଶ୍ବର ପାଖ ମହାନଦୀ କୂଳର ହୁମାରେ, ବଙ୍କା ଦେଉଳ ପାଖରେ । ସେ ଏତେ ଆଧ୍ୟାତ୍ମିକ ଭାବପ୍ରବଣ ଯେ ନିଜର ମୃତ୍ୟୁ ନିଜେ ଜାଣିପାରି କାର୍ତ୍ତିକ ମାସ ଏକାଦଶୀ ତିଥିରେ ପ୍ରାତଃ କର୍ମ ସାରି ନଦୀକୂଳେ ଯଜ୍ଞୋପବୀତ ଧାରଣ କରି ଧ୍ୟାନରେ ବସିଲେ । ସେହି ଧ୍ୟାନରେ ସେ ପରଂବ୍ରହ୍ମଙ୍କ ସଙ୍ଗରେ ଲୀନ ହୋଇଗଲେ । ତାଙ୍କ ନାମରେ ଗଙ୍ଗାଧର ମେହେର କଲେଜରେ ଏକ ଛାତ୍ରାବାସ ନିର୍ମିତ ହୋଇଛି । ଡାକ୍ତର ହିସାବରେ କାହାଗିଠାରୁ ଫିସ୍ ଦାବି କରିନାହାନ୍ତି । ଯିଏ ଯାହା ଦେଲା କଂପାଉଣ୍ଡରଙ୍କୁ ଦେବେ ।

ଦାଲିବନ୍ଧାରେ ୬ ମାସ ରହିଲା ପରେ ମୁଁ ଫାଟକ ପାଖରେ ଆଠ କଲୋନୀରେ ଗୋଟିଏ ଭଡ଼ାଘରେ ରହିଲି । ମୋର ସ୍ତ୍ରୀ, ବଡ଼ଝିଅ ଓ ସଙ୍ଗରେ ଶାଶୁ ଆସିଥିଲେ । ଆଜବେଷ୍ଟସ ଘର ଦୁଇବଖରା । ଇଲେକ୍‌ଟ୍ରିକ୍ ନାହିଁ । ପାଣିପାଇଁ ଗୋଟିଏ କୂଅ । ୨୦୦ ଲୋକ ନିର୍ଭର । ବହୁତ ଜଳକଷ୍ଟ । ପାଣିଭାର ଟ୨/- । ଯାହାହେଉ ଯେକୌଣସି ମତେ ୩ ବର୍ଷ ସେଠାରେ କଟାଇଲୁ ଅତି କଷ୍ଟରେ ମାତ୍ର ମନଖୁସିରେ । ୧୯୫୬ ମସିହାରେ ପୁଣି କଟକ ବଦଳି ହୋଇଗଲା । ମୋର ପରିବାର ଯାମସେଦପୁର ଚାଲିଗଲେ । ମୁଁ ଓ ମୋର ପିତା ଅତି କଷ୍ଟରେ ଅଳ୍ପ କେତେ ଖଣ୍ଡ ଜିନିଷ ଗୋଟିଏ ଜିପ୍‌ରେ ଲଦି ଟାଇଚେର ଗାଡ଼ିରେ କଟକ ଆସିଲୁ । ରାତିସାରା ଅନିଦ୍ରା । ଭୀଷଣ ବର୍ଷା ବାଟସାରା ଛେଚୁଛି ।

# ଗ୍ରାମ ପଞ୍ଚାୟତ ବିଭାଗ

କଟକରେ ମାତ୍ର ୬ ମାସ ରହିବା ପରେ ବଦଳି ହେଲା ଭୁବନେଶ୍ବରକୁ ଗ୍ରାମପଞ୍ଚାୟତ ବିଭାଗକୁ । ଡିରେକ୍ଟର ଥିଲେ ସ୍ୱନାମଧନ୍ୟ ସାହିତ୍ୟିକ ପ୍ରଗଳ୍‌ଭ ବକ୍ତା ସ୍ୱର୍ଗୀୟ ପ୍ରାଣନାଥ ମହାନ୍ତି । ସେ ବିଭାଗରେ ନିକଟରେ ଆରମ୍ଭ ହୋଇଥାଏ Community Development Department । କେନ୍ଦ୍ରମନ୍ତ୍ରୀ ଥାନ୍ତି ଡଃ. ଏସ.କେ. ଦେ, ପ୍ରଧାନ ମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁ । ତିନି ସ୍ତରୀୟ ପଞ୍ଚାୟତରାଜ । ଜିଲ୍ଲା ପଞ୍ଚାୟତ ସମିତି, ବ୍ଲକ ପଞ୍ଚାୟତ ସମିତି ଏବଂ ଗ୍ରାମ ପଞ୍ଚାୟତ୍ ।

ସ୍ୱର୍ଗୀୟ ପ୍ରାଣନାଥ ମହାନ୍ତି ଅତି ଦୂରଦ୍ରଷ୍ଟା । ବିଦ୍ୱାନ ଲୋକମାନଙ୍କୁ ବହୁତ ଆଦର ଓ ଶ୍ରଦ୍ଧା କରୁଥିଲେ । ମୋର ଯୋଗ ଦେବାର ଏକ ମାସ ମଧ୍ୟରେ ମୁଖ୍ୟମନ୍ତ୍ରୀ ସଦାଶିବ ତ୍ରିପାଠୀଙ୍କ ନିଜ ଗ୍ରାମ ନବରଙ୍ଗପୁରଠାରେ ଏକ ଜିଲ୍ଲା ସ୍ତରୀୟ ଗ୍ରାମ ପଞ୍ଚାୟତ ସମ୍ମିଳନୀର ଆୟୋଜନ କରିଥିଲେ । ବହୁତ ସରପଞ୍ଚ, ୱାର୍ଡ଼ ମେମ୍ବର ଏବଂ

ଜନସାଧାରଣ ଯୋଗ ଦେଉଥିଲେ । କେବଳ ପଞ୍ଚାୟତର କର୍ମକର୍ତ୍ତାମାନଙ୍କ ପାଇଁ ଏକ ଭଲ ଭୋଜି କରାଯାଇଥିଲା । ମୁଖ୍ୟମନ୍ତ୍ରୀ ଶ୍ରୀ ସଦାଶିବ ତ୍ରିପାଠୀ ଏଥିରେ ଖୁସି ହେଲେ । ସବୁ ଜିଲାରେ ବର୍ଷକୁ ଥରେ ଲେଖାଏଁ ସମ୍ମିଳନୀ ଡକାଇବା ପାଇଁ ନିର୍ଦ୍ଦେଶ ଦେଲେ । ଲୋକେ ଆସିଲେ ପ୍ରାୟ ୧୦୦ । ଦୁଇଦିନ ସମ୍ମିଳନୀ ହେବ । ସକାଳେ ଚା ଜଳଖିଆ, ୧୦ଟା ବେଳକୁ ଆରମ୍ଭ । ଆଲୋଚନା ଦିନ ୧ଟା ପର୍ଯ୍ୟନ୍ତ ଚାଲିବ । ଜିଲାପାଳ ଓ ଏସ.ଡ଼ି.ଓ. ମାନେ ନିଶ୍ଚୟ ଯୋଗଦେବେ । ସରପଞ୍ଚମାନେ ସେମାନଙ୍କର ସୁବିଧା ଅସୁବିଧା କହିବେ । ଯେଉଁ ଯୋଜନାମାନ କାର୍ଯ୍ୟକାରୀ କରାଯାଉଛି ତାହାର ତର୍ଜମା କରାଯିବ । ସେଥି ମଧ୍ୟରୁ ୫ଟା ଯୋଜନା କୃଷି ଉତ୍ପାଦନ ପାଇଁ । Bone Digester ବା ହାଡ଼ଗୁଣ୍ଡ ତିଆରି କରିବା ଓ ଗ୍ରାମରେ ନାମମାତ୍ର ମୂଲ୍ୟରେ ବିତରଣ କରିବା, ଧନିଚା ଚାଷ, ହାଇପୋମିଆ ବା ଅମରିଗଛ ବାଡ଼ ପାଇଁ ଲଗାଇବା, କମ୍ପୋଷ୍ଟ ଖତ ଓ ରାସାୟନିକ ସାର ପ୍ରୟୋଗ କରିବା, ଜାପାନୀ ପ୍ରଣାଳୀରେ ଚାଷର ପ୍ରଚାର କରିବା ଇତ୍ୟାଦି । ପଞ୍ଚାୟତର ନିଜର କାର୍ଯ୍ୟ, ଯଥା- ମାଛଚାଷ, ଗ୍ରେନ୍‌ଗୋଲା ବା ଧାନ ଗୋଲା ଯୋଜନାରେ ପ୍ରତି ପଞ୍ଚାୟତରେ ଏକ ବା ଅଧିକ ଗୋଲା ଘର ସ୍ଥାପନ କରି ଲୋକଙ୍କ ପାଖରୁ ଧାନ କିଣି ରଖିବା ଓ ଆବଶ୍ୟକ ବେଳେ ଧାନ କିଣି ନିଅଣ୍ଟ ବେଳେ ଋଣ ସୂତ୍ରରେ ଦେବା । ମୋର କାର୍ଯ୍ୟ ହେଲା ପଞ୍ଚାୟତ ସେକ୍ରେଟେରୀମାନଙ୍କୁ ହିସାବ ରଖିବା ପ୍ରଣାଳୀ କାମ ଶିଖାଇବା ତଥା ହିସାବ ରଖିବାକୁ କଡ଼ାକଡ଼ି ଭାବେ ପ୍ରଯୁଜ୍ୟ କରିବା । ଏଥିରେ କେତୋଟି ପ୍ରଧାନ କଥା ହେଲା Cash ବହି ଦୈନନ୍ଦିନ ଲେଖିବା । ପ୍ରତ୍ୟେକ Receipt ଏବଂ Payment ପାଇଁ Receipt ଏବଂ Voucher ଦେବା । ସମସ୍ତଙ୍କର କ୍ଷମତା ନିର୍ଦ୍ଧାରଣ କରିବା ଓ ବର୍ଷରେ ଥରେ ଗ୍ରାମସଭା ଡକାଇବା । ସରକାରଙ୍କ କୃଷି ଯୋଜନାଗୁଡ଼ିକର କାର୍ଯ୍ୟକାରିତା ସମ୍ବନ୍ଧରେ ତର୍ଜମା କରିବା । ଏହିପରି ବହୁତ କାର୍ଯ୍ୟ ଦିଆଯାଇଥାଏ । ଶ୍ରୀଯୁକ୍ତ ପ୍ରାଣନାଥ ମହାନ୍ତି ମୋତେ ସମ୍ବଲପୁରକୁ ଦ୍ୱିତୀୟବାର ବଦଳି କରିଥିଲେ । ପ୍ରାୟ ଅଢ଼େଇବର୍ଷ ସମ୍ବଲପୁରରେ ଆସିଷ୍ଟାଣ୍ଟ ଡିରେକ୍ଟର ଭାବେ କାମ କରିଥିଲି । ସେତେବେଳକୁ ୨/୪ଟି ପଞ୍ଚାୟତ ସେମିନାରରେ ଯୋଗଦେଇ ଦେବଗଡ଼, ମୟୁରଭଞ୍ଜର ଉଦଳା ପ୍ରଭୃତି ସ୍ଥାନରେ ଡିରେକ୍ଟରମାନଙ୍କ ସଙ୍ଗରେ ଯାଇ ଭବ୍ୟ ସମ୍ବର୍ଦ୍ଧନା ପାଇଛି । ଏଠାରେ ମୁଁ କେତେଗୁଡ଼ିଏ ପ୍ରଧାନ ପ୍ରଧାନ ସ୍ମରଣୀୟ ଘଟଣା ଉଲ୍ଲେଖ କରୁଛି ।

ସମ୍ବଲପୁରର ନିକଟବର୍ତ୍ତୀ ମାନେଶ୍ୱର ଗ୍ରାମର ଜଣେ ଆଦିବାସୀ ଯୁବକ ମୋ ପାଖରେ ଆସି ହାଜର ହେଲା । ମୁଁ ପଚାରିଲି, କଅଣ କାମ ? ସେ କହିଲା, "ମୁଁ

ଆଜ୍ଞା ମାନେଶ୍ୱର ଗାଁ ନିକଟର ବାସିନ୍ଦା । ମୁଁ ୬ ମାସ ପୂର୍ବରୁ ମୋର କନିଆକୁ ଆଣି ବିହା ହୋଇଥିଲି । ସେ କନିଆ ସଙ୍ଗେ ଭଲ ପଟୁଥିଲା । ମାତ୍ର ମୋର ଶ୍ୱଶୁର ଆଉ ଗୋଟିଏ ଲୋକଠାରୁ ବେଶୀ ଟଙ୍କା ଆଣି ମୋର କନିଆକୁ ମୋ ଘରୁ ନେଇଗଲା । ଏଇ ଦୁଇ ଚାରି ଦିନ ଭିତରେ ମୋର କନିଆ ମୋ ଶଶୁର ଘରୁ ଆଉ ଗୋଟିଏ ଲୋକ ଘରକୁ ଚାଲିଯିବ । ଆପଣ ମୋତେ ସାହାଯ୍ୟ କରନ୍ତୁ ।'' ମୁଁ ଉତ୍ତର ଦେଲି, ମୋର ଫାମିଲି କେସ୍ ବୁଝିବା ପାଇଁ କୌଣସି କ୍ଷମତା ନାହିଁ । ମାତ୍ର ମୁଁ ତୁମକୁ ଗୋଟିଏ ପରାମର୍ଶ ଦେଉଛି । ମାନେଶ୍ୱରର ସରପଞ୍ଚ ପୁରୋହିତ ବାବୁଙ୍କୁ ଯାଇ ମୋ ନାମ କହିବ । ତୁମେ ତାଙ୍କ ପାଖକୁ ଯାଇ ସବୁକଥା ବୁଝାଇ ଦେବ । ସେ ଯଦି ସାହାଯ୍ୟ କରିପାରିବେ ନିଶ୍ଚୟ କରିବେ ।

ମୁଁ ସେ କଥା ଭୁଲିଯାଇଛି । ବୋଧହୁଏ କିଛି ହେଲା ନାହିଁ ବୋଲି ଭାବିଲି ।

ତିନିଦିନ ପରେ ସେହି ଯୁବକ ସକାଳ ୧୧ଟା ବେଳକୁ ଆସିଲା । ହସି ହସି ଲମ୍ବ ହୋଇ ସାଷ୍ଟାଙ୍ଗ ପ୍ରଣିପାତ କଲା । ହାତରେ ଗୋଟିଏ ଛୋଟ ମିଠା ପ୍ୟାକେଟ୍ । ଉଠି ହାତ ଯୋଡ଼ି କହିଲା, ''କାମ ହୋଇଗଲା ଆଜ୍ଞା, ହୋଇଗଲା । ମୋର କନିଆ ମୋ ପାଖକୁ ଫେରି ଆସିଲା । ମୁଁ ସରପଞ୍ଚଙ୍କୁ କହିବାରୁ ସେ ମୋର ଶ୍ୱଶୁରଙ୍କୁ ଡକାଇଲେ । ସେମାନେ ସମସ୍ତେ ଶ୍ୱଶୁର ଘରକୁ ଗଲେ । କନିଆକୁ ପଚାରିଲେ ତୋତେ କଅଣ ବର ଖାଇବା ପିଇବାକୁ ଦେଉନାହିଁ । ମାଡ଼ ଛାଟ ଦେଉଛି ଓ ଦୁର୍ବ୍ୟବହାର କରୁଛି ? ସେ କହିଲା, ନାହିଁ, ମୋର କିଛି ଅସୁବିଧା ନାହିଁ । ତେବେ ତୁ ତାକୁ ଛାଡ଼ି ଆଉଜଣକ ଘରକୁ କାହିଁକି ଯିବୁ ? ସେ ଉତ୍ତର ଦେଲା, ମୁଇଁ ନେହି ଜାନି ? ତେବେ ତୁ ପୂର୍ବ ଗେରସ୍ତ ପାଖେ ରହିବୁ । ସେ ଓଢ଼ଣା ଟାଣି ମୁରୁକି ହସି ମୁଣ୍ଡ ଟୁଙ୍ଗାରିଲା ।

ଝିଅର ବୟସ ୧୮ ବର୍ଷରୁ ଉର୍ଦ୍ଧ୍ୱ । ଆଇନ ଅନୁସାରେ ସାବାଳକ ଝିଅର ବିବାହ ପୂର୍ବରୁ ମତାମତ ନେବା ଉଚିତ । ତେଣୁ ଗାଁ ବାଲା ସମସ୍ତେ କହିଲେ ନାହିଁ ଝିଅ ଆଉ ଦ୍ୱିତୀୟ ବିବାହ କରିବ ନାହିଁ । ଗାଁ ବାଲା ସମସ୍ତେ, ସରପଞ୍ଚ ଓ ଝିଅର ବାପ ମା ସଂକୀର୍ତ୍ତନ କରି ଝିଅକୁ ଆଣି ତାର ସ୍ୱାମୀ ପାଖରେ ଛାଡ଼ିଦେଲେ । ଦେଖନ୍ତୁ, ଏତେ ଜଟିଳ ବୈବାହିକ ମତଭେଦ ଓ ଗଣ୍ଡଗୋଳ ଅତି ସହଜରେ ସମାଧାନ ହୋଇଗଲା । କୋର୍ଟକୁ ଗଲେ ବର୍ଷ ବର୍ଷ ଧରି ମକଦ୍ଦମା ଗଡ଼ି ଚାଲିଥାଆନ୍ତା । ଦରିଦ୍ର ଲୋକଟି କନିଆ ପାଇଁ ସର୍ବସ୍ୱାନ୍ତ ହୋଇଯାଇଥାଆନ୍ତା ।

ବର୍ତ୍ତମାନ ଆରମ୍ଭ ହୋଇଥିବା ଲୋକ ଅଦାଲତ ଏବଂ ଫେମିଲି କାଉନ୍‌ସେଲିଂ ଠିକ୍ ଏହି ଆପୋଷ ସମାଧାନ ପରି ଏକ ସହଜ ସୁଗମ ପନ୍ଥା ଗ୍ରହଣ କଲେ ବନ୍ଧୁ

ପାରିବାରିକ ମକଦ୍ଦମା କୋର୍ଟକୁ ଯାଆନ୍ତା ନାହିଁ । ସେତେବେଳେ ସାଧାରଣ ଲୋକର ସାଧୁତା ଅତି ଉଚ୍ଚକୋଟୀର ଥିଲା ।

ମୁଁ ଥରେ ବଉଦ ସବ୍-ଡିଭିଜନ୍‌ର କଣ୍ଟମାଳ ବ୍ଲକ୍‌ର ଗୋଟିଏ ଗ୍ରାମକୁ ବୈଶାଖ ମାସର ଦିନ ୧୨ଟା ବେଳେ ସେଠାକାର ପଞ୍ଚାୟତ ଅଫିସରଙ୍କୁ ସାଙ୍ଗରେ ନେଇ ସରପଞ୍ଚ ଘରକୁ ଯାଇଥିଲି । ପଞ୍ଚାୟତର ସ୍ୱତନ୍ତ୍ର ଗୃହ ନଥିଲା । ସରପଞ୍ଚ ଘରେ ନଥିଲେ । ତାଙ୍କ ସ୍ତ୍ରୀଙ୍କୁ ଆମେ କହିଲୁ ଆମେ ପଞ୍ଚାୟତ ବିଭାଗରୁ ଆସିଛୁ । ସ୍ତ୍ରୀ କହିଲେ ସ୍ୱାମୀ ହଳ କରିବାକୁ ବିଲକୁ ଯାଇଛନ୍ତି । ଆଉ ୨ଘଣ୍ଟା ପରେ ଆସିବେ । ଆପଣ କାହିଁକି ଆସିଚନ୍ତି ? ''ଆମେ କ୍ୟାସ ଦେଖିବାକୁ ଚାହୁଁ ।'' ସ୍ତ୍ରୀ କହିଲେ କ୍ୟାସ ତ ମୋ ପାଖରେ ପେଡ଼ିରେ ଅଛି । ଆପଣ ଟିକିଏ ବସନ୍ତୁ । ଏହାକହି ବାରଣ୍ଡାରେ ସପଟିଏ ପକାଇ ଗୋଟିଏ ଢାଳରେ ପାଣି ଢାଳେ ଏବଂ ଗ୍ଲାସଟିଏ ଆଣି ଥୋଇଲେ ।

କିଛି ସମୟ ପରେ ସେ କ୍ୟାସ ବହି ଏବଂ ଟଙ୍କା ଡବା ଆଣି ଥୋଇଦେଲେ । ଗଣି ହିସାବ କରି ଦେଖିଲୁ । କ୍ୟାସ ବହି ଅନୁସାରେ ନଗଦ ତହବିଲ୍ ଟଙ୍କା ଅଣା ପର୍ଯ୍ୟନ୍ତ ପୂରା ଠିକ୍ । ଆମେ ଆଶ୍ଚର୍ଯ୍ୟ ହେଲୁ । ଦରିଦ୍ର ଆଦିବାସୀ ଜଣକ ତାର ସ୍ତ୍ରୀର ହାତରେ ଏତେ ସରକାରୀ କ୍ୟାସର ଦାୟିତ୍ୱ ଦେବା ପ୍ରଶଂସାର କଥା । ଆଜିକାଲି ତାହା ସ୍ୱପ୍ନ ପରି ଲାଗେ । ଏହିପରି ଘଟଣାର ସ୍ମୃତି ମୋ ମନରେ ଜାଗ୍ରତ ଅଛି । ୧୯୫୬ ମସିହାରେ ସୌରାଷ୍ଟ୍ରର (ସେତେବେଳେ ମହାରାଷ୍ଟ୍ର ରାଜ୍ୟରେ ଥିଲା) ଓଡ଼ିଶାରେ ପଞ୍ଚାୟତ ସୁଚାରୁ ରୂପେ ଚାଲିଛି ଖବର ପାଇ ପ୍ରାୟ ୪୦ ଜଣ ମୁଖିଆ ଲୋକ ଅନୁଧ୍ୟାନ କରିବାକୁ ଗୋଟିଏ ବସ୍‌ରେ ଆସିଥିଲେ । ସେମାନଙ୍କୁ ଓଡ଼ିଶା ମଧ୍ୟପ୍ରଦେଶ ସୀମାରେ ପାଛୋଟି ଆଣି ଅତି ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଦିଆଯାଇଥିଲା । ସେମାନେ ଢେଙ୍କାନାଳ-ସମ୍ବଲପୁର ଜିଲ୍ଲା ସୀମାରେ ଅବସ୍ଥିତ ବଇଣ୍ଡାଠାରେ ଦୁଇଦିନ ରହି ବହୁତ ପଞ୍ଚାୟତ ପରିଦର୍ଶନ କରି ପ୍ରୀତ ହୋଇଥିଲେ । ତାଙ୍କର ସମସ୍ତ ଖର୍ଚ୍ଚ ନିକଟବର୍ତ୍ତୀ ପଞ୍ଚାୟତମାନେ ବହନ କରିଥିଲେ । ଗଲାବେଳେ ଟଙ୍କା ଯାଚିବାରୁ ଆମର ମୁଖ୍ୟଲୋକମାନେ ଅତି ବିନମ୍ର ଭାବରେ ହାତଯୋଡ଼ି କହିଲେ, ''ଆଜ୍ଞା, ଅତିଥି ହେଉଛନ୍ତି ଆମର ପରମ ଦେବତା । ଏହା ମହାପ୍ରଭୁ ଜଗନ୍ନାଥଙ୍କ ରାଜ୍ୟ । ଅତିଥି ସେବା ହେଉଛି ଆମର ଧର୍ମ । ତେଣୁ କ୍ଷମା କରନ୍ତୁ, ଆପଣ ଟଙ୍କା ଯାଚି ଆମକୁ ଲଜ୍ଜା ଦିଅନ୍ତୁ ନାହିଁ ।'' ସେମାନେ ଗଭୀର କୃତଜ୍ଞତା ଜ୍ଞାପନ କରି ଫେରିଗଲେ । ଏହିପରି ଅତି ଆନନ୍ଦରେ ମୋର ଦୁଇବର୍ଷରୁ ଊର୍ଦ୍ଧ୍ୱ ପଞ୍ଚାୟତ ବିଭାଗରେ କଟିଗଲା ।

# ମୋର ଟ୍ରେନିଂରେ ଯିବା

ବର୍ତ୍ତମାନ ଚାକିରୀ ମଝିରେ ଟ୍ରେନିଂ ଯିବା ପ୍ରଥା ପ୍ରବର୍ତ୍ତିତ ହୋଇଛି । ଏହା ମିଃ ରାମକ୍ରିଷ୍ଣାୟା ପ୍ରଥମେ ପ୍ରବର୍ତ୍ତନ କରାଇଥିଲେ । ଫାଇନାନ୍ସ ବିଭାଗରେ ଦକ୍ଷତା ଏବଂ କାର୍ଯ୍ୟ କରିବାର ପରିସର ବୃଦ୍ଧିକରିବା ବିଷୟରେ ପୂର୍ବତନ ଫାଇନାନ୍ସ ସେକ୍ରେଟେରୀ ଶ୍ରୀ ଏମ. ରାମକ୍ରିଷ୍ଣାୟାଙ୍କ ଅବଦାନ ଅତୁଳନୀୟ । ସେକ୍ରେଟେରୀଏଟ୍‌ରେ ବଡ଼ ବଡ଼ ଖର୍ଚ୍ଚ ଡିପାର୍ଟମେଣ୍ଟରେ ଜଣେ ଜଣେ FA-Cum Dy. Secretary ଅବସ୍ଥାପନ କରି ଅର୍ଥନୀତିକୁ କଣ୍ଟ୍ରୋଲ କରିବା ପାଇଁ ମି. ରାମକ୍ରିଷ୍ଣାୟା ୪ଜଣ ସିନିୟର ଅଫିସରଙ୍କୁ ମନୋନୀତ କଲେ । ସେମାନେ ହେଲେ ମିଃ ଏସ୍.କେ. ଦାସ୍, ଶ୍ରୀ ପି.ସି. ରାୟଗୁରୁ, ମୁଁ ଏବଂ ଶ୍ରୀ ଜି.ସି.ପାତ୍ର । ଟ୍ରେନିଂର ଦାୟିତ୍ୱ ନେଲେ Account Training School ର ପ୍ରିନ୍‌ସିପାଲ Mr. A. Arthur । ପ୍ରିନ୍‌ସିପାଲ୍ ସାହେବ ଜଣେ ଦକ୍ଷ A.G. ଅଫିସ୍‌ର ବୟସ୍କ ଲୋକ । ୬ ମାସ ଖୁବ୍ କଡା ଟ୍ରେନିଂ । ସେଥିରେ Finance Deptt., Heads of Dept, PWD Office, Forest Divison, AG Office, ଗୋଟିଏ India Govt ର Public Sector Undertaking ଅନ୍ତର୍ଭୁକ୍ତ । ଶେଷଟି ପାଇଁ ଆମ୍ଭେମାନେ Mr. Arthur ଙ୍କ ସଙ୍ଗେ Sindhri Fertiliser କୁ ଯାଇଥିଲୁ । ସେମାନେ ଆମ୍ଭମାନଙ୍କୁ ରହିବା ପାଇଁ ଗେଷ୍ଟ ହାଉସ୍ ଯୋଗାଇ ଦେଇଥିଲେ । କେଣ୍ଟିନ୍‌ରୁ ଖିଆପିଆ । ଏ.ଜି. ଅଫିସ୍ ସେତେବେଳେ ରାଞ୍ଚିରେ ଥାଏ । ସେଠାକୁ ଯାଇଥିଲୁ । ଶେଷରେ Puri, DAG office, ଯେଉଁଠାରେ GPF ଏବଂ PWD Accounts Section ଗୁଡ଼ିକ ଥାଏ ସେଠାକୁ ଯାଇ ଫେରିଲୁ । ଶେଷରେ ପରୀକ୍ଷା ହେଲା । ଉଭୟ ଲିଖିତ ପରୀକ୍ଷା ଏବଂ ମୌଖିକ ପରୀକ୍ଷା । ପ୍ରଥମେ ସମସ୍ତେ ମନା କରୁଥିଲେ ପରୀକ୍ଷା ଦେବାକୁ । ସେକ୍ରେଟେରୀ ବୁଝାଇଲା ପରେ ପରୀକ୍ଷାରେ ବସିଲୁ । ପରଦିନ ଖୋଦ୍ ଫାଇନାନ୍ସ ସେକ୍ରେଟେରୀ, ପ୍ରିନ୍ସିପାଲ ଏବଂ ଆଉଜଣେ ଶିକ୍ଷକ ସ୍ୱର୍ଗତଃ ବାରାନିଧି ବେହେରା ଥିଲେ । ମୌଖିକ ପରୀକ୍ଷା ପ୍ରାୟ ଅଧଘଣ୍ଟାଏ ପର୍ଯ୍ୟନ୍ତ । ଶ୍ରୀଯୁକ୍ତ ରାମକ୍ରିଷ୍ଣାୟା ଆନ୍ଧ୍ରପ୍ରଦେଶର ଗୁଣ୍ଟୁର ଜିଲ୍ଲାର ଲୋକ । ପୂର୍ବରୁ ବମ୍ବେରେ ଏ.ଜି. ଅଫିସ୍‌ରେ Indian Accounts Serviceରେ କିଛିବର୍ଷ କାମ କରି ପରେ ପରୀକ୍ଷା ଦେଇ ଆଇ.ଏ.ଏସ୍. କ୍ୟାଡ଼ରକୁ ଆସିଥିଲେ । ପରୀକ୍ଷାରେ ମୁଁ ପ୍ରଥମ ସ୍ଥାନ ଅଧିକାର କଲି । ସେକ୍ରେଟେରୀ ଓ ପ୍ରିନ୍‌ସିପାଲ ମୋ ଉପରେ ବହୁତ ସନ୍ତୁଷ୍ଟ ହୋଇଥିଲେ । ତାପରେ ଆମେ ବିଭିନ୍ନ ବିଭାଗରେ ଅବସ୍ଥାପିତ

ହେଲୁ । ଏହପରି ଉଭୟ ଦୁଃଖ କଷ୍ଟ ଏବଂ ଆନନ୍ଦ ମିଶ୍ରିତ ବନ୍ଧୁମିଳନରେ ଟ୍ରେନିଂ ସମୟ ଅତିବାହିତ ହୋଇଥିଲା । ସେ ବିଷୟ ସ୍ମୃତିରେ ଆସିଲେ ମନ ଆନନ୍ଦରେ ଭରିଯାଏ । ତାପରେ ମୁଁ ଆଦିବାସୀ ଗ୍ରାମମଙ୍ଗଳ ବିଭାଗରେ ଅବସ୍ଥାପିତ ହେଲି ।

## ଆଦିବାସୀ ଓ ଗ୍ରାମମଙ୍ଗଳ ବିଭାଗ

ଆଦିବାସୀ ଓ ଗ୍ରାମମଙ୍ଗଳ ବିଭାଗରେ ୨ ବର୍ଷ କାମ କରିବାର ସୁଯୋଗ ପାଇଛି । ସ୍ୱର୍ଗତଃ ପଦ୍ମନାଭ ମିଶ୍ର ତାହାର ଡେପୁଟି ସେକ୍ରେଟେରୀ ଓ ଡିରେକ୍ଟର ଥିଲେ । ଆଦିବାସୀ ବିଭାଗକୁ ରୂପରେଖ ଦେବା ଓ ଲୋକଲୋଚନକୁ ଆଣିବା ପାଇଁ ସ୍ୱର୍ଗତ ଚିନ୍ତାମଣି ମିଶ୍ର ବହୁତ କାମ କରିଥିଲେ । ସେବାଶ୍ରମ, ଆଶ୍ରମ ସ୍କୁଲ୍, କନ୍ୟାଶ୍ରମମାନ ପ୍ରତିଷ୍ଠା କରାଇଲେ । ଭୁବନେଶ୍ୱରରେ ଆଦିବାସୀ ଛାତ୍ରମାନଙ୍କୁ ଶିକ୍ଷା ଦେବାପାଇଁ ଗୋଟିଏ ସ୍କୁଲ୍ ଓ ଗୋଟିଏ ହଷ୍ଟେଲ, ଗୋଟିଏ ଆଦିବାସୀ ପ୍ରଦର୍ଶନୀ ମଣ୍ଡପ ଏବଂ ଅଫିସ୍ ଓ ବର୍ଷକେ ଥରେ ଜାନୁଆରୀ ୨୬ ତାରିଖ ଠାରୁ ଏକ ସପ୍ତାହ ଆଦିବାସୀ ମେଳା ଏବଂ ଜିଲ୍ଲାସ୍ତରୀୟ ଷ୍ଟଲ ଆରମ୍ଭ କରିଥିଲେ ।

ଏସବୁର ଆବଶ୍ୟକତା କଅଣ ? ଓଡ଼ିଶାର ଶତକଡ଼ା ୨୩ ଭାଗ ହେଉଛନ୍ତି ଆଦିବାସୀ । ୧୫% ହେଉଛନ୍ତି ହରିଜନ ସଂପ୍ରଦାୟ । ହରିଜନମାନଙ୍କ ଅବସ୍ଥା ଅପେକ୍ଷାକୃତ ଉନ୍ନତ । ମାତ୍ର ସେମାନେ ଉଚ୍ଚ ବର୍ଣ୍ଣର ଲୋକମାନେ ବସବାସ କରୁଥିବା ଗ୍ରାମମାନଙ୍କ ପଛ ପାଖରେ ଅସ୍ୱାସ୍ଥ୍ୟକର ଏବଂ ଅବହେଳିତ ପରିବେଶରେ ବସବାସ କରୁଥିଲେ ହେଁ ଆଦିବାସୀ ଲୋକେ ଘନ ବଣ ଜଙ୍ଗଲରେ ମନୁଷ୍ୟ ବଞ୍ଚି ରହିବାର ବହୁ ନିମ୍ନରେ ବସବାସ କରୁଛନ୍ତି । ସେମାନେ ଅତି ସରଳ, ନିରୀହ ଓ ନିରକ୍ଷର । ପାଠପଢ଼ା ନାହିଁ । ଅନ୍ୟ ବର୍ଗର ଲୋକେ, ଯଥା:- ସେଠାକାର ପାଣ ଓ ଅନ୍ୟ ଉଚ୍ଚ ଜାତି ତାଙ୍କୁ ଶୋଷଣ କରୁଛନ୍ତି । ଏହି ଜାତିର ମର୍ଦ୍ଦମାନେ ରୋଜଗାର କରନ୍ତି ନାହିଁ । ଯାହାକିଛି ରୋଜଗାର କରନ୍ତି ତାହା ମଦଭାଟିକୁ ଯାଏ ।

ସ୍ୱନାମଧନ୍ୟ ଜ୍ଞାନପୀଠ ବିଜେତା ମୋର ଜ୍ୟେଷ୍ଠଭ୍ରାତା ସଦୃଶ ସ୍ୱର୍ଗତଃ ଗୋପିନାଥ ମହାନ୍ତିଙ୍କ ରଚିତ 'ଅମୃତର ସନ୍ତାନ' ଏକ ଦୁର୍ଲଭ ଅବଦାନ । ସେଥିରେ ସେ ଆଦିବାସୀ ଜୀବନର ଧାରା, ପ୍ରଣାଳୀ, ତାଙ୍କ ସାମାଜିକ ଜୀବନ ପଦ୍ଧତି, ପରିବେଶ ଓ ଧର୍ମ ବିଶ୍ୱାସର ନିଖୁଣ ଚିତ୍ର ଦର୍ଶାଇଛନ୍ତି । ଆଦିବାସୀମାନେ କହନ୍ତି ''ଉପରେ ଧରମୁ ଦେବତା'', ''ତଳେ ଧରିତ୍ରୀ ମାତା'', ଏହାଙ୍କୁ ସାକ୍ଷୀ ରଖି ଆମେ ବଞ୍ଚିଛୁ । ଆମର

ଜୀବନ ଜଙ୍ଗଲ, ଜନ୍ତୁ, ମଶା ଡାଉଁଶ ଭରା କୁଡ଼ିଆ ଭିତରେ । ଜଙ୍ଗଲକୁ ଗଲେ ବାଘ ଭାଲୁର ଭୟ । ଦାରିଦ୍ର୍ୟ, ରୋଗ, ଶିକ୍ଷାର ଘୋର ଅଭାବ, କୁସଂସ୍କାର ଆଦିବାସୀ ସମାଜରେ ଅତି ମାତ୍ରାରେ ପ୍ରଚଳିତ । ଆପଣ କେବେ କଳିଙ୍ଗା ଘାଟି ଅତିକ୍ରମ କରି ଫୁଲବାଣୀର ବାଲିଗୁଡ଼ା, ଉଦୟଗିରି, ଟିକାବାଲି ଅଞ୍ଚଳକୁ ଯାଇଛନ୍ତି ? ୬୦ ବର୍ଷ ହେଲା ଭାରତ ସ୍ୱାଧୀନ ହେଲା ମାତ୍ର ସେମାନେ ପାଇଛନ୍ତି କଅଣ ? କାଗଜ କଲମରେ ବହୁତ ଅଙ୍କକଷା ଚାଲିଛି । ଏଣେ ନକ୍ସଲ ଉପଦ୍ରବ ଏବଂ ଅଶାନ୍ତି ବଢ଼ି ବଢ଼ି ଚାଲିଛି । ଉନ୍ନତି ଅତି ସାମାନ୍ୟ । ତାଙ୍କ ନାମରେ ସବୁ ରାଜନୈତିକ ଦଳ ଭୋଟ ନେଉଛନ୍ତି । ଭୋଟ ସରିଗଲା ପରେ ଆଉ କାହାରି ଦେଖା ଦର୍ଶନ ନାହିଁ ।

ଆଦିବାସୀ ଲୋକଗୁଡ଼ିକୁ ଦେଖିଲେ ମୋ ମନରେ ବହୁତ ଦୁଃଖ ଆସେ । ଆଖିରେ ଲୁହ ଆସିଯାଏ । ଏହି ଦାରିଦ୍ର୍ୟ ଏବଂ ଶିକ୍ଷାର ଅଭାବ ଯୋଗୁ ସଂପ୍ରଦାୟ ସଂପ୍ରଦାୟ ମଧ୍ୟରେ ଦଙ୍ଗା ହଣାମରା ।

ସେମାନଙ୍କର ସର୍ବାଙ୍ଗୀନ ଉନ୍ନତି ସକାଶେ ୧୯୫୫ ମସିହାରେ କୋରାପୁଟ ଜିଲ୍ଲାର ବୈପାରିଗୁଡ଼ା (ଜୟପୁରଠାରୁ ଦକ୍ଷିଣକୁ ୪୦ କିଲୋମିଟର ଦୂରରେ ବାବା ସାହେବ କାଲେଲକର ଏବଂ ଠକ୍କର ବାପାଙ୍କ ପ୍ରଚେଷ୍ଟାରେ ଏକ କେନ୍ଦ୍ର ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀଙ୍କ ଅମଳରେ ଖୋଲାଯାଇଥିଲା । ଶିକ୍ଷା, ସ୍ୱାସ୍ଥ୍ୟ, ଉପାର୍ଜନ କ୍ଷମତା ବୃଦ୍ଧି କରିବା, ଆଦିବାସୀ ସଂଗୃହୀତ ପଦାର୍ଥଗୁଡ଼ିକୁ ଉଚିତ ମୂଲ୍ୟରେ ବିକ୍ରି କରିବା ଉଦ୍ଦେଶ୍ୟରେ ଏହିପରି ଏକ ବହୁମୁଖୀ ଯୋଜନାର ପ୍ରାୟ ୫୦ ଜଣ ଦକ୍ଷ ଓ ସେବାପରାୟଣ କର୍ମୀଙ୍କୁ ନେଇ ଅତି ଉତ୍ସାହର ସହିତ ଆରମ୍ଭ କରିଥିଲେ । ସେମାନେ ତିନି ବର୍ଷ କାର୍ଯ୍ୟ କରି କିଛିଟା ଅଗ୍ରଗତି କରିଥିଲେ । ମାତ୍ର ନିମ୍ନ ଓ ମଧ୍ୟମ ସ୍ତରର ପ୍ରଶାସନ ଅଧିକାରୀ କୋପଦୃଷ୍ଟି ପକାଇ ସେମାନଙ୍କୁ ପୂର୍ଣ୍ଣ ଅସହଯୋଗ କଲେ ଏବଂ କାର୍ଯ୍ୟରେ ବ୍ୟାଘାତ ସୃଷ୍ଟିକଲେ । ତେଣୁ ସେମାନେ ବ୍ୟତିବ୍ୟସ୍ତ ହୋଇ ସେହି ଯୋଜନା ଏବଂ କେନ୍ଦ୍ର ବନ୍ଦ କରିଦେଲେ । ଗଲାପରେ ଗୋଟିଏ ପୁସ୍ତିକା ପ୍ରକାଶ କରିଥିଲେ "Why Sarva Seva Sangha failed" । ସେ ବହିଟି ପଢ଼ିଲେ ମନରେ କ୍ଷୋଭ ଆସେ ।

ସରକାରୀ କାର୍ଯ୍ୟରେ ମୁଁ ସେହି ଅଞ୍ଚଳକୁ ବହୁଥର ଯାଇଛି । ମୋତେ ଆଦିବାସୀ ଲୋକଙ୍କୁ ବହୁତ ଭଲଲାଗେ । ମୋର କ୍ଷୁଦ୍ର ମତରେ ସେମାନଙ୍କର ସର୍ବାଙ୍ଗୀନ ଉନ୍ନତି ପାଇଁ ଏନ.ଜି.ଓ. (ବେସରକାରୀ ରେଜିଷ୍ଟ୍ରିଭୁକ୍ତ ସଂସ୍ଥା) ଉପରେ ନ୍ୟସ୍ତ କରାଯାଉ ।

ଜିଲାପାଳମାନଙ୍କୁ ଏହାର ସଫଳତା ପାଇଁ ପୂର୍ଣ୍ଣ ଦାୟୀ କରନ୍ତୁ । ୫ ବର୍ଷ ରହିଲାପରେ ଫଳାଫଳକୁ ତର୍ଜମା କରି ପ୍ରମୋଶନ ଦିଆଯାଉ । ବଙ୍ଗଳା ଦେଶର ନୋବେଲ୍ ପ୍ରାଇଜ୍ ବିଜେତା ମହମ୍ମଦ ୟୁନୁସଙ୍କ ପ୍ରଦର୍ଶିତ ମାର୍ଗରେ ମାଇକ୍ରୋ ଫାଇନାନ୍ସ ପନ୍ଥାରେ ସେମାନଙ୍କର ଅବସ୍ଥାର ଉନ୍ନତି କରାନ୍ତୁ । ପ୍ରତି ପରିବାରକୁ ସ୍ୱଳ୍ପ ଋଣ ସ୍ୱଳ୍ପ ମିଆଦ ପାଇଁ ଦେଇ ସେମାନେ ମାସକୁ ମାସ କିଛି କିଛି ଟଙ୍କା ଭରଣା କରନ୍ତୁ । ସୁଧ ନାମମାତ୍ର । ଏହି ମାଇକ୍ରୋ ଫାଇନାନ୍ସ ସିଷ୍ଟମ୍ ଅନୁଧ୍ୟାନ କରି ଆମର ଏଠାରେ କାର୍ଯ୍ୟକାରୀ କରାନ୍ତୁ । ମହମ୍ମଦ ୟୁନୁସ ନାମକ ସେହି ବଙ୍ଗଳାଦେଶୀ ପ୍ରଫେସର ଏହି ଯୋଜନାରେ ପ୍ରଭୂତ ଉନ୍ନତି ସାଧନ କରିଛନ୍ତି । ଆମେ କାହିଁକି ଏହି ପ୍ରଚେଷ୍ଟା ନକରିବା ?

ଆଦିବାସୀଙ୍କ ଉନ୍ନତି କେବଳ ସରକାରୀ କର୍ମଚାରୀଙ୍କ ଜରିଆରେ ସମ୍ଭବ ନୁହେଁ । ଏନ.ଜି.ଓ., ମିସନାରୀମାନଙ୍କର ସହାୟତା ନେବା ଜରୁରୀ । ଦକ୍ଷ ଅଫିସରମାନଙ୍କୁ କଲେକ୍ଟର କରି ପଠାଯାଉ । ଆନ୍ଧ୍ରପ୍ରଦେଶର Health Scheme Arogya Shree ଆରମ୍ଭ କରି Mobile Hospital କାର୍ଯ୍ୟ କରାନ୍ତୁ । ଆଦିବାସୀମାନଙ୍କର ଉତ୍ପାଦିତ ସାମଗ୍ରୀର ଉପଯୁକ୍ତ Marketing ଏବଂ Pricing କରାନ୍ତୁ । ତେବେ ଯାଇ ସେମାନେ ଉତ୍ପାଦନ ବୃଦ୍ଧି କରିବାପାଇଁ ମନୋଯୋଗୀ ହେବେ ।

## ସମବାୟ ବିଭାଗ

ଗ୍ରାମ୍ୟ ଅର୍ଥନୀତିର ଉନ୍ନତି ସକାଶେ ସମବାୟ ସଂଗଠନ ଏବଂ ପଞ୍ଚାୟତ, ଆଦିବାସୀ ବିଭାଗର ସଂଗଠନକୁ ମଜବୁତ ନ କଲେ ଗ୍ରାମ ଲୋକମାନଙ୍କର ବିକାଶ ଅସମ୍ଭବ । ଏହି ସମବାୟ ବିଭାଗରେ Addl. Chief Audit Officer-cum - Joint Registrar ଭାବେ ମୁଁ କାର୍ଯ୍ୟ କରିବାର ଯେଉଁ ସୁଯୋଗ ପାଇଛି, ତାର ଅଭିଜ୍ଞତା ସଂକ୍ଷେପରେ ବର୍ଣ୍ଣନା କରିବି ।

ପଦ୍ମଭୂଷଣ ଡ.ରାଧାନାଥ ରଥ ସମବାୟ ବିଭାଗର ମନ୍ତ୍ରୀ ଥିଲାବେଳେ କଳାହାଣ୍ଡିର ଭବାନିପାଟଣା ସେଣ୍ଟ୍ରାଲ୍ ବ୍ୟାଙ୍କରେ ଗୋଟିଏ ବିରାଟ ଦୁର୍ନୀତି ଖବରକାଗଜରେ ପ୍ରକାଶିତ ହେଲା । ବ୍ୟାଙ୍କଟି ପତନୋନ୍ମୁଖୀ । ବନ୍ଦ ହେବା ଉପରେ । ଏହାର ତନ୍ନ ତନ୍ନ ଅଡ଼ିଟ୍ କରାଇ ୩ ମାସ ଭିତରେ ରିପୋର୍ଟ ଦେବାପାଇଁ ମୋତେ ସେହି ବିଭାଗକୁ ବଦଳି କଲେ । ମୁଁ ପ୍ରମୋଶନ ପାଇ ପ୍ରଥମେ ସେ ବିଭାଗକୁ ବଦଳି ହେଲି ।

ମୋତେ ବହୁତ ଡର ମାଡୁଥାଏ । ମାତ୍ର କର୍ତ୍ତବ୍ୟାନୁରୋଧରେ ମୋତେ ଯିବାକୁ ହେଲା । ମୋର ପିତା ଉପଦେଶ ଦେଇଥିଲେ, ''ଛାଡ଼ ପିତୃକାର୍ଯ୍ୟ, କର ରାଜକାର୍ଯ୍ୟ'' ।

ମୁଁ ଜଏନ୍ କରି ପ୍ରଥମେ ଭବାନୀପାଟଣା ଗଲି । ସେଠାକାର ଅଡ଼ିଟ୍ ଅଫିସର ସମବାୟ ବିଭାଗର ଅଫିସ୍ ଷ୍ଟାଫ୍‌ମାନଙ୍କ ସଙ୍ଗରେ ପୁଙ୍ଖାନୁପୁଙ୍ଖ ଆଲୋଚନା କଲି । ଯେଉଁ ଅନିୟମିତତା ଓ ଦୁର୍ନୀତି ହୁଏ, ତାହା ସ୍ଥାନୀୟ ଅଫିସ୍‌ର ସଂପୃକ୍ତ ମୁଖ୍ୟ କିରାନୀ ଏବଂ ସୋସାଇଟିର କର୍ମକର୍ତ୍ତାମାନେ ମିଶି କରିଥାଆନ୍ତି । କେତେଜଣ ଅଫିସର ଆଖି ଦେଖାଣିଆ ବଦଳି ହୋଇଯାନ୍ତି । ମାତ୍ର ଅସଲ ଦୋଷୀମାନେ ଛପି ଯାଇଛନ୍ତି । ମୁଁ ଦେଖିଲି ଭବାନୀପାଟଣା ସେଣ୍ଟ୍ରାଲ୍ କୋ-ଅପରେଟିଭ୍ ବ୍ୟାଙ୍କର ଲୋନ୍ ଅଫିସର ଧନପତି ସାହୁ ନାମକ ଜନୈକ ଲୋକ ବ୍ୟାଙ୍କ ଖାତାରେ କାରସାଦି କରି ଫଲସ୍ ଲୋନ୍ କାରବାର ୩ ବର୍ଷ ହେଲା Short term ଓ Medium Term କୃଷିଋଣ କୋଟି କୋଟି ଟଙ୍କା ଦେଖାଉଛନ୍ତି । Long term କେବଳ Land Mortage Bank ଦଲିଲ ଦେଖାଇ ଜମିବନ୍ଧା ପକାଇ ଦିଅନ୍ତି । ପ୍ରଥମ ଦୁଇ ପ୍ରକାର ଲୋନ୍ କେବଳ କୃଷିଋଣ ଅର୍ଥାତ୍ Crop Loan, ଚାଷୀମାନଙ୍କୁ ଚାଷ କାର୍ଯ୍ୟରେ ସହାୟତା କରିବା ପାଇଁ ଉଦ୍ଦିଷ୍ଟ । ବ୍ରିଟିଶ୍ ଶାସନ କାଳରୁ Lord Rippon ଙ୍କ ସମୟରୁ ପ୍ରଚଳିତ । ରିଜର୍ଭ ବ୍ୟାଙ୍କ Bank Rate ଠାରୁ ୨% କମ୍‌ରେ କୋ-ଅପରେଟିଭ୍ ସଂସ୍ଥାକୁ ଦେବ । State Co-operative Bank loan ଆଣି Central Co-operative Bank ମାନଙ୍କୁ ଦିଏ, ଯେପରିକି ଚାଷୀ ନେଲାବେଳକୁ Bank Rate ଅପେକ୍ଷା କମ୍ ସୁଧ ହାରରେ ଋଣ ମିଳିବ । ୧ ବର୍ଷ ସମଯ ମଧ୍ୟରେ ଋଣ ଓ ସାମାନ୍ୟ ସୁଧ ସହ ଫେରସ୍ତ ହେବ । କେତେକ ଜାଗାରେ ଏହା ଖୁବ୍ ସଫଳ ହୋଇଛି । ଯଥା:- ଗଂଜାମ ଜିଲ୍ଲା, ସମ୍ବଲପୁର ଜିଲ୍ଲା, କଟକ ଜିଲ୍ଲାର ବାଙ୍କୀ ସେଣ୍ଟ୍ରାଲ୍ କୋ-ଅପରେଟିଭ୍ ବ୍ୟାଙ୍କ । ମାତ୍ର କଟକ ଜିଲ୍ଲା ସର୍ବନିମ୍ନରେ ଅଛି ।

ସତ କହିବାକୁ ଗଲେ ସରକାରଙ୍କ ପ୍ରତି ଭୟ ନାହିଁ । ଅସାଧୁ କର୍ମକର୍ତ୍ତା, ଅଫିସର ଏବଂ ଷ୍ଟାଫ ସମସ୍ତେ କୁମନ୍ତ୍ରଣା କରି ମିଛ ନେଣ ଦେଣ (Transaction) ଦେଖାନ୍ତି । ଲୋକଙ୍କୁ ନେବାର ଦେଖାଇଲେ ପୁଣି ଚହିଁ ଆର ବର୍ଷ ସୁଧ ସହିତ ମୂଳ ଅସୁଲ ଦେଖାଇଲେ । ପୁଣି ଋଣ ଦିଆଗଲା ଓ ଅସୁଲ ହେଲା ବୋଲି ୨/୩ ବର୍ଷ ଦେଖାଇଲେ । ଏହିପରି ମିଛ ହିସାବରେ ସେମାନେ ସେ ଲୋକଠାରୁ କମିସନ୍ ପାଇଲେ । ଜମିବନ୍ଧା ନାହିଁ ବା କୌଣସି ଗ୍ୟାରେଣ୍ଟି ନାହିଁ । Balance Sheet ରେ ଦେଖା ହୋଇଛି

କୋଟି କୋଟି ଟଙ୍କା ଆଦାୟଯୋଗ୍ୟ ବା Receivable । ମାତ୍ର ବ୍ୟାଙ୍କ କିଛି ପାଇବ ନାହିଁ । କାରଣ ଲୋକ ମରିଛନ୍ତି ଗଲାଣି ଓ ଗ୍ୟାରେଣ୍ଟି ନାହିଁ । କୋର୍ଟରେ ୫ ବର୍ଷ କେସ୍ ଚାଲିବ । କେବଳ ଓକିଲ ପୋଷିହେବେ । ସବୁ ପରିଶ୍ରମ ବୃଥା । ବ୍ୟାଙ୍କର ଲକ୍ଷ୍ୟ ଚୂଲିକୁ ଗଲା ।

ଭବାନୀପାଟଣା ସେଣ୍ଟ୍ରାଲ୍ ବ୍ୟାଙ୍କର ଲୋନ୍ ଅଫିସର ଧନପତି ସାହୁ ବନିଗଲେ ଧନପତି କୁବେର, ମାତ୍ର ବ୍ୟାଙ୍କ ହୋଇଗଲା bankrupt । ମୁଁ ଗୋଟିଏ ୫୦ ପୃଷ୍ଠାର ସତ୍ୟ ଘଟଣା ଲେଖି ରିପୋର୍ଟ ଦେଲି । କେତେକ ଲୋକଙ୍କୁ ନାମମାତ୍ର ଚାକିରୀରେ ଦଣ୍ଡ ହେଲା ।

ଏହି ସମୟରେ ସ୍ୱନାମଧନ୍ୟ ବିଜୁ ପଟ୍ଟନାୟକ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହୋଇ ଆସିଲେ । ସେ ସବୁ ବିଭାଗୀୟ ସେକ୍ରେଟେରୀ, ଡାଇରେକ୍ଟର ବା ହେଡ୍ ମାନଙ୍କୁ ନେଇ ଚିଫ୍ ସେକ୍ରେଟେରୀ ଓ ମନ୍ତ୍ରୀମାନଙ୍କ ସହିତ ଗୋଟିଏ ମିଟିଂ ଡକାଇଲେ । ସେ ମିଟିଂ ଶାସନରେ ଏକ ଯୁଗାନ୍ତକାରୀ ପରିବର୍ତ୍ତନ ଆଣିଦେଲା ।

ପ୍ରତି ବିଭାଗର ସମୀକ୍ଷା ହେଲା । କେଉଁ ବିଭାଗ ପ୍ରଥମ ଯୋଜନା କାଳରେ ଅର୍ଥାତ୍ ୧୯୫୫ ରୁ ୬୦ ପର୍ଯ୍ୟନ୍ତ କେତେ ଟଙ୍କା ନେଇଛନ୍ତି, କେତେ ଖର୍ଚ୍ଚ କରିଛନ୍ତି, କି ଭଲକାମ ବା କେତେ ଅର୍ଥ ଅପଚୟ କରିଛନ୍ତି ଚିଫ୍ ସେକ୍ରେଟେରୀ ଶିବରମନ୍ ସାହେବ (Sri Siva Raman, I.C.S) ଙ୍କୁ ପଚାରିଲେ । ଦେଖାଗଲା ଯେ ସବୁଠାରୁ ଅପାରଗ ଓ ଦୁର୍ନୀତି ଗ୍ରସ୍ତ ଡିପାର୍ଟମେଣ୍ଟ ହେଉଛି କୋ-ଅପରେଟିଭ୍ ଡିପାର୍ଟମେଣ୍ଟ । ସେ ବିରକ୍ତ ହୋଇ ଅର୍ଡ଼ର କଲେ ଯେ ୪ ଜଣ ଅଫିସରଙ୍କୁ ସସ୍‌ପେଣ୍ଡ କର । ଆଜି ଅର୍ଡ଼ର ବାହାରିବ । ପରଦିନ କାର୍ଯ୍ୟରୁ ନିଲମ୍ବିତ ହୋଇଯିବେ । ଧରାଧରି କରିବା ଏବଂ ହିସାବ ଜାଲ କରିବାକୁ ସମୟ ପାଇବେ ନାହିଁ । ସ୍ଥାନୀୟ ଡେପୁଟୀ ରେଜିଷ୍ଟ୍ରାର ମାନେ ଚାର୍ଜ ନେବେ । କଟକ ଜିଲ୍ଲାର ଅପାରଗତା ମଧ୍ୟ ଅତି ମାତ୍ରାରେ ଥିଲା । ତେଣୁ ହେଡ୍ [illegible] ଜଣେ [illegible] ଅଫିସର ଯାଇ ଚାର୍ଜ ନେବେ । ଦୁଇମାସ ପାଇଁ ଏହି ବନ୍ଦୋବସ୍ତ ଚାଲୁ । ତାପରେ ଯୋଗ୍ୟ ଲୋକଙ୍କୁ ପ୍ରମୋଶନ ଦେଇ ସ୍ଥାନ ପୂରଣ ହେବ ଏବଂ ଅଡ଼ିଟ୍ ରିପୋର୍ଟ ବାହାରିଲା ପରେ ସସ୍‌ପେନ୍‌ସନ ବିଷୟ ବିଚାର ହେବ । ସେହି ଅନୁସାରେ ମୁଁ ତା ପରଦିନ ସକାଳେ ୧୧ଟା ସମୟରେ କଟକ ଅଡ଼ିଟ୍ ଅଫିସରଙ୍କ ଠାରୁ ଚାର୍ଯ ନେଇ କାର୍ଯ୍ୟଭାର ଗ୍ରହଣ କଲି । ସପ୍ତାହକୁ ଦୁଇଦିନ ସେଠାକୁ ଯିବି, ବାକି ଦିନ ମୋ ଉପରେ ନ୍ୟସ୍ତ କାର୍ଯ୍ୟ କରିବି । ସେତେବେଳେ Registrar

ଥିଲେ ସ୍ୱର୍ଗତ ଅଶୋକ ଚନ୍ଦ୍ର ବନ୍ଦ୍ୟୋପାଧ୍ୟାୟ, ଆଇ.ଏ.ଏସ୍। ପରେ ବିଦ୍ୟୁତ୍ ବୋର୍ଡ଼ରେ ତାଙ୍କ ସଙ୍ଗେ କାର୍ଯ୍ୟ କରିବାର ସୁଯୋଗ ମୁଁ ପାଇଛି । ସେ ଅତି ଉଚ୍ଚକୋଟୀର ଲୋକ ଓ ତାଙ୍କ ପ୍ରତି ମୋର ପ୍ରଗାଢ଼ ସମ୍ମାନ ।

ସମବାୟ ବିଭାଗଟି ଏକ ଅପାରଗ ଏବଂ ଦୁର୍ନୀତିଗ୍ରସ୍ତ ବିଭାଗ । କେବଳ ସେହି ବିଭାଗ ନୁହେଁ, ଓଡ଼ିଶାର ଅନେକ ବିଭାଗ ଏହିପରି । ସେମାନଙ୍କୁ ଠିକଣା ବାଟରେ ଚଲାଇବାକୁ ହେଲେ ସେହିପରି ସେବାମନୋବୃତ୍ତି ସଂପନ୍ନ ଦକ୍ଷ ଅଫିସର, ଦକ୍ଷ ମନ୍ତ୍ରୀ ଆବଶ୍ୟକ । ବର୍ତ୍ତମାନ ଦେଖନ୍ତୁ ଭୁବନେଶ୍ୱର କୋ-ଅପରେଟିଭ୍ ବ୍ୟାଙ୍କ, କଟକ କୋ-ଅପରେଟିଭ୍ ବ୍ୟାଙ୍କ, ଉତ୍କଳ କୋ-ଅପରେଟିଭ୍ ସୋସାଇଟି(ସରକାରୀ କର୍ମଚାରୀଙ୍କ ପାଇଁ) ଭଲ ଚାଲୁ ନାହିଁ । ପରିଚାଳନାରେ ଘୋର ବିଭ୍ରାଟ ।

ମୁଁ କେତୋଟି କୋ-ଅପରେଟିଭ୍ ଅନୁଷ୍ଠାନରେ ପ୍ରତ୍ୟକ୍ଷଭାବେ ଡିରେକ୍ଟର ବୋର୍ଡ଼ରେ ୩/୪ ବର୍ଷ କାର୍ଯ୍ୟ କରିଛି । ପ୍ରଥମରେ ହେଲା Capital Govt. Employ-ees Consumer Co.operative Society । ସଭାପତି ଥିଲେ ମୋର ଜ୍ୟେଷ୍ଠଭ୍ରାତା ସଦୃଶ ସ୍ୱର୍ଗତ ମଧୁସୂଦନ ପଟ୍ଟନାୟକ । ଜଳସେଚନ ଓ ବିଦ୍ୟୁତ୍ ବିଭାଗର ଡେପୁଟି ସେକ୍ରେଟେରୀ ସରକାରୀ ମୁଖ୍ୟ ମାର୍କେଟରେ ସ୍ପେଶାଲ କୋଟା ଚିନି, ଗହମ ଓ କିରୋସିନୀ ବିକ୍ରୀ କରୁଥିଲେ । ମାସିକ ଟ.୧୨୦୦୦ ବିକ୍ରୀ ହେଉ ନଥିଲା । ଦୋକାନ ବନ୍ଦ । ୬ ମାସ ମଧ୍ୟରେ ମାସିକ ବିକ୍ରୀ ଲକ୍ଷେ ଏବଂ ଦୁଇଲକ୍ଷ ପର୍ଯ୍ୟନ୍ତ ବଢ଼ିଗଲା । ଅତି ଡିରୋଟ ସମୟରେ ସବୁ ଜିନିଷ ମିଳୁଥିଲା । ଗରାଖଙ୍କର ଲମ୍ୱାଧାଡ଼ି । ଥରେ ନିଜେ ବିଜୁ ବାବୁ ଓ ବିରେନ୍ ମିତ୍ର ଚିନି ପାଇଁ ଆମ ଷ୍ଟୋରକୁ ଆସିଲେ ଏବଂ ତାଙ୍କ କାର୍ଡ଼ରେ ଚିନି ନେଇ ଆମ୍ଭମାନଙ୍କୁ ଉତ୍ସାହିତ କରିଥିଲେ । ଷ୍ଟାଫମାନଙ୍କୁ କହିଲେ, ଦେଖ, ଏହି ଷ୍ଟୋରକୁ ସବୁପ୍ରକାର ସାହାଯ୍ୟ କର, ଯେପରି ଉନ୍ନତି ହୁଏ । ଧନ୍ୟ ସେହି ବିଜୁ ବାବୁ ଓ ବିରେନ୍ ମିତ୍ର । ଜନତାର ନେତା ସେହିମାନଙ୍କୁ ହିଁ କହନ୍ତି । ୧୯୬୩ ରେ All India Congress ର ଅଧିବେଶନ ଭୁବନେଶ୍ୱରର ୟୁନିଟ୍-୮ରେ ହୋଇଥିଲା । ତାପରେ All India Road Congress ଅଧିବେଶନ ବସିଲା । ଆଳୁ, ପିଆଜ ପ୍ରଭୃତି ପନିପରିବା ସେତେବେଳେ ଆମେ କଟକ ଛତ୍ରବଜାରରୁ ଗୋଟିଏ ଟ୍ରକ ମଗାଇଥିଲୁ । ବାହାରେ ଆଳୁ ଟ.୧୨/- ହେଉଥିବାବେଳେ ଆମେ ଟ.୧୦/- ରେ ବିକ୍ରୀ କଲୁ । ତାପରେ ବଜାର ଦର ସ୍ୱତଃ କମିଗଲା । ଆମେ ଟ.୫୦୦୦/- ଟଙ୍କାର କ୍ଷତି ସହିଲୁ । ମାତ୍ର ଦରଦାମ ନିୟନ୍ତ୍ରଣାଧୀନ ହୋଇଗଲା ।

ଆଉ ଗୋଟିଏ ଉଦାହରଣ । ୧୯୬୪ ବେଳକୁ ସେକ୍ରେଟେରୀଏଟ୍‌ରେ ଚା ଜଳଖିଆ ପାଇଁ ଷ୍ଟାଫ୍‌ମାନେ ବହୁତ ହଇରାଣ ହେଉଥିଲେ । ଅଳ୍ପ କେତେକଙ୍କ ଛଡ଼ା ଅନ୍ୟମାନେ ସମସ୍ତେ କଟକ, ପୁରୀ, ଢେଙ୍କାନାଳରୁ ନିତି ଯିବା ଆସିବା କରନ୍ତି । କର୍ମଚାରୀଙ୍କ ଅବସ୍ଥା କହିଲେ ନ ସରେ । ମଧୁବାବୁ, ମୁଁ ଆଉ କେତେଜଣ ଅଫିସର, ଷ୍ଟାଫ୍ ବସି ଆଲୋଚନା କରି ସିଦ୍ଧାନ୍ତ କଲୁ Works Deptt. ଓ Irrigation Deptt ମିଶି ଗୋଟିଏ Co-operative Canteen ଖୋଲିବା । G.A. Deptt. ଗୋଟିଏ ପ୍ରାଇଭେଟ୍ କେଣ୍ଟିନ୍‌କୁ ବିଦାୟ କରି ଆମକୁ ସେ ଘରଟି ଦେଲେ । Co-operative Deptt.ରେ ରେଜିଷ୍ଟ୍ରୀ କରି ଡିରେକ୍ଟର ବୋର୍ଡ଼ ଗଠନ କଲୁ । ଭଲ କାରିଗର ଆଣି ଚା, କଫି, ବରା, ପକୁଡ଼ି, ମିଠା ଇତ୍ୟାଦି ତିଆରି କରି ବିକ୍ରୀ ହେଲା । ଏତେ ଉଚ୍ଚମାନର ହେଲା ଯେ ସେଠାରେ ବହୁତ ଭିଡ଼ । ଏପରିକି ଚିଫ୍ ସେକ୍ରେଟେରୀ ମନ୍ତ୍ରୀମାନଙ୍କ ମିଟିଂ ପାଇଁ ଚା କଫି ବରାଦ କଲେ । ତାହା ଖୁବ୍ ସଫଳ ହେଲା । ମୁଁ ଦୁଇବର୍ଷ ପରେ ସମ୍ବଲପୁର ବଦଳି ହୋଇଗଲି । ଦେଖାଶୁଣା ଅଭାବରୁ ପରିଚାଳନାରେ ବିଭ୍ରାଟ ହେଲା । ତାହା ଅସ୍ତେ ଆସ୍ତେ ମଉଳି ଗଲା । ବର୍ତ୍ତମାନ ନାମକୁ ମାତ୍ର ଚାଲିଛି । ମାତ୍ର ତାର ଉଚ୍ଚ ମାନ ନାହିଁ ।

ଜଣେ ଅଭିଜ୍ଞ ଚିଫ୍ ସେକ୍ରେଟେରୀ (ଅବସରପ୍ରାପ୍ତ) ଲେଖିଥିଲେ, "Co-operatives have failed in Orissa, but they must succeed". କିପରି ହେବ ? ଗୁଜରାଟ, ଆନ୍ଧ୍ରପ୍ରଦେଶ, ମହାରାଷ୍ଟ୍ର ଓ ତାମିଲ୍‌ନାଡୁ ପ୍ରଭୃତି ରାଜ୍ୟରେ ସମବାୟ ଅନୁଷ୍ଠାନଗୁଡ଼ିକ ବହୁତ ସଫଳ । ଗୁଜରାଟର ଆନନ୍ଦ ଅମୁଲ୍ ଦୁଗ୍ଧ ଉତ୍ପାଦନ ସଂସ୍ଥା ଏହାର ଜ୍ୱଳନ୍ତ ଉଦାହରଣ । ତାର ମୁଖ୍ୟ ଡଃ କୁରିଆନ୍‌ଙ୍କ ପରାମର୍ଶରେ ଓମ୍‌ଫେଡ୍ ଦୁଗ୍ଧ ବର୍ତ୍ତମାନ ବହୁତ ଉତ୍ତମ କାମ କରୁଛି । ଓଡ଼ିଶାର ବହୁତ କେନ୍ଦ୍ରରେ ତାହା ଦୁଗ୍ଧ ଉତ୍ପାଦନକରି ସହରର ଖାଉଟିମାନଙ୍କୁ ସୁଲଭ ମୂଲ୍ୟରେ ବଣ୍ଟନ କରୁଛି । ସେହିପରି ବରଗଡ଼ ଅଞ୍ଚଳର ସମ୍ବଲପୁରୀ ଶାଢ଼ୀ ଭାରତ ପ୍ରସିଦ୍ଧ । ନିଜେ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ସେହି ଶାଢ଼ୀ ଦିଲ୍ଲୀର ଓଡ଼ିଶା ପ୍ରଦର୍ଶନୀରୁ କିଣି ନିଜେ ପିନ୍ଧି ଜାତି ସଂଘରେ ଭାଷଣ ଦେଇଥିଲେ । ତାହାର ପ୍ରତିଷ୍ଠାତା ସ୍ୱନାମଧନ୍ୟ ପଦ୍ମଶ୍ରୀ କୃତାର୍ଥ ଆଚାର୍ଯ୍ୟ । ବାନ୍ଧବୁଣା ତାଲିମ୍‌ରେ ସେ ପଦ୍ମଶ୍ରୀ ପାଇଥିଲେ । Aska MPCS ସ୍ୱର୍ଗତଃ ରାମନାଥ ପଣ୍ଡାଙ୍କ ନେତୃତ୍ୱରେ ବହୁତ ନାମ କରିଥିଲା । ଫୁଲବାଣୀର ଜି. ଉଦୟଗିରିର ଆଦିବାସୀ ମାନଙ୍କ ପ୍ରସ୍ତୁତ ଖଲିପତ୍ର, ଫୁଲଝାଡୁ, କାନ୍ଦୁଲ, ଝୁଣା ଇତ୍ୟାଦି ସୁଦୂର ବମ୍ବେ, ଦିଲ୍ଲୀ ପ୍ରଭୃତି ବଡ଼ ବଡ଼ ସହରକୁ ପଠାଉଥିଲେ । କାଳକ୍ରମେ ତାହା କମି କମି ଏବେ ବନ୍ଦ ହୋଇଗଲାଣି ବୋଲି ଶୁଣୁଛି । ଏହା ବଡ଼ ପରିତାପର ବିଷୟ ।

ଆମର କର୍ମକର୍ତ୍ତାମାନେ ଏଥିପ୍ରତି ଧ୍ୟାନ ଦେବେ କି ? କୋ-ଅପରେଟିଭ୍ ଅନୁଷ୍ଠାନ କେବଳ ସେହି ବିଭାଗର ଲୋକମାନଙ୍କ ଦ୍ୱାରା ଚଳି ପାରିବ ନାହିଁ । ପରିଚାଳନା ଦାୟିତ୍ୱରେ ଥିବା ଜଣେ ଆଇ.ଏ.ଏସ୍. ଅଫିସର ବା ରେଜିଷ୍ଟ୍ରାର୍ ଦକ୍ଷ ଏବଂ କର୍ମନିଷ୍ଠ ଅଫିସର ହେବା ବିଧେୟ । ସେ ବିଭାଗର ଜଣେ ଉତ୍ସର୍ଗୀକୃତ ଦକ୍ଷ ଅଫିସର ଥିଲେ ସ୍ୱର୍ଗୀୟ ଅନନ୍ତ ପ୍ରସାଦ ପଣ୍ଡା । ତାଙ୍କୁ ମୋର ଗଭୀର ସମ୍ମାନ ଜଣାଉଛି ।

କୋ-ଅପରେଟିଭ୍ ବିଭାଗ ବା କ୍ଷୁଦ୍ର ଅନୁଷ୍ଠାନଗୁଡ଼ିକର ଦକ୍ଷତା ବୃଦ୍ଧିପାଇଁ ନିମ୍ନଲିଖିତ ପଦକ୍ଷେପ ନେବା ବିଧେୟ ।

୧) ଅନୁଷ୍ଠାନମାନଙ୍କର ମାସିକ ଡିରେକ୍ଟର ବୋର୍ଡ଼ ମିଟିଂ ଠିକ୍ ନିୟମିତ ଭାବେ ବସିବ ।

୨) ସଭ୍ୟମାନଙ୍କର ବାର୍ଷିକ ସାଧାରଣ ସଭା ଡକାଇ ଅଡ଼ିଟ୍ ରିପୋର୍ଟ୍ ଆଲୋଚନା ହେବ । ଅନ୍ୟାନ୍ୟ ପ୍ରଧାନ ସମସ୍ୟାଗୁଡ଼ିକ ଆଲୋଚନା ହେବ ।

୩) ସଭ୍ୟମାନେ କେହି ତୋଷରପାତ ବା ସମିତି ଫଣ୍ଡରୁ କୌଣସି ଅର୍ଥ ନେଣ ଦେଣ କରିବେ ନାହିଁ ।

୪) ଅଡ଼ିଟ୍ ନିରପେକ୍ଷଭାବେ କରାଇ ଅଡ଼ିଟ୍ ରିପୋର୍ଟ ସାଧାରଣ ସଭ୍ୟମାନଙ୍କ ଅଧିବେଶନରେ ପେଶ୍ କରାଯିବ ।

୫) ଯେଉଁ ହିସାବ ବାଲାନ୍ସ୍ ସିଟ୍‌ରେ ଦର୍ଶାଯିବ ତାର Assets side ରେ Recoverable ବା ଆଦାୟ ଯୋଗ୍ୟ ଅର୍ଥ ଏବଂ Liability ରେ Payable ବା ଦେୟ ଯୋଗ୍ୟ ଅର୍ଥ ଠିକ୍ ଠିକ୍ ଦେଖାଯିବ । ସାଧାରଣତଃ ପ୍ରାପ୍ୟ ସଂଖ୍ୟାଟିକୁ ବଢ଼ାଇ ଓ ଦେୟକୁ କମାଇ ଦେଖାଯାଏ । ସେଗୁଡ଼ିକ କେତେକ ପରିମାଣରେ ତର୍ଜମା ବା ଯାଞ୍ଚ କରାଯିବ ।

୬) ସବୁଠାରୁ ବଡ଼ କଥା ହେଲା ଡିରେକ୍ଟର ବୋର୍ଡ଼ରେ President, Secretary ଓ ଅନ୍ୟାନ୍ୟ ସଭ୍ୟମାନେ ଉଚ୍ଚମାନର ହୋଇଥିବେ । ଯଥା- ବାଙ୍କୀର ଶ୍ରୀ ଯୋଗେଶ ରାଉତ ଯେ ନିକଟରେ ସଂସାର ତ୍ୟାଗକଲେ, ବ୍ରହ୍ମପୁର Central Co-operative Bank ର President Mr. Reddy ଏବଂ Aska MPCS ର ପ୍ରେସିଡେଣ୍ଟ ସ୍ୱର୍ଗତଃ ରାମନାଥ ପଣ୍ଡା, ବରଗଡ଼ର ପଦ୍ମଶ୍ରୀ କୃତାର୍ଥ ଆଚାର୍ଯ୍ୟ । ସେହିପରି ସମାଜସେବୀ ନିସ୍ୱାର୍ଥପର, ଦକ୍ଷ, କର୍ମଠ ପ୍ରେସିଡେଣ୍ଟ କାର୍ଯ୍ୟକ୍ଷେତ୍ରକୁ ଆସିଲେ ସଂସ୍ଥାଗୁଡ଼ିକର ଉନ୍ନତି ବିଧାନ ନିଶ୍ଚିତ ହେବ ।

Central Co-operative Bank ଗୁଡ଼ିକୁ ରିଜର୍ଭ ବ୍ୟାଙ୍କ ଗାଇଡ୍ ଲାଇନ୍ ଅନୁସାରେ A,B ଏବଂ C ତାଲିକାଭୁକ୍ତ କରାଯାଏ । ସଭ୍ୟସଂଖ୍ୟା, ବ୍ୟାଙ୍କର ନିଜର Funds ବା Assets, Loan Recovery ଏବଂ Cash Management ଉପରେ ଦକ୍ଷତା ନିର୍ଦ୍ଧାରଣ ହୁଏ । ପ୍ରାୟ ବହୁବର୍ଷ Berhampur Co-operative Bank, Berhampur Urban Co-operative Bank, Banki Central Co-operative ପ୍ରଭୃତି A ଗ୍ରେଡ଼ରେ ଯୋଗ୍ୟତା ହାସଲ କରିଥିଲେ । ମାତ୍ର Cuttack Central Co-operative ର ଦକ୍ଷତା ଅତି ନିମ୍ନ ସ୍ତରର ଥିଲା । Marketing Society ଗୁଡ଼ିକ ମଧ୍ୟରୁ ବହୁତ ଗୁଡ଼ିଏ ରୁଗ୍ଣ ଅବସ୍ଥାରେ ଥିଲେ ।

ମୋଟ ଉପରେ ଅନ୍ୟ ରାଜ୍ୟ ତୁଳନାରେ ଓଡ଼ିଶାର ସମବାୟ ଅନୁଷ୍ଠାନ ଗୁଡ଼ିକ ବହୁତ ନିମ୍ନ ସ୍ତରର ଏହା ନିଃସନ୍ଦେହ । ଏହା ପରିତାପର ବିଷୟ । ଏହାର ସୁପରିଚାଳନା କରାଇବା ଅତ୍ୟନ୍ତ ଜରୁରୀ ।

## ଜଳସେଚନ ଓ ବିଦ୍ୟୁତ୍ ବିଭାଗ

ଓଡ଼ିଶା ଗୋଟିଏ କୃଷି ପ୍ରଧାନ ରାଜ୍ୟ । ରାଜ୍ୟର ୭୫% ଲୋକ କୃଷି ଉପରେ ନିର୍ଭର କରନ୍ତି । ସେଥିଯୋଗୁ ଜଳସେଚନ ପାଇଁ ସ୍ଥାୟୀ ବନ୍ଦୋବସ୍ତ କରିବାପାଇଁ କେନ୍ଦ୍ର ଓ ରାଜ୍ୟ ସରକାର ସିଦ୍ଧାନ୍ତ କଲେ । ପ୍ରଥମେ ପଞ୍ଜାବ ଓ ହରିଆନାର ଭାକ୍ରାନାଙ୍ଗାଲ ଯୋଜନା । ତାପରେ ଆରମ୍ଭ ହେଲା ହୀରାକୁଦ ଠାରେ ମହାନଦୀରେ ବହୁମୁଖୀ ଜଳଭଣ୍ଡାର ଯୋଜନା । ଲକ୍ଷ୍ୟ ହେଲା ବନ୍ୟା ନିୟନ୍ତ୍ରଣ, ଜଳସେଚନ ଏବଂ ବିଦ୍ୟୁତ୍ ଉତ୍ପାଦନ । ଏହା ଆରମ୍ଭ ହେଲା ୧୯୪୯ ମସିହାରେ । ଶେଷ ହେଲା ୧୯୫୭ ମସିହାରେ । ଆମ୍ଭର ପ୍ରଥମ ପ୍ରଧାନମନ୍ତ୍ରୀ ଜବହାରଲାଲ୍ ନେହୁରୁ ଏହାର ଶୁଭ ଉଦ୍‌ଘାଟନ କରିଥିଲେ । ପ୍ରାୟ ଏକି ଲକ୍ଷରୁ ଅଧିକ ଲୋକ ଏହି ଉଦ୍‌ଘାଟନ ଉତ୍ସବକୁ ଯାଇଥିଲେ । ମୋତେ ଯିବାକୁ ସୁଯୋଗ ମିଳିଥିଲା । ମୁଁ ସେତେବେଳେ ସମ୍ବଲପୁର ଠାରେ ଥିଲି ।

ହୀରାକୁଦ ଡ୍ୟାମ ସଂପୂର୍ଣ୍ଣ ହେବାର ପଶ୍ଚାତରେ ଜଣେ ବିଖ୍ୟାତ ଇଂଜିନିୟରଙ୍କ ଅବଦାନ ଚିରସ୍ମରଣୀୟ । ସେ ହେଉଛନ୍ତି କର୍ଣ୍ଣାଟକର ବିଖ୍ୟାତ ଇଂଜିନିୟର ସ୍ୱର୍ଗତଃ ଥିରୁମଲ୍ଲ ଆୟଙ୍ଗାର । ସେ ସିଧା CWPC ଦ୍ୱାରା ନିଯୁକ୍ତି ପାଇ ୫ ବର୍ଷ ପାଇଁ Contract ରେ ଆସିଥିଲେ । କ୍ଷମତା ବହୁତ । ଏପରିକି Superintending Engineer,

Executive Engineer ମାନଙ୍କର କର୍ତ୍ତବ୍ୟରେ ଖିଲାପ ଓ ଦୁର୍ନୀତି ସନ୍ଦେହ କଲେ ସାଙ୍ଗେ ସାଙ୍ଗେ ବା ୨/୩ ଦିନ ମଧ୍ୟରେ ଚାକିରୀରୁ ବିଦା କରିଦେଉଥିଲେ । ମୁଁ ତାଙ୍କୁ ଅଫିସରେ ସେଲଟ୍ୟାକ୍ସ ଆଦାୟ ସଂପର୍କରେ ସାକ୍ଷାତ କରିଥିଲି । ସେ କହିଲେ, ''ଆପଣ ନିୟମ ଅନୁସାରେ ଯାହା କରୁଛନ୍ତି କରନ୍ତୁ; ମାତ୍ର ଆମ କାମରେ ବ୍ୟାଘାତ କରନ୍ତୁ ନାହିଁ ।'' ଅତି ଭଦ୍ର, ମାତ୍ର ରୋକ୍ ଠୋକ୍ କଥା । ମୋର ତାଙ୍କ ପ୍ରତି ଗଭୀର ସମ୍ମାନ । ଡ୍ୟାମ୍ ଶେଷ ହେବାପରେ ଭାରତ ସରକାର ତାଙ୍କ ଉପରେ ଅତ୍ୟନ୍ତ ସନ୍ତୁଷ୍ଟ ହୋଇ ତାଙ୍କୁ ପଦ୍ମଶ୍ରୀ ଉପାଧିରେ ଭୂଷିତ କରିଥିଲେ । ତାଙ୍କୁ ସମ୍ବର୍ଦ୍ଧନା ଦେବା ସକାଶେ ଓଡ଼ିଶା ସରକାର କର୍ଣ୍ଣାଟକରୁ ଡକାଇଥିଲେ । ଉତ୍ତରରେ ସେ କହିଥିଲେ, ''ଏ ପଦ୍ମଶ୍ରୀ ଉପାଧି କେବଳ ମୋର ପ୍ରାପ୍ୟ ନୁହେଁ । ମୋର ସବୁ ଷ୍ଟାଫ୍, କୁଲି, ମୂଲିଆ ଓ ଅଫିସ୍‌ରମାନଙ୍କର ମଧ୍ୟ ଏଥିରେ ଅବଦାନ ଅଛି । ଆପଣମାନଙ୍କ ପ୍ରତିନିଧି ହିସାବରେ ମୁଁ ଏହା ଗ୍ରହଣ କରିଛି ।'' ସେ ଦେଖାଇଦେଲେ ଅଧୀନସ୍ଥ ଲୋକମାନଙ୍କୁ କିପରି ସମ୍ମାନ ଦେବାକୁ ହୁଏ ।

ହୀରାକୁଦ ଜଳ ଭଣ୍ଡାର ସମ୍ବଲପୁର ଓ ବଲାଙ୍ଗୀର ଜିଲ୍ଲାର କେତେକ ଅଞ୍ଚଳକୁ ଶସ୍ୟ ଶ୍ୟାମଳା କରିଦେଲା । ମୁଁ ଯେତେବେଳେ ୧୯୬୭ରେ ତୃତୀୟ ଥର ପାଇଁ ସମ୍ବଲପୁର ଗଲି ସେତେବେଳେ ଦେଖି ପାରିଲି ହୀରକୁଦ ଡ୍ୟାମ ଓ ପୂର୍ବର ସମ୍ବଲପୁର ଅବସ୍ଥା ଡ୍ୟାମ ଚାଲୁ ହେଲାପରେ କି ପରିବର୍ତ୍ତନ । ମୋର ମନ ଆନନ୍ଦରେ ଭରିଗଲା । ମାତ୍ର ଗୋଟିଏ ଦୁଃଖ ରହିଗଲା । ବୁଡ଼ି ଅଞ୍ଚଳ ଲୋକମାନଙ୍କର ଥଇଥାନ । ସେମାନଙ୍କ ପାଇଁ ଆଦର୍ଶ ଗ୍ରାମ ଓ ସବୁ ସୁବିଧା କରି ଦିଆଯାଇଥିଲା । ସରକାର ଯଥାସାଧ୍ୟ କ୍ଷତି ପୂରଣ ଦେଲେ । ବହୁତ ଲୋକ ତାର ସୁଯୋଗ ନେଲେ । ମାତ୍ର କେତେକ ଲୋକ ତାହାର ସୁଯୋଗ ନେଇଲେ ନାହିଁ । ବହୁତ ଦକ୍ଷ ଅଫିସରଙ୍କ ପ୍ରଚେଷ୍ଟାରେ ଓ କମିଶନର ଶିବରମନ୍ ସାହେବଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ସେ କାର୍ଯ୍ୟ ସଂପୂର୍ଣ୍ଣ ହେଲା ନାହିଁ । ଶୁଣୁଛି ବର୍ତ୍ତମାନ ମଧ ବୁଡ଼ି ଅଞ୍ଚଳର ଅଳ୍ପ କେତେକ ଲୋକ ପୂର୍ଣ୍ଣ ଭାବରେ କ୍ଷତିପୂରଣ ପାଇନାହାନ୍ତି । ସରକାର ସେମାନଙ୍କ ଆପତ୍ତି ବିଚାର କରି ଗୋଟିଏ ଶେଷ ନିଷ୍ପତ୍ତି ନେଇ ଆର.ଡ଼ି.ସି.ଙ୍କୁ କ୍ଷତି ପୂରଣ କ୍ଷମତା ଦେଇ ଦିଅନ୍ତୁ । ସେ ଯେଉଁ ଫଏସଲା କରିବେ, ବୁଡ଼ି ଅଞ୍ଚଳ କ୍ଷତିଗ୍ରସ୍ତ ଲୋକେ ତାହା ଗ୍ରହଣ କରିବେ ବୋଲି ଆଗରୁ ଲେଖି ଦିଅନ୍ତୁ । ଏହା Revenue Deptt. କୁ ସୁନାମ ଆଣିଦେବ ।

ହୀରାକୁଦ ପରେ ଆଉ କେତେଗୁଡ଼ିଏ ବୃହତ୍ ବହୁମୁଖୀ ଯୋଜନା ସଂପୂର୍ଣ୍ଣ ହୋଇଛି; ଯଥା:- ଇନ୍ଦ୍ରାବତୀ, କୋଲାବ, ରେଙ୍ଗାଲି ଇତ୍ୟାଦି । ଯାହା ଶେଷ ହୋଇଗଲା ସେଥିରୁ ଉପକାର ପାଇଲୁ । ଯାହା ଅସଂପୂର୍ଣ୍ଣ ରହିଗଲା, ତାହାର ଋଣଭାର ରାଜ୍ୟ ଉପରେ ବୋଝ ଲଦା ହୋଇଛି ।

ଆଉ କେତୋଟି ମଧ୍ୟମ ଜଳସେଚନ ଯୋଜନାର କାର୍ଯ୍ୟ ହୋଇଥିଲା । ସେଗୁଡ଼ିକ ହେଲା ଶାଳିଆ, ବୁଢ଼ାବୁଢ଼ିଆଣୀ ଇତ୍ୟାଦି ।

କ୍ଷୁଦ୍ର ଜଳସେଚନ ଯୋଜନା ଅସଫଳ ହେବାରୁ ସେ ପରିକଳ୍ପନା ବନ୍ଦ କରିଦିଆଗଲା; ଯଥା:- ବଣେଇର କୁରାଡ଼ୀ ଇତ୍ୟାଦି । କେବଳ ବର୍ଷା ଦିନେ ପାଣି ଆସିଲା, ବର୍ଷା ବନ୍ଦ ହେଲେ ପାଣି ନାହିଁ ।

ଏହାପରେ ବିଦ୍ୟୁତ୍ ଉତ୍ପାଦନ ବିଷୟରେ ସଂକ୍ଷେପରେ ଉଲ୍ଲେଖ କରୁଛି । ଓଡ଼ିଶାର ପ୍ରଥମ ଜଳବିଦ୍ୟୁତ୍ ପାୱାର ହାଉସ୍ ସ୍ଥାପନ କରାଯାଇଥିଲା ମାଛକୁଣ୍ଡ ଠାରେ କୋରାପୁଟ ଜିଲ୍ଲାରେ । ଏହା ଆନ୍ଧ୍ର-ଓଡ଼ିଶା ସୀମାନ୍ତରେ ଥିବାରୁ ଖର୍ଚ୍ଚର ଅର୍ଦ୍ଧେକ ଓଡ଼ିଶା ବହନ କରିଥିଲା । ଓଡ଼ିଶାର ବିଦ୍ୟୁତ୍ ଚାହିଦା ନଥିବାରୁ ଓଡ଼ିଶା ଭାଗର ୨୦% ଆନ୍ଧ୍ରକୁ ସାମାନ୍ୟ ଦେୟ ଆଣି ୯୦ ବର୍ଷ ପାଇଁ ବିକ୍ରୀ କରାଗଲା । ଏହା ଦୂରଦୃଷ୍ଟିହୀନତାର ଜ୍ୱଳନ୍ତ ଉଦାହରଣ ।

ତା ପରେ ଆସିଲା ହୀରାକୁଦ ଓ ଚିପ୍ଲିମା । ମାତ୍ର ଓଡ଼ିଶାର ବିଦ୍ୟୁତ୍ ଉତ୍ପାଦନର ସର୍ବୋତ୍କୃଷ୍ଟ ପରିକଳ୍ପନା ହେଲା ବାଲିମେଳା ପାୱାର ହାଉସ୍ । ବାଲିମେଳା ଠାରେ ଡ୍ୟାମ ନିର୍ମାଣ କରି ଡ୍ୟାମରୁ ଦୀର୍ଘ ୩ ମାଇଲ୍ ଲମ୍ବ ସୁଡଙ୍ଗ ଦେଇ ଜଳକୁ ଆଣି ଓରକେଲ ଠାରେ ପାହାଡ଼ ଉପରୁ ପ୍ରାୟ ୩ ହଜାର ଫୁଟ ତଳକୁ ଷ୍ଟେନ୍‌ଲେସ୍ ଷ୍ଟିଲ୍‌ର ୬ଟି ୬ ଫୁଟ ବ୍ୟାସ ମୋଟା ପାଇପରେ ପାୱାର ହାଉସ୍‌ରେ ପକାଯାଉଛି । ଡ୍ୟାମ୍ ପ୍ରାକୃତିକ ପାହାଡ଼ ଘେରା । କେବଳ ସୁଡଙ୍ଗ ତିଆରି ଖର୍ଚ୍ଚ ୪ କୋଟି ଟଙ୍କା । ମୋଟ ଅଟକଳ ୨୪ କୋଟି ଟଙ୍କା । ଓଡ଼ିଶା ୫୦% ଦେବ ଏବଂ ଆନ୍ଧ୍ର ୫୦% ଖର୍ଚ୍ଚରୁ ୧୨ କୋଟି ଦେବ । ସେମାନେ ହାତକୁ ନେବାପାଇଁ ଚାହିଁଥିଲେ । ମାତ୍ର ଓଡ଼ିଶା ସରକାର ପୂର୍ବ ଅଭିଜ୍ଞତାରୁ ମନାକଲେ । ଆନ୍ଧ୍ର ୧୨ କୋଟି ଟଙ୍କା ଦେବ । ଅଧିକା ଖର୍ଚ୍ଚ ଓଡ଼ିଶା ଦେବ । ଲାଭ ୫୦% ଭାଗ ଓଡ଼ିଶାର ଏବଂ ୫୦% ଭାଗ ଆନ୍ଧ୍ରର । ସୁଡ଼ଙ୍ଗ Controlled Blasting ପ୍ରଣାଳୀରେ ଦୁଇଆଡୁ ଖୋଳାଯାଇ ୨ ବର୍ଷରେ ଶେଷ ହେଲା ।

ଭାଗ୍ୟକୁ ଆମର ଅତି ଦକ୍ଷ ଇଂଜିନିୟର ସ୍ୱର୍ଗତଃ ସୁରେଶ ତ୍ରିପାଠୀଙ୍କୁ ସରକାର କାର୍ଯ୍ୟର ଦାୟିତ୍ୱ ଦେଲେ । ଡିଜାଇନ୍ ଦେଲେ Russian Engineerଙ୍କୁ । ବାଲିମେଳାରେ କାର୍ଯ୍ୟ ଶେଷ ପର୍ଯ୍ୟନ୍ତ ତିନି ଗୋଟି ଋଷିଆନ୍ ପରିବାର କାର୍ଯ୍ୟ ତଦାରଖ କରିବାକୁ ଆସିଥିଲେ । ଦକ୍ଷତା ଅତି ଉଚ୍ଚକୋଟୀର । ଜଣକର ସ୍ତ୍ରୀ ଓ ୨ଟି ସନ୍ତାନ । ଦ୍ୱିତୀୟର ସ୍ତ୍ରୀ ଏବଂ ଗୋଟିଏ ସନ୍ତାନ । ରବିବାର ଦିନ ଶିକାର କରିବାକୁ ଯାଉଥିଲେ । ମୃଗ, ସମ୍ବର ବା ଶଶା ଯାହା ପାଉଥିଲେ ତାହା ସଫା କରି କାଟି ଫ୍ରିଜ୍‌ରେ ରଖି ଦେଉଥିଲେ ୭ ଦିନ ପାଇଁ । ଆଉ ଜଣେ ଅବିବାହିତ । ସମସ୍ତେ ଖାଦ୍ୟ ବାବଦକୁ ଟ୬୦୦/- ନେଉଥିଲେ । ସ୍ତ୍ରୀଲୋକମାନେ ରୋଷେଇ କରୁଥିଲେ । ଗୋଟିଏ ବଡ଼ କ୍ୱାଟର ରହିବାକୁ ଦିଆଯାଇଥିଲା ।

ଆମର ଏଠାକାର ଜଣେ ଲୋକ ପଚାରିଲା, ''ଆପଣମାନଙ୍କର ପରିବାର ସଂଖ୍ୟା ବେଶି କମ୍ । ପୁଣି ଜଣେ ଅବିବାହିତ ।ସମାନ ଟଙ୍କା କାହିଁକି ଦେଉଛନ୍ତି ? ସେବା ଅଳ୍ପ ବୟସ୍କଟି ଉତ୍ତର ଦେଲା, ''ଆମେ ଏଠି ସମାନ ଟଙ୍କା ନେଇ ମିଳିମିଶି ନ ଚଳିଲେ ଆପଣମାନେ କିପରି ବିଶ୍ୱାସ କରିବେ ଯେ ଆମ ଦେଶରେ କମ୍ୟୁନିଜିମ୍ ଅଛି ? ସେମାନେ ଅତି ଦକ୍ଷତାର ସହିତ ୩ ବର୍ଷ କାର୍ଯ୍ୟକଲେ ।

ମୁଁ ବାଲିମେଳାକୁ ୨ଥର ଯାଇଛି । ସୁରେଶ ତ୍ରିପାଠୀ ଆମ ବିଭାଗର ସେକ୍ରେଟେରୀ କର୍ତ୍ତାର ସିଂହଙ୍କୁ ଅନୁରୋଧ କରି ମୋତେ ଡକାଇ ପଠାଇଲେ । ମୋର ଯିବାକୁ ବହୁତ ଆଗ୍ରହ ଥିଲା । ମୁଁ ୨ଥର ଯାଇଛି । କୋରାପୁଟ ଜିଲା, ମାଲକାନଗିରି ଅଞ୍ଚଳ ଏବଂ ବାଲିମେଳା ଜଳବିଦ୍ୟୁତ ପ୍ରକଳ୍ପ ପ୍ରଭୃତି ମୋର ଅତି ପ୍ରିୟ ସ୍ଥାନ । ମାଲକାନଗିରିର ଏସ୍.ଡ଼ି.ଓ. ଥିଲେ ମୋର ଅନ୍ତରଙ୍ଗ ସହକର୍ମୀ ଓ ବନ୍ଧୁ ସ୍ୱର୍ଗତଃ ମୁରଲୀଧର ବାରିକ, ନୀଳଗିରିର । ତାଙ୍କ ପୁତ୍ର କିଶୋରଚନ୍ଦ୍ର ବାରିକ ଆଇ.ଏ.ଏସ୍. ପୂର୍ବତନ ବିଧାନ ସଭାର ସେକ୍ରେଟେରୀ । ତାଙ୍କ ନିମନ୍ତ୍ରଣରେ ମୁଁ ଯାଇ ତାଙ୍କ ଘରେ ରହିଲି । କାରଣ ପୂର୍ବରୁ ବହୁବାର ସମ୍ବଲପୁରରେ ଗ୍ରାମ ପଞ୍ଚାୟତରେ ଥିଲାବେଳେ ମୁଁ ତାଙ୍କ ଘରକୁ ଯାଇଛି । ଏକତ୍ର ଟୁର୍‌ରେ ଯାଇ ଅତି ମଜାରେ ସମୟ କଟାଇଛୁ । ପୂର୍ବ କାଳର ସହକର୍ମୀମାନଙ୍କ ସଙ୍ଗରେ ଥିବା ମଧୁର ସଂପର୍କ ଏବଂ ବନ୍ଧୁତା ବର୍ତ୍ତମାନ ବିରଳ । ଚାକିରୀରେ କେବଳ ମାରପେଞ୍ଚ ଓ ଉପର ଅଫିସରଙ୍କ ପାଖରେ ତୁମର ଦୁର୍ନାମ କରିବା । ସଂପର୍କ ତିକ୍ତ ହେବା ସ୍ୱାଭାବିକ ।

ସୁରେଶ ତ୍ରିପାଠୀଙ୍କ ବ୍ୟତୀତ ଆହୁରି କେତେକ ଦକ୍ଷ ଏବଂ ସଚ୍ଚୋଟ ଇଂଜିନିୟରଙ୍କ ସଂପର୍କରେ ଆସିଛି । ପ୍ରଥମେ ଉଲ୍ଲେଖ କରିବି ଦାମୋଦର ସାହୁ, ଯେ ଇନ୍ଦ୍ରାବତୀ ଡ୍ୟାମ ନିର୍ମାଣ କରିଥିଲେ । ଡ୍ୟାମ୍ ଚାଲୁ ହେଲାପରେ ୩୦୦ ଫୁଟ ତଳେ ଭୂତଳ ପାୱାର ହାଉସ୍‌କୁ ଅବସର ଗ୍ରହଣର ୨ ବର୍ଷ ପରେ ବିଜୁ ପଟ୍ଟନାୟକଙ୍କ ଅନୁରୋଧରେ ଭୁବନେଶ୍ୱରରୁ ଯାଇ ପାଦରେ ଚାଲି ଚାଲି ତଳକୁ ଯାଇ ସେ ଟେକ୍‌ନିକାଲ୍ ତ୍ରୁଟି ସୁଧାରି ଦେଇଥିଲେ । ତାଙ୍କର ଟିକିଏ ହାର୍ଟ ଟ୍ରବୁଲ୍ ଥିଲା । ଅତିଶୟ ଶ୍ରମଯୁକ୍ତ କାମ କଲାପରେ ସେହିଠାରେ ସେ ହୃଦ୍‌ରୋଗରେ ସ୍ୱର୍ଗାରୋହଣ କଲେ । ଧନ୍ୟ କର୍ମନିଷ୍ଠ ଇଂଜିନିୟର ! ଆଉ ଜଣେ ହେଲେ ରେଙ୍ଗାଲି ଡ୍ୟାମର ଚିଫ୍ ଇଂଜିନିୟର ଦିବାକର ମିଶ୍ର । ଗୋଟିଏ ଆଖି ନଷ୍ଟ ହୋଇଯାଇଛି । ଅତି ସଚ୍ଚୋଟ । ସମସ୍ତଙ୍କ ସହିତ ସଦ୍‌ଭାବ ରଖି ରେଙ୍ଗାଲି ଡ୍ୟାମ୍ ଯେପରି ଯଥା ସମୟରେ ସଂପୂର୍ଣ୍ଣ କରିଥିଲେ ତାହା ପ୍ରଶଂସନୀୟ । ଡିପାର୍ଟମେଣ୍ଟରେ ବହୁତ ଦକ୍ଷ ଏବଂ ମେଳାପୀ ଇଂଜିନିୟର କାମ କରିଥିଲେ । ସ୍ଥାନ ଅଭାବରୁ ସମସ୍ତଙ୍କ ନାମ ଲେଖି ପାରୁନାହିଁ ।

ଜଣେ ପ୍ରସିଦ୍ଧ ଇଂଜିନିୟର ତଥା ନିର୍ମାଣ ବିଭାଗର ସେକ୍ରେଟାରୀ ଏବଂ ପବ୍ଲିକ୍ ସର୍ଭିସ କମିଶନର ପୂର୍ବତନ ଚେୟାରମ୍ୟାନ ସ୍ୱର୍ଗତଃ ଆନନ୍ଦ ଚନ୍ଦ୍ର ପାଢ଼ୀ କହୁଥିଲେ:

Responsibility with power is
democracy
Power without responsibility is
autocracy
Responsibility without power is
bankruptcy

ସମସ୍ତେ ଚିନ୍ତା କରନ୍ତୁ ଓ ଆତ୍ମନିରୀକ୍ଷା କରନ୍ତୁ ଆମେ କିପରି କାମ କରୁଛୁ ।

ଆଉ ଗୋଟିଏ ସ୍ମରଣୀୟ ଘଟଣା ଉଲ୍ଲେଖ କରିବାକୁ ଉଚିତ ମନେ କରୁଛି । ଆମର ଜଳସେଚନ ବିଭାଗର ୪୦ ଜଣ ଷ୍ଟାଫ୍ ପ୍ରସ୍ତାବ କଲେ ଟିକରପଡ଼ାର ସାତ କୋଶିଆ ଗଣ୍ଡ ଦେଖିବାପାଇଁ । ଗୋଟିଏ ଶନିବାର ସନ୍ଧ୍ୟାରେ ଗୋଟିଏ ଗାଡ଼ିରେ ସମସ୍ତେ ରାତ୍ର ଭୋଜନ ସାରି ବାହାରିଲୁ । ସେଠାରେ ରାତ୍ରି ୧ ଘଣ୍ଟା ସମୟରେ ପହଞ୍ଚିଲୁ । ଅନୁଗୁଳ ଠାରୁ ଟିକରପଡ଼ା ପର୍ଯ୍ୟନ୍ତ ବହୁତ ହରିଣ ଦେଖିବାକୁ ପାଇଲୁ । ଶ୍ରୀଯୁକ୍ତ ଗଣେଶ ମିଶ୍ର ବୋଲି ଜଣେ ଦକ୍ଷ ଇଂଜିନିୟର ଟିକରପଡ଼ାର ଦକ୍ଷିଣ ପାଖରେ ଅବସ୍ଥିତ ଥିଲେ । ଟିକରପଡ଼ା ବଙ୍ଗଳାରେ ରାତ୍ରିରେ ବିଶ୍ରାମ କଲୁ । ସକାଳେ ଦେଖିବାକୁ

ପାଇଲୁ ଡିସେମ୍ବର ମାସ ଶୀତରେ କେତେକ ଘଡ଼ିଆଳ କୁମ୍ଭୀର ବାଲିରେ ଶୋଇଥାନ୍ତି । ସକାଳେ ସାମାନ୍ୟ ଜଳଖିଆ ଓ ଚା । ଆମେ ଡଙ୍ଗାରେ ନଦୀରେ ବୁଲିବାକୁ ଗଲୁ । ସାବଧାନ ହୋଇ ବସିଥାଉ । କେଉଁ ମୁହୂର୍ତ୍ତରେ କୁମ୍ଭୀର ଟାଣିନେବ । ତାପରେ ନଦୀରେ ସାବଧାନ୍‌ରେ ଗାଧୋଇ ମଧ୍ୟାହ୍ନ ଭୋଜନ ହେଲା ଦିନ ଗୋଟାକ ପରେ । ଖାଦ୍ୟ ପରସା ହେଲା ଭାତ, ମିରିକାଳି ମାଛ ଭଜା, ତରକାରୀ, ଯାହାକୁ ଯେତେ । ଆମ ଜଳସେଚନ ବିଭାଗର ଚପରାଶୀ ଓ ନାଉରୀ ପ୍ରତ୍ୟେକଙ୍କ ପାଖରେ ଜାଲ । ମିରିକାଳି ମାଛ ପାଣିରୁ ଛାଣି ଆଣିବା କଥା । ଏପରି ସହଜ ଉପାୟରେ ମିରିକାଳି ମାଛ ପରି ସୁସ୍ୱାଦୁ ମାଛ ମିଳିବା ମୁଁ କେବଳ ହୀରାକୁଦ ଡ୍ୟାମ ଛଡ଼ା ଅନ୍ୟ ଜାଗାରେ ଦେଖିନାହିଁ ।

ସନ୍ଧ୍ୟା ୪ଟା ବେଳେ ମହାନଦୀ ପାର ହୋଇ ଦକ୍ଷିଣ କୂଳକୁ ଆସିଲୁ । ସେଠାରେ ୨/୩ଟି ଜିପ୍ ଅପେକ୍ଷା କରିଥିଲେ । ଆମେମାନେ ଦଶପଲ୍ଲାର ଗଣିଆ ଦେଇ ଖଣ୍ଡପଡ଼ାର କଣ୍ଟିଲୋ ଠାରେ ଅବସ୍ଥିତ ପ୍ରସିଦ୍ଧ ନୀଳମାଧବ ମନ୍ଦିର ଦେଖି ଭୁବନେଶ୍ୱର ଫେରି ଆସିଲୁ ରାତ୍ର ୧୦ ଘଣ୍ଟାରେ । ଏହିପରି ସାତ କୋଶିଆ ଗଣ୍ଡ କଡ଼େ କଡ଼େ ୧୪ ମାଇଲ୍ ରାସ୍ତା ଆସିଲୁ ।

ଆଉ ଜଣେ ଭଲ କଣ୍ଟ୍ରାକ୍‌ଟରଙ୍କ ସଙ୍ଗେ ମୋର ସାକ୍ଷାତ ହୋଇଥିଲା । ସେ ହେଉଛନ୍ତି ହରମୋହନ ବୁଦ୍ଧିରାଜ । ତାଙ୍କ ପୁତ୍ର ଜଗଦୀଶ ବୁଦ୍ଧିରାଜ ଭୁବନେଶ୍ୱର ଝାରପଡ଼ା ପାଖରେ ସ୍ଥାୟୀ ଭାବରେ ବସବାସ କରୁଛନ୍ତି । ତାଙ୍କ ଦାନରେ ଗୋଟିଏ ଦାତବ୍ୟ ଡାକ୍ତରଖାନା ଚାଲୁଛି ଓ ବହୁ ଦାତବ୍ୟ ଅନୁଷ୍ଠାନକୁ ତାଙ୍କର ଦାନ ଅତୁଳନୀୟ । ସେ ଭାରତ ପାକିସ୍ଥାନ ଯୁଦ୍ଧରେ ମିଲିଟାରୀ କଣ୍ଟ୍ରାକ୍‌ଟର ଭାବେ ସୁନାମ ଅର୍ଜନ କରିଥିଲେ ।  ସେମାନେ ଅତି ଉଚ୍ଚକୋଟୀର ଲୋକ । ଦ୍ୱିତୀୟ ମହାଯୁଦ୍ଧ ସମୟରେ ହିମାଳୟ ପାଦଦେଶରେ କାମ ନେଇଥିଲେ । ଦରକାର ହେଲେ ସେ ବନ୍ଧ ଉପରେ ରାତିରେ ରହି କାମ କରୁଥିଲେ । ତାଙ୍କର ୫୦୦ ଭାରବାହୀ ପଶୁ ଥିଲେ । ସେଥିଯୋଗୁ ତାଙ୍କୁ ଗଧା କଣ୍ଟ୍ରାକ୍‌ଟର ବୋଲି ଲୋକେ କହନ୍ତି । ସେ ଯେପରି କର୍ତ୍ତବ୍ୟପରାୟଣ ସେପରି ଦାନୀ । ପଂଜାବରୁ ଆସି ଭୁବନେଶ୍ୱର ଝାରପଡ଼ା ପାଖରେ ସ୍ଥାୟୀ ଭାବେ ବସବାସ କରିଥିଲେ । ଓଡ଼ିଶା ଓ ଓଡ଼ିଶା ଲୋକଙ୍କ ପ୍ରତି ତାଙ୍କର ଗଭୀର ସହାନୁଭୂତି ଥିଲା । ଆମ ଖାରବେଳନଗର ଶ୍ରୀମା ଭୁବନେଶ୍ୱରୀ ମନ୍ଦିରକୁ ଦୁର୍ଗାପୂଜା ସମୟରେ ବହୁବର୍ଷ ଦାନ କରିଥିଲେ ।

# କଳାହାଣ୍ଡି ଆବିଷ୍କାର

ମୁଁ ଚାକିରୀ କାଳ ମଧ୍ୟରେ ବହୁତ ଥର କଳାହାଣ୍ଡି ଯାଇଛି । ଭୁବନେଶ୍ୱରରୁ କଳାହାଣ୍ଡି ଯିବାକୁ ୨/୩ ଟି ବାଟ । ସେତେବେଳେ ସଡ଼କ ପଥ ନଥିଲା ଏବଂ ତାଳଚେର-ସମ୍ବଲପୁର ରେଳରାସ୍ତା ଚାଲୁ ହୋଇ ନଥିଲା । ଲୋକେ ଭୁବନେଶ୍ୱରରୁ ବିଜୟନଗର ପର୍ଯ୍ୟନ୍ତ ଟ୍ରେନ୍‌ରେ ଯାଇ ସେଠାରୁ ବିଜୟନଗର-ରାୟପୁର ଗାଡ଼ିରେ କେସିଙ୍ଗା ପର୍ଯ୍ୟନ୍ତ ଯାଇ କେସିଙ୍ଗାରୁ ଭବାନୀପାଟଣା ଯାଆନ୍ତି । ବାଟ ୨୦ ମାଇଲ୍ । ବାଟରେ କି ଘଞ୍ଚ ଜଙ୍ଗଲ । ରାସ୍ତାରେ ରାତିରେ ବସ୍ ଆସେ ନାହିଁ । ଦିନବେଳେ ମଧ୍ୟ ଲୋକେ କଲରାପତରିଆ ବାଘ ହାବୁଡ଼ରେ ପଡ଼ିଛନ୍ତି । ବସ୍ ଟିକିଏ ଅପେକ୍ଷା କରି ଲାଇଟ୍ ଜଳେଇଲେ ବାଘ ରାସ୍ତା ପାର ହେଉଥିବାର ଦେଖାଯାଏ । ଆଉ ଗୋଟିଏ ସମ୍ବଲପୁରରୁ ବଲାଙ୍ଗୀର ଦେଇ ବଲାଙ୍ଗୀରରୁ ଟିଟିଲାଗଡ଼ ରାସ୍ତାରେ ବେଲଗାଁ ପର୍ଯ୍ୟନ୍ତ ଆସି ବେଲଗାଁ ପାଖରେ ନଦୀ ପାର ହେଲେ କେସିଙ୍ଗା । ତାପରେ ସେଠାରୁ ଭବାନୀପାଟଣା । ଏବେ ଆହୁରି ସିଧାବାଟ ଖୋଲିଯାଇଛି । ଭବାନୀପାଟଣାରୁ ମଦନପୁର-ରାମପୁର । ସେଠାରୁ ବାଲିଗୁଡ଼ା, ଜି. ଉଦୟଗିରି ଦେଇ କଳିଙ୍ଗାଘାଟି ପାର ହେଲେ ଭଞ୍ଜନଗର । ସେଠାରୁ ଓଡ଼ଗାଁ ବାଟେ ନୟାଗଡ଼, ଖୋର୍ଦ୍ଧା, ଭୁବନେଶ୍ୱର ।

ଅବିଭକ୍ତ କଳାହାଣ୍ଡିର ବ୍ୟବସାୟ କେନ୍ଦ୍ର ହେଲା ଭବାନୀପାଟଣା, ଧରମଗଡ଼, କେସିଙ୍ଗା, ନୂଆପଡ଼ା, କଣ୍ଟାବାଞ୍ଜି ପ୍ରଭୃତି ।

ଥରେ ଶ୍ରୀ ବାବାଜୀ ମହାପାତ୍ର ନାମକ ଜଣେ ଦକ୍ଷ ଅଫିସର, ସି.ଟି.ଓ. ଥିଲାବେଳେ ମୁଁ ଅଫିସ ପରିଦର୍ଶନରେ ଯାଇଥିଲି । ଶୁଣିଲି ବାବାଜୀ ଶ୍ରୀଯୁକ୍ତ ଚୈତନ୍ୟ ଚରଣ ଦାସ ଧରମଗଡ଼ରେ ଭାଗବତ ସପ୍ତାହ କରାଇ ଭାଗବତ ଉପରେ ଅତି ସାରଗର୍ଭକ ବକ୍ତୃତା ଦେଉଛନ୍ତି । ଶ୍ରୋତା ବହୁତ । ସରୁ ସରୁ ରାତି ୧୧ ଘଣ୍ଟା । ଆମ୍ଭେମାନେ ଯୁନାଗଡ଼ ଯାଇ ସେଠାରୁ ୩୦ ମାଇଲ ବାଟରେ ଥିବା ଧରମଗଡ଼ରେ ପହଞ୍ଚି ଭାଗବତ ଆଲୋଚନାରେ ଯୋଗ ଦେଲୁ । ବାବାଜୀଙ୍କ ସଙ୍ଗେ ମୋର ବହୁ ଦିନରୁ ପରିଚୟ । ପୁରୀ ଠାରୁ କଟକ ଏବଂ ସମ୍ବଲପୁର ସବୁ ଜାଗାରେ ସେ ବକ୍ତୃତା ଦିଅନ୍ତି । ତାଙ୍କର ବଡ଼ ଆଶ୍ରମ ଥିଲା ବଲାଙ୍ଗୀରରେ । ଧରମଗଡ଼ରେ ପ୍ରସାଦ ଖାଇ ଭବାନୀପାଟଣାରେ ପହଞ୍ଚିଲାବେଳକୁ ରାତି ୧୨ ଘଣ୍ଟା । ଆଉଥରେ କୋରାପୁଟରୁ ନବରଙ୍ଗପୁର ଦେଇ ତାପରେ ଆମ୍ବପାଣି ଘାଟି ପାର ହୋଇ ଭବାନୀପାଟଣା । ଯେଉଁ

ରାସ୍ତାରେ ଗଲେ ମଧ୍ୟ ଭବାନୀପାଟଣା ଯିବାକୁ ବହୁତ ରାସ୍ତା । କଳାହାଣ୍ଡି ଛାତ୍ରମାନଙ୍କର କ୍ଷୋଭଥିଲା ଯେ ସେମାନଙ୍କ ଜିଲ୍ଲା ତାଲିକାର ନିମ୍ନରେ ତ୍ରୟୋଦଶ ସ୍ଥାନରେ ଅଛି । ମାତ୍ର ବର୍ତ୍ତମାନ ସେପରି ହୀନମନ୍ୟତା ଭାବ ନାହିଁ । ସେଠାର ବହୁ ଗଣ୍ୟମାନ୍ୟ ବ୍ୟକ୍ତି ଓଡ଼ିଶାର ଉଚ୍ଚସ୍ଥାନ ଏବଂ ପଦବୀରେ ଅବସ୍ଥିତ । ଭବାନୀପାଟଣାର ସ୍ୱର୍ଗତ ~~ଛିଶୋର ଚନ୍ଦ୍ର~~ ବେହେରା ରାଉରକେଲା N.I.T. ର ପ୍ରିନ୍ସିପାଲ ଭାବେ ଖୁବ୍ ସୁନାମ ଅର୍ଜନ କରିଥିଲେ । ତାଙ୍କ ପୁତ୍ର ଶ୍ରୀ ବିନୟତୋଷ ବେହେରା ଭୁବନେଶ୍ୱର-କଟକ ଦ୍ୱୈତ ନଗରୀର ପୋଲିସ କମିଶନର ଭାବେ ଏକ ବର୍ଷରୁ ଊର୍ଦ୍ଧ୍ୱ କାମ କରି ବହୁତ ସୁନାମ କମାଇଥିଲେ । ସେଠାକାର କଲେଜର ପ୍ରିନ୍ସିପାଲ ଶ୍ରୀ ଗୋପାଳଚନ୍ଦ୍ର ପଟ୍ଟନାୟକଙ୍କର ଭଗ୍ନୀ ଶ୍ରୀମତୀ ପ୍ରିୟମ୍ୱଦା ହେଜମାଡ଼ୀ ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରାଣୀ ବିଜ୍ଞାନ ବିଭାଗର ମୁଖ୍ୟ ଅଧ୍ୟାପିକା ଭାବେ ବହୁ ବର୍ଷ କାମ କରିଥିଲେ । ଗହୀର ମଥାର Olive Ridli କଇଁଚ ଉପରେ ଗବେଷଣା କରି ଆନ୍ତର୍ଜାତୀୟ ଖ୍ୟାତି ଓ ସୁନାମ ଅର୍ଜନ କରିଛନ୍ତି । ମୋର ଜାମାତା ଶ୍ରୀ ପ୍ରସନ୍ନ କୁମାର ତ୍ରିପାଠୀ ସେଠାର IOBର ମେନେଜର ଭାବେ ୨/୩ ବର୍ଷ କାମ କରିଥିଲେ । ମୋର କନ୍ୟା ଶ୍ରୀମତୀ ମୀନାକ୍ଷୀ ସାମଲ ସେଠାର ଗାର୍ଲ୍ସ ସ୍କୁଲ୍‌ର ଗଣିତ ଶିକ୍ଷୟିତ୍ରୀ ଥିଲେ । ମୋର ସହପାଠୀ ପଦ୍ମଚରଣ ନାୟକଙ୍କ ପତ୍ନୀ ଶ୍ରୀମତୀ ମାଳତୀ ଜେନା ସେହି ସ୍କୁଲର ହେଡ୍ ମିଷ୍ଟ୍ରେସ୍ ଥିଲେ । ତେଣୁ ଭବାନୀପାଟଣା ଯିବାକୁ ମୋର ବହୁ ଆଗ୍ରହ ଏବଂ ଆନନ୍ଦ ।

କଳାହାଣ୍ଡିର ମହାରାଜା ଶ୍ରୀଯୁକ୍ତ ପ୍ରତାପକେଶରୀ ଦେଓ ଦିଲ୍ଲୀ ପାର୍ଲିଆମେଣ୍ଟରେ ବହୁ ସୁନାମ ଅର୍ଜନ କରିଥିଲେ । ତାଙ୍କ ବ୍ୟକ୍ତିଗତ ଉଦ୍ୟମ ଯୋଗୁଁ ଇନ୍ଦ୍ରାବତୀ ପ୍ରକଳ୍ପ ଯୋଜନା କମିଶନଙ୍କ ମଂଜୁରୀ ପ୍ରାପ୍ତ ହୋଇ କାର୍ଯ୍ୟକାରୀ ହୋଇପାରିଲା ।

ଆମ କମର୍ସିଆଲ୍ ଟ୍ୟାକ୍ସ ଅଫିସର ଶ୍ରୀଯୁକ୍ତ ବାବାଜୀ ମହାପାତ୍ରଙ୍କୁ କହିଲି ମହାରାଜାଙ୍କ ସଙ୍ଗେ ସାକ୍ଷାତ କରିବାକୁ । ମହାରାଜା ତା ପରଦିନ ସନ୍ଧ୍ୟା ୫ ଘଣ୍ଟା ସମୟରେ ସାକ୍ଷାତ କରିବାକୁ ଡାକିଲେ ।

ଯିବା ପୂର୍ବରୁ ମହାରାଜାଙ୍କ ଦୈନନ୍ଦିନ କାର୍ଯ୍ୟ ନିର୍ଘଣ୍ଟ ଆମ ସି.ଟି.ଓ. ବାବାଜୀ ବାବୁଙ୍କ ଠାରୁ ବୁଝିଲି ।

ମହରାଜା ଗୋଟିଏ ବଡ଼ ଗଡ଼ଜାତର ରାଜା ହୋଇଥିଲେ ମଧ୍ୟ ତାଙ୍କ ପରି ଚରିତ୍ରବାନ୍, କାର୍ଯ୍ୟକ୍ଷମ ଏବଂ କର୍ମତତ୍ପର ବ୍ୟକ୍ତି ପାଇବା ବିରଳ । ସକାଳ ସୂର୍ଯ୍ୟୋଦୟ ପୂର୍ବରୁ ଶଯ୍ୟା ତ୍ୟାଗ କରି ନିତ୍ୟକର୍ମ ସାରି ପୂଜାପାଠ, ଯୋଗ, ଧ୍ୟାନ ପ୍ରଭୃତି ସାରି

ଜଳଯୋଗ କରି ୯ ଘଣ୍ଟା ମଧ୍ୟରେ ପ୍ରସ୍ତୁତ । ତାପରେ ୧୫ କି.ମି. ଦୂରରେ ଥିବା ଫାର୍ମ ଘର ପାଖକୁ ଯାଇ ନିଜ ଜମିର ଚାଷକାର୍ଯ୍ୟ ତଦାରଖ କରନ୍ତି । ନିଜେ ଟ୍ରାକ୍‌ଟର ଚଲାନ୍ତି । ପ୍ରାୟ ୩୦ ଏକର ବାହେଲ ଗହୀର ଜମିର ଏକ ଚକ ଜମି ନିଜ ଚାଷ ପାଇଁ ରଖିଛନ୍ତି । ଧାନ, ମୁଗ, ବିରି, ପନିପରିବା, ଫଳ ସବୁ ପ୍ରକାର ଚାଷ କରନ୍ତି । ଚାଷ କାର୍ଯ୍ୟ ବୁଝିବା ପାଇଁ ଜଣେ ମେନେଜର ଏବଂ ୪/୫ଟି ଆଦିବାସୀ ପରିବାର ଅଛନ୍ତି । ସେ ନିଜେ ବହୁତ ପରିଶ୍ରମ କରନ୍ତି । ମୂଲିଆ ସଙ୍ଗରେ ବିଲରେ କାମ କରନ୍ତି । ସେଠାରେ ଅପରାହ୍ନ ଗୋଟାକ ପର୍ଯ୍ୟନ୍ତ କାମ କରି ଧୂଆଧୋଇ ହୋଇ ଘରୁ ନେଇଥିବା ଟୀ ବା କଫି ଫ୍ଲାକ୍ସରୁ କାଢ଼ି ପିଅନ୍ତି । ଗୋଟାକ ବେଳେ ବାହାରି ଅଧଘଣ୍ଟା ବା ୪୫ ମିନିଟ୍‌ରେ ଉଆସରେ ପହଞ୍ଚି ଉତ୍ତମ ରୂପେ ସ୍ନାନ କରି ୨ ଘଣ୍ଟା ସମୟରେ ମଧ୍ୟାହ୍ନ ଭୋଜନ କରନ୍ତି । ୨ ଘଣ୍ଟାରୁ ୪ ଘଣ୍ଟା ପର୍ଯ୍ୟନ୍ତ ବିଶ୍ରାମ । ୫ ଘଣ୍ଟା ସମୟରେ ଟୀ ପାନ କରି ଲାଇବ୍ରେରୀକୁ ଆସନ୍ତି । ତାଙ୍କ ଲାଇବ୍ରେରୀ ଦେଖିବାର କଥା । ଇଂରାଜୀ, ଓଡ଼ିଆ, ହିନ୍ଦୀ, ୪/୫ଟି ଖବରକାଗଜ । ତା ପରେ ୭ ଘଣ୍ଟା ପର୍ଯ୍ୟନ୍ତ ବହିପଢ଼ା । ୭ ଘଣ୍ଟା ସମୟରେ ପୁଣି ପରିଷ୍କାର ପରିଚ୍ଛନ୍ନ ହୋଇ ଧୋତି, ପଂଜାବୀ, ଚଦର ଡ୍ରେସରେ ମାଣିକେଶ୍ୱରୀ ମନ୍ଦିର ଦର୍ଶନ ରାଣୀଙ୍କ ସହିତ । ସେଠାରେ ଏକ ଘଣ୍ଟା ବିତାଇ ଉଆସକୁ ଆସି ପିଲାମାନଙ୍କ ସହିତ ପାରିବାରିକ ହସଖୁସି । ରାତି ୧୦ ଘଣ୍ଟା ସମୟରେ ଶଯ୍ୟାକୁ ଯିବେ । ପୁନର୍ବାର ତା ପରଦିନ ସେହିପରି କାର୍ଯ୍ୟକ୍ରମ । ଦିଲ୍ଲୀରେ ଲୋକସଭା ସଦସ୍ୟ ଥିଲାବେଳେ ନିଜର ବ୍ୟକ୍ତିଗତ ସହାୟକଙ୍କୁ ନେଇଯାଆନ୍ତି । ସେଠାରେ ଏକାଦିକ୍ରମେ ପାର୍ଲିଆମେଣ୍ଟ ଅଧିବେଶନ ସାରି ଭବାନୀପାଟଣା ଫେରନ୍ତି । ସାଉଥ୍ ଦିଲ୍ଲୀରେ ଥିବା ଜଗନ୍ନାଥ ମନ୍ଦିର ପାଇଁ ତାଙ୍କର ଅବଦାନ ଅତୁଳନୀୟ । ହସଖସରେ ଗଠିତ ମନ୍ଦିର ପାଇଁ ଓ ନିର୍ମାଣ ପାଇଁ ଅର୍ଥ ଯୋଗାଡ଼ କରିବାରେ ସେ ମୁଖ୍ୟ ଭୂମିକା ନିର୍ବାହ କରିଥିଲେ । ସେ ବଲାଙ୍ଗୀର ଏବଂ ଢେଙ୍କାନାଳ ରାଜାଙ୍କର ବନ୍ଧୁ । ଢେଙ୍କାନାଳ ଯୁବରାଜ କାମାକ୍ଷାପ୍ରସାଦଙ୍କ ଶ୍ୱଶୁର ।

ଆମ୍ଭେମାନେ ଯାଇ ଲାଇବ୍ରେରୀରେ କିଛି ସମୟ ଅପେକ୍ଷା କରିବା ପରେ ଆସିଲେ । ବହୁତ ଅମାୟିକ ଏବଂ ଭଦ୍ର । ଇନ୍ଦ୍ରାବତୀ ଯୋଜନା ପାଇଁ ସେ କେତେ ପରିଶ୍ରମ କରି ଯୋଜନା କମିଶନର ମଂଜୁରୀ ପ୍ରାପ୍ତ କରାଇଛନ୍ତି କହିଲେ । ମାତ୍ର ଓଡ଼ିଶା ସରକାର ସେ ପର୍ଯ୍ୟନ୍ତ କାର୍ଯ୍ୟ ଆରମ୍ଭ କରାଉନାହାନ୍ତି ବୋଲି କ୍ଷୋଭରେ କହିଲେ । ସେ ମଧ୍ୟ କହିଥିଲେ କୃଷି Income Tax ଅଧିକ ଖାଦ୍ୟ ଉତ୍ପାଦନ କରିବାର

ପ୍ରତିବନ୍ଧକ । କେବଳ ଅତି ବଡ଼ ବଡ଼ ଲାଭଙ୍କରୀ ଫସଲ ଉପରେ ବସୁ । ମାତ୍ର ସାଧାରଣ ଚାଷୀ, ଯାହାର ଟ୫୦୦୦/- ନେଟ୍ ଆୟ ଉପରେ ନ ପଡୁ । ଏହିପରି ଅଧଘଣ୍ଟାଏ ଆଳାପ କଲାପରେ ଆମକୁ ବିଦାୟ ଦେଲେ । ମୋତେ ବହୁତ ଖୁସି ଲାଗିଲା ।

ରାଜା ମହାରାଜା ମାନଙ୍କର ଯୁବରାଜ ଓ ପିଲାମାନଙ୍କ ପାଇଁ ବ୍ରିଟିଶ୍ ସରକାର ଦୁଇଟି English Medium College I.A. standard ର ସ୍ଥାପନ କରିଥିଲେ । ସେ ଦୁଇଟି ହେଲା ରାଜସ୍ଥାନର Mayo College, Ajmir ଏବଂ ଅନ୍ୟଟି ହେଲା ମଧ୍ୟପ୍ରଦେଶ ରାୟପୁର । ତାର ନାମ ଥିଲା Prince Training College, Raipur । ସେଠାକାର ସଂସ୍କୃତ ପଣ୍ଡିତ ସ୍ୱର୍ଗତ ନରନାରାୟଣ ତ୍ରିପାଠୀ ମେଦିନୀପୁରର ଲୋକ । ଅତି ଉଚ୍ଚକୋଟୀର ଲୋକ । ମୋର ଦ୍ୱିତୀୟା କନ୍ୟା ଗାୟତ୍ରୀକୁ ସେ ସଂସ୍କୃତ ପଢ଼ାଉଥିଲେ । ଆମ ପରିବାରର ସମସ୍ତଙ୍କୁ ସେ ବହୁତ ଭଲ ପାଉଥିଲେ । ସେ ବାମଣ୍ଡା ରାଜା ଶ୍ରୀଯୁକ୍ତ ତ୍ରିଭୁବନ ଗଙ୍ଗଦେଓଙ୍କ ପ୍ରାଇଭେଟ୍ ସେକ୍ରେଟେରୀ ଥିଲେ ଓ ଜଣେ ବିଶ୍ୱସ୍ତ ସେକ୍ରେଟେରୀ ଭାବେ ଜୀବନର ଶେଷ ନିଶ୍ୱାସ ପର୍ଯ୍ୟନ୍ତ କାମ କରିଥିଲେ । ତାଙ୍କଠାରୁ ଶୁଣିଲି ସ୍କୁଲର ଶୃଙ୍ଖଳା ବହୁତ କଠୋର । ରାଜପୁତ୍ରମାନେ ଶୃଙ୍ଖଳା ଭଙ୍ଗ କଲେ ସେମାନଙ୍କୁ ଦଣ୍ଡ ଭୋଗିବାକୁ ପଡ଼େ । ନିଜର ଯୋତା ରଙ୍ଗଦେବା, ଲୁଗାପଟା ସଜାଡ଼ି ରଖିବା ଓ ନିତ୍ୟକର୍ମ ସାରି ଠିକ୍ ସମୟରେ ସମୟାନୁବର୍ତ୍ତିତା ରକ୍ଷା କରିବା ପ୍ରଭୃତି ଶିକ୍ଷା ଦିଆଯାଏ । ସେଥିଯୋଗୁ ଗଡ଼ଜାତ ରାଜାମାନେ ଦୀର୍ଘବର୍ଷ କାଳ ବ୍ରିଟିଶ ସରକାରଙ୍କ ଠାରୁ ପୂର୍ଣ୍ଣ ସାହାଯ୍ୟ ଓ ସମର୍ଥନ ଲାଭ କରୁଥିଲେ । କଳାହାଣ୍ଡି ମହାରାଜା ପ୍ରତାପକେଶରୀ ଦେଓ, ଢେଙ୍କାନାଳ ରାଜପୁତ୍ର କାମାକ୍ଷା ପ୍ରସାଦ ସିଂହଦେଓଙ୍କ ଶ୍ୱଶୁର ଏବଂ ବଲାଙ୍ଗୀର ମହାରାଜା ଶ୍ରୀଯୁକ୍ତ ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କର ପିଉସୀ ପୁଅ ଭାଇ । ଗଡ଼ଜାତ ରାଜାମାନଙ୍କର ନିଜ ନିଜ ମଧ୍ୟରେ ପ୍ରାୟ ସୁସଂପର୍କ ଥିଲା, କେବଳ ଅଳ୍ପ କେତେ ଗୋଟି ବ୍ୟତିକ୍ରମ ବ୍ୟତୀତ ।

ଏହିପରି ପୂର୍ବରୁ ୩ ଥର ଭବାନୀପାଟଣା ଯାଇଛି । ମାତ୍ର କଳାହାଣ୍ଡିର ପ୍ରକୃତ ରୂପ ଦେଖିଥିଲି ୧୯୬୮ ମସିହାରେ । ତାହା ବିଶଦ ଭାବରେ ବର୍ଣ୍ଣନା କରିବି ।

ଶ୍ରୀ ବାବାଜୀ ମହାପାତ୍ରଙ୍କ ବଦଳି ପରେ ତାଙ୍କ ସ୍ଥାନରେ ସି.ଟି.ଓ. ଆସିଲେ ଶ୍ରୀ ସୁଗାର ବାଗେ । ରାଞ୍ଚି ପାଖର ଜଣେ ଆଦିବାସୀ ଲୋକ । ବ୍ୟବହାର ଅତି ଉତ୍ତମ । ଆଦିବାସୀ ଲୋକ ହେବାରୁ ମୋତେ ପ୍ରବର୍ତ୍ତାଇଲେ, ''ସାର୍, କଳାହାଣ୍ଡିର ଜଙ୍ଗଲକୁ ଯିବା, ଶିକାର କରିବା । ଶିକାର କରିବା ଏବଂ ଜନ୍ତୁମାରିବାର ମୁଁ ପକ୍ଷପାତୀ ନୁହେଁ ।

ମାତ୍ର ନିଜେ ଜଙ୍ଗଲ ଜାଗାରୁ ଆସିଥିବାରୁ ଜଙ୍ଗଲ ଦେଖିବାକୁ ମୋର ବହୁତ କୌତୁହଳ ଜାତ ହେଲା ।

ସେଥିପାଇଁ ସ୍ଥିରକଲୁ ଶନିବାର ଗୋଟିଏ ଓଳି ଅଫିସ୍ କାମ ସାରି ମଧ୍ୟାହ୍ନ ଭୋଜନ ପରେ ୪ଟା ବେଳକୁ ଯିବୁ । ଏହି ଲେଖାଟିକୁ କଳାହାଣ୍ଡି ଆବିଷ୍କାର କହୁଛି । କାହିଁକି ନା ଯେପରି ଇଂଲଣ୍ଡର ଡାକ୍ତର Dr. Living Stone ଯାଇ ସାରା ଜୀବନଯାକ River Nile ବା ନୀଳନଦୀର ଉତ୍ପତ୍ତି ସ୍ଥଳ Congo ଅଞ୍ଚଳରେ ଜୀବନ ତ୍ୟାଗ କଲେ, ଆମ୍ଭେମାନେ ସେହିପରି ଜୀବନ ତ୍ୟାଗ କରିବା ଅବସ୍ଥାକୁ ଆସିଯାଇଥିଲୁ । ସେହି ଆବିଷ୍କାରକ ମହାତ୍ମାଙ୍କ ନାମ ଅନୁସାରେ Nile ନଦୀର ଜଳପ୍ରପାତକୁ Living Stone Fall ବୋଲି କୁହାଯାଏ ।

ଆମ୍ଭେମାନେ ସେପ୍ଟେମ୍ବର ମାସରେ ଅପରାହ୍ଣ ୪ଟା ବେଳେ ଜଣେ ପଞ୍ଜାବୀ ବନ୍ଧୁଙ୍କ ସହିତ ଭବାନୀପାଟଣା ଛାଡ଼ିଲୁ । ତା ପୂର୍ବରୁ ଜୁଲାଇ ଓ ଅଗଷ୍ଟ ମାସରେ ବର୍ଷାର ନାମଗନ୍ଧ ନାହିଁ । ପାଗ ଶୁଖିଲା ଥିଲା । ବର୍ଷାର କୌଣସି ଚିହ୍ନ ବର୍ଣ୍ଣ ନଥିଲା । ଆମ୍ଭେମାନେ ଯେମିତି ଝଗଡ଼ା ନଦୀ ପାର ହୋଇ କରଲାପାଟ ଆଡକୁ ଗତି କଲୁ ବର୍ଷା ଆରମ୍ଭ ହୋଇଗଲା । ପ୍ରଥମେ ଅଳ୍ପ ଅଳ୍ପ ଜଙ୍ଗଲ । ଜଙ୍ଗଲରେ ପଶିଲା ପରେ ଦେଖିଲୁ ଆମ୍ଭ ଜିପ୍ ସାମନାରେ ଗୋଟିଏ ମୃଗ ତାର ଶାବକଟି ସହ ଅତି ନିକଟରେ ପାର ହେଲା । ଟେକାଟାଏ ମାରିଦେଲେ ତାଙ୍କ ଦେହରେ ବାଜିବ । ବାଗେ ମୋତେ କହିଲେ ସାର, ଆପଣ ଟିକିଏ ଘୁଞ୍ଚିଗଲେ ମୁଁ ବନ୍ଧୁକଟିକୁ ପଛରୁ ଆଣି ଦୁଇଟିଯାକ ମାରି ଗଡ଼ାଇ ଦେବି । ତାହା ସେ କରିପାରିଥାନ୍ତେ । ମୋତେ କହୁଥିଲେ ସେ ବହୁତ ମୃଗ ସମ୍ବର ମାରିଛନ୍ତି । ବାଘ ପାଇଁ ଅଲଗା ମଞ୍ଚ ଦରକାର । ବାଘ ଏପରି ଜଙ୍ଗଲ ବାହାରକୁ ପଦା ଜାଗାକୁ ଆସିବେ ନାହିଁ । ମୁଁ ଘୁଞ୍ଚି ଯାଇଥିଲେ ବାଗେ ବନ୍ଧୁକ ଆଣି ଯୋଡ଼ିକ ଯାକ ପ୍ରାଣୀଙ୍କୁ ଆଖି ପିଛୁଳାକେ ମାରି ଦେଇଥାନ୍ତେ ।

ମାତ୍ର ମୁଁ ଜାଣି ଜାଣି ସାମାନ୍ୟ ଡେରି କରିଦେଲି । ଫଳରେ ଯୋଡ଼ିକ ଯାକ ଶିକାର ଚାଲିଗଲେ । ବାଗେ ମନ ଖରାପ କରି କହି କହି ଚାଲିଲେ, ସାର ଆପଣ ଡେରି କଲାରୁ ହାତ ପାଖରୁ ଜନ୍ତୁ ଦୁଇଟା ଖସି ଗଲେ ।

ରାସ୍ତାରେ ବଡ଼ ନିବିଡ଼ ଜଙ୍ଗଲ । ଜଙ୍ଗଲ ଆଡ଼େଇ ଆଡ଼େଇ ଯିବା କଥା । ଏହିପରି କଷ୍ଟରେ ଜଙ୍ଗଲ ପାର ହୋଇ ୪୦ ମାଇଲ ବାଟ ଗଲାପରେ ପଡ଼ିଲା କରଲା ପାଟ ଗାଁ । ରଜାଙ୍କ ଖମାର ଘର । ସେହି ଘରେ ରାତିରେ ବିଶ୍ରାମ । ରାତିରେ କୁକୁଡ଼ା ତରକାରୀ, ଶୁଖିଲା କାକୁଡ଼ି ଖଟା ଏବଂ ପରଟା । ବେଶ୍ ଉତ୍ତମ ଖାଦ୍ୟ ।

ରାତ୍ରି ଶେଷ ହେଲା । ମାତ୍ର ରାତି ୧୨ଟା ବେଳକୁ ବର୍ଷାର ତାଣ୍ଡବ ଲୀଳା । ଭୀଷଣ ବର୍ଷା ଚାଲିଛି । ବର୍ଷାରେ ଗୋଡ଼ କାଢ଼ି ବାହାରକୁ ଯିବା ଅସମ୍ଭବ । ଦିନମାନ ବର୍ଷା ଚାଲିଲା । କଫି ପିଇ ସକାଳେ ସାମାନ୍ୟ ଜଳପାନ କରି ମଧ୍ୟାହ୍ନ ଭୋଜନ ପାଇଁ ଆୟୋଜନ । ମୋତେ ଆମର ପଂଜାବୀ ସାଥି ଜଣକ ପଚାରିଲେ, ''ସାର୍, ଆପଣ ପାରା ମାଂସ ଖାଆନ୍ତି ? ମୁଁ ଏକାବେଳେ ମନା କଲି । ନା, ନା ଆମେ ବ୍ରାହ୍ମଣମାନେ ପକ୍ଷୀ ମାଂସ ଖାଇବା ମନା । କାରଣ ବ୍ରାହ୍ମଣମାନେ ହେଲେ ଦ୍ୱିଜ, ଥରେ ମାତା ଗର୍ଭରୁ ଜନ୍ମ ଦ୍ୱିତୀୟ ଥର ଉପନୟନ ବା ବ୍ରତ ଘର । ପକ୍ଷୀମାନେ ଦୁଇଥର ଜନ୍ମ । ସେମାନେ ଥରେ ମା ପେଟରୁ ଜନ୍ମ, ପୁଣି ଅଣ୍ଡା ଫୁଟିଲାବେଳକୁ ଜନ୍ମ । ତେଣୁ ସ୍ୱଜାତି ବୋଲି ପକ୍ଷୀ ମାଂସ ଖାଇବା ପୂରା ମନା । ହେଲେ ବେଳେବେଳେ କୁକୁଡ଼ା ମାଂସ ସାଙ୍ଗ ସାଥୀ ମେଳରେ ଖାଇଦେଉଛୁ । ମାତ୍ର ପାରା ମାଂସ ଏକାବେଳକେ ନିଷେଧ । ତେଣୁ ରାତିରେ କଅଣ ତରକାରୀ କରିବେ ? ଅଣ୍ଡା ତରକାରୀ ଏବଂ ଶୁଖିଲା କାକୁଡ଼ି ଖଟା । କୌଣସି ମତେ ଚଳିଗଲା । ଦ୍ୱିତୀୟ ରାତିରେ ରନ୍ଧାବଢ଼ା ଚାଲିଛି, ଏହି ସମୟରେ ପାଖ ଗ୍ରାମ ଦେବୀଙ୍କ ପାଖରେ ଖୁବ୍ ଜୋରରେ ଢୋଲ ଓ ବୀର କାହାଳି ବାଜି ଉଠିଲା । ବାଜା ବହୁତ ଜୋରରେ ବାଜିଲା ଏବଂ ହରିବୋଲ ହୁଳହୁଳିରେ ଗଗନ ପବନ ମୁଖରିତ ହେଲା । ମୁଁ ସେଠାକାର ଜଣେ ଲୋକକୁ ପଚାରିଲି କାହିଁକି ଏତେ ପାଟି ? ଲୋକମାନେ କହିଲେ ଜନ୍ତାଳ ହେଉଛି । ରାତି ଦଶଟା ପର୍ଯ୍ୟନ୍ତ ଚାଲିବ । ମୁଁ ଶୀଘ୍ର ଖାଇଦେଇ ଖମାର ପଛପଟେ ଜନ୍ତାଳ ଦେଖିବାକୁ ଯାଇ ହାଜର । ଜନ୍ତାଳ କିପରି ହେଉଛି ଶୁଣନ୍ତୁ ।

ରାତି ୮ ଘଣ୍ଟା ସମୟରେ ଖୁବ୍ ଜୋରରେ ଢୋଲ ଏବଂ ମୁଗୁରା ବାଦ୍ୟ, ବୀର କାହାଳି ବାଜି ଉଠିଲା । ସାରା ଗାଁ'ର କେନ୍ଦ୍ର ସ୍ଥଳ ରାଜାଙ୍କ ଖମାର ଘର ପଛପାଖ । ସେଠାରେ ଗ୍ରାମ ଦେବତୀଙ୍କ ଆସ୍ଥାନ । ଗଛମୂଳେ ଗୋଟିଏ ଛୋଟିଆ ମନ୍ଦିର । ଦେବୀଙ୍କ ମୁଣ୍ଡରେ ବହୁତ ସିନ୍ଦୂର ଲାଗିଛି । କାଳିସୀ ଯାଉଁଳି ବେତ ଧରି ଖୁବ୍ ଜୋର୍‌ରେ ଝୁଲି ଝୁଲି କଥା କହୁଛନ୍ତି । ପୁରୁଷ, ସ୍ତ୍ରୀ ଓ ବଡ଼ ବଡ଼ ପିଲା ସମେତ ବହୁତ ଲୋକ ସମବେତ । କାଳିସୀ କହିଲେ, ''ମୁଁ ପ୍ରତ୍ୟକ୍ଷ ଦେବୀ । ମୋତେ ରକ୍ତଦେଇ ସନ୍ତୁଷ୍ଟ କର । ତାପରେ ପଣା ତିଆରି ହେଲା । କ୍ଷୀର, ମହୁ, ଛେନା, କଦଳୀ ସବୁ ମିଶାଇ ପଣା । ସେ ଭୋଗ ସାରିଲା ପରେ ପଶୁ ବଳି । ପ୍ରଥମେ ଗୋଟିଏ ବୋଦା ବଳି । ବୋଦାକୁ ଗୋଟିଏ କାଠ ଫାସରେ ଦୁଇଜଣ ଦୁଇଖଣ୍ଡ ବାଡ଼ିରେ ମୁଣ୍ଡକୁ ଠେଲି ଧରିଥାନ୍ତି । ଆଉ ଜଣେ ଘାତକ ନୂତନ ବସ୍ତ୍ର ପିନ୍ଧିଛି । ମୁଣ୍ଡରେ ସିନ୍ଦୂର ଓ ବେକରେ ଫୁଲମାଳ । ସେ ଗୋଟିଏ ଫାର୍ସା ଧରିଛି । ଉପସ୍ଥିତ ଜନତା ହରିବୋଲ, ହୁଳହୁଳି, ଜୟ ମା

ଗ୍ରାମ ଦେବତୀ କହି ଯେତେବେଳେ ଚତୁର୍ଦ୍ଦିଗ ପ୍ରକମ୍ପିତ କଲେ ଏବଂ କାଳିସୀ ଖୁବ୍ ଜୋର୍‌ରେ ବେତ ଧରି ଝୁଲିଲେ, ସେତିକିବେଳେ ଘାତକ ତାର ଉତ୍ତୋଳିତ ଫାର୍ସାର ଗୋଟିଏ ଚୋଟରେ ବୋଦାର ମୁଣ୍ଡ ଗଣ୍ଡି ଅଲଗା କରିଦେଲା । ମୁଣ୍ଡଟା ଛିଟିକି ଯାଇ ୪ ହାତ ଦୂରରେ ପଡ଼ି ଛଟପଟ ହେଉଥାଏ । କାଳିସୀ ଟିକିଏ ରକ୍ତ ଦେବୀଙ୍କୁ ଅର୍ପଣ କଲାପରେ ଆଉ ଟିକିଏ ପାଟିରେ ମାରିଲେ । ଏହି ବୋଦାଟି ହେଉଛି କୋଠ ବୋଦା ।

ତା ପରେ ବ୍ୟକ୍ତିଗତ ମାନସିକ ଅନୁସାରେ ଚାଲିଲା ପଶୁବଳି । ଛେଳି ପ୍ରାୟ ୫୦ ସରିକି । ଆଉ ଗଞ୍ଜା କୁକୁଡ଼ା ଓ ପାରା ମିଶି ୨ ଶହ ହେବ । ପକ୍ଷୀମାନଙ୍କୁ ବଡ଼ ବଡ଼ ଦୁଇଖଣ୍ଡ ଆଙ୍କୁଡ଼ାରେ ଦୁଇଜଣ ଠେଲି ଧରିଥାନ୍ତି । ଘାତକର ଏକା ପାହାରରେ ଶେଷ । ସେହି ମନ୍ଦିର ଖଣ୍ଡ ମଣ୍ଡଳରେ କେବଳ ରକ୍ତ ନଦୀ ବୋହିଗଲା । ବାଜା ବାଜୁଥାଏ । ଯେଉଁମାନଙ୍କର ମାନସିକ ବଳି ପଡ଼ିଲା, ସେମାନେ ଦେବୀଙ୍କ ନିମିତ୍ତ କିଛି ମାଂସ ପ୍ରସାଦ ରଖିଦେଇ ଅବଶିଷ୍ଟ ଟୋକେଇରେ ଭରି ପତ୍ର ଘୋଡ଼ାଇ ନେଉଥାନ୍ତି । ମୁଁ ଜଣକୁ ପଚାରିଲି, ବର୍ତ୍ତମାନ ତ ରାତି ୧୨ ଘଣ୍ଟା ହେଲାଣି । ଏବେ ଏହାକୁ କଅଣ ଖାଇବ ? ସେ ଉତ୍ତର ଦେଲେ, ''ନାହିଁ ନାହିଁ, ଏବେ ନୁହେଁ । କାଲି ସକାଳେ ଗାଧୁଆ ପାଧୁଆ ସାରି ଗରମ ଭାତ ଓ ମାଂସ ତରକାରୀ ରନ୍ଧାଯିବ । ନିଜ ପରିବାର ଓ ନିଜ ଆପଣାର ଲୋକଙ୍କୁ ଖାଇବାକୁ ଦେବୁ । ଏହା ହେଉଛି ଆମର କୌଳିକ ପରଂପରା ।

ଏବେ ଆମ୍ଭେମାନେ ମନ୍ଦିରମାନଙ୍କରେ ପଶୁବଳି ବନ୍ଦ କରିବାକୁ ଆନ୍ଦୋଳନ କରୁଛୁ । ଯେପରି ଯାଜପୁରର ପ୍ରସିଦ୍ଧ ମା ବିରଜାଙ୍କ କ୍ଷେତ୍ର, ବାଣପୁରର ଭଗବତୀ, କଟକର କଟକଚଣ୍ଡୀ । ଏସବୁ ଦୁର୍ଗାପୂଜା ସମୟରେ । କେତେ ଜାଗାରେ ବନ୍ଦ ହୋଇଗଲାଣି । ଆଉ କେତେ ଜାଗାରେ ଚାଲିଛି । ପୁରାତନ ଯୁଗରେ ଯେତେବେଳେ ପଶୁବଳି ବହୁତ ବେଶୀ ହେଲା ଏବଂ ଧର୍ମ ନାମରେ କୁସଂସ୍କାର ଅଧିକ ହେଲା, ଏସବୁ କୁସଂସ୍କାର ବନ୍ଦ କରିବା ପାଇଁ ଭଗବାନ ନବମ ଅବତାରରେ ବୁଦ୍ଧ ରୂପେ ଧରାଧାମରେ ଅବତରଣ କଲେ ।

କବି ଜୟଦେବ ଦଶାବତାର ବନ୍ଦନାରେ ଲେଖିଗଲେ:-

ନିନ୍ଦସି ଯଜ୍ଞ ବିଧେରହହ ଶ୍ରୁତି ଜାତଂ<br>
ସଦୟ ହୃଦୟ ଦର୍ଶିତ ପଶୁଘାତଂ,<br>
କେଶବ ଧୃତ, ବୁଦ୍ଧ ଶରୀର<br>
ଜୟ ଜଗଦୀଶ ହରେ, ଜୟ ଜଗଦୀଶ ହରେ ।

ଏହିପରି ଜନ୍ତାଳ ବା ଦେବୀପୂଜା ସଂକ୍ଷିପ୍ତ ଆକାରରେ ଆମ ଗ୍ରାମର ଖଣ୍ଡୁରୀ ଠାକୁରାଣୀଙ୍କ ଦେବୀପୀଠରେ ଚୈତ୍ରମାସରେ ଅନୁଷ୍ଠିତ ହୁଏ । ମାତ୍ର କଳାହାଣ୍ଡିର କରଲାପାଟର ଜନ୍ତାଳ ଏହାଠାରୁ ବହୁତ ବଡ଼ ଆକାରରେ ଏବଂ ଯାକଯମକରେ କରାଯାଏ । କେବଳ ଦେଖିଲେ ଜାଣିବ ଲୋକମାନଙ୍କର କି ବିଶ୍ୱାସ ଓ ନିଷ୍ଠା !

ଛାଡ଼ନ୍ତୁ ସେ କଥା । ଏବେ ମୁଁ ଖମାରକୁ ଫେରି ଆସିଲି । ରାତିରେ କୌଣସି ମତେ ଶୋଇଗଲୁ । ସକାଳ ୫ ଘଣ୍ଟା ବେଳକୁ ଦେଖିଲୁ ରାତିତମାମ ମୂଷଳ ଧାରାରେ ବର୍ଷା । ଚାରିଆଡ଼ ଜଳମଗ୍ନ । ବର୍ଷା ଅଳ୍ପ ପରିମାଣରେ ଚାଲିଛି । ସ୍ଥିର କଲୁ ଯେ କୌଣସି ମତେ ସୋମବାର ସକାଳେ ଟିକିଏ ଟିକିଏ ଚା ଖାଇ ବାହାରିଆସିବୁ । କରଲାପାଟ ଏତେ ବଡ଼ ବସ୍ତି । ମାତ୍ର ଚୂଡ଼ା, ଗୁଡ଼, ମୁଢ଼ି, ବିସ୍କୁଟ୍ କିଛି ମିଳେ ନାହିଁ । ଗୋଟିଏ କଣ୍ଟ୍ରୋଲ ଦୋକାନ । କେବଳ ବଗଡ଼ା ଚାଉଳ ଏବଂ କିରୋସିନି । ଆଳୁ ବେଳେ ବେଳେ ମିଳେ । କିଏ କିଣିବ, ଆସିବ କେଉଁଠୁ ? କଳାହାଣ୍ଡି ଅଭ୍ୟନ୍ତର ଗ୍ରାମରେ ଆପଣଙ୍କ ପକେଟରେ ହଜାରେ ଟଙ୍କା ଥାଉ ପଛକେ, ଚୂଡ଼ା ବା ମୁଢ଼ି ପୋଷେ ପାଇବେ ନାହିଁ । ଲୋକେ ଧାନ ଚାଷ କରନ୍ତି ନାହିଁ । ଯେଉଁ ଧାନ ଗଣ୍ଡାକ ହେବ ସେଥିରେ ହାଣ୍ଡିଆ ତିଆରି ହେବ । ବାହାର ଲୋକ କେଉଁଠୁ ଯାଉନଥିଲେ । ଏବେ ବେଦାନ୍ତ ଆଲୁମିନିୟମ କାରଖାନା ପାଇଁ କେତେକ ଲୋକ ଯାଉଛନ୍ତି । କରଲୋପାଟଠାରୁ ଥୁଆମୂଳ-ରାମପୁର ଆଉ ୨୦ ମାଇଲ୍ ବାଟ । ଥୁଆମୁଳ-ରାମପୁରଠାରୁ କାଶୀପୁର ଆଉ ୪୦ ମାଇଲ୍ । ଏବେ କାଶୀପୁର କୋରାପୁଟ ଜିଲ୍ଲାରେ ମିଶିଛି । ଲକ୍ଷ୍ମୀପୁର ଠାରୁ ପ୍ରାୟ ୮୦ ମାଇଲ୍ । ରାସ୍ତା ଟିକିଏ ଭଲ ବୋଲି ଶୁଣିଛି । ମୁଁ ଯାଇ ନାହିଁ । ଆମେ ଆଉ ଆଗକୁ ଯିବାକୁ ସାହସ ନକରି କୌଣସି ମତେ ଭବାନୀପାଟଣା ଫେରିବାକୁ ବ୍ୟଗ୍ର । ମୋର ରବିବାର ସନ୍ଧ୍ୟା ମଧ୍ୟରେ ଫେରିଯିବାର କଥା । ସେଦିନ ସୋମବାର ହେଲାଣି । ପୁଣି କେତେଦିନ ଲାଗିବ କେଜାଣି ।

ଜିପ୍‌ରେ ମୁଁ, ଆମର ଅଫିସର ସୁଗର ବାଗେ, ସେ ପଂଜାବୀ ଭଦ୍ରଲୋକ ଏବଂ ଡ୍ରାଇଭର ଏପରି ୪ ଜଣ । ରାସ୍ତାଗୁଡ଼ିକ ଜଳମଗ୍ନ । ବର୍ଷା ଅଳ୍ପ ଅଳ୍ପ ହେଉଛି । ଜଙ୍ଗଲ ମଝିରେ ଦେଖିଲୁ ଦୁଇଜଣ ମଧ୍ୟବୟସ୍କ ଲୋକ ଦକ୍ଷିଣ ଦିଗରୁ ଆସୁଛନ୍ତି । ସେମାନଙ୍କୁ ଦେଖି ଗାଡ଼ି ଅଟକାଇ ପଚାରିଲୁ, ''କେଉଁଠୁ ଆସିଲ''। ସେମାନେ କହିଲେ, ଆମ୍ଭେ ସ୍ୱାସ୍ଥ୍ୟ ବିଭାଗର ମ୍ୟାଲେରିଆ ନିରାକରଣ କର୍ମଚାରୀ । ଏଠାରୁ ୧୦ ମାଇଲ ଦୂର ଗ୍ରାମରେ ଅବସ୍ଥାପିତ । ଆମର ଚାଉଳ ପଅରଦିନ ସରିଗଲା । ଚାଉଳ କିଣିବା ପାଇଁ କରଲାପାଟ ଯିବାକୁ ବାହାରିଲୁ କାଲି ଉପରବେଳା । ବର୍ଷା ଆରମ୍ଭ ହେଲା । କ୍ରମେ

ମୂଷଳଧାରାରେ ବର୍ଷା । ବାଟରେ କଅଣ କରିବୁ । ମେଘରେ ଲୁଗାପଟା ଜୁଡୁବୁଡୁ । ପେଟ ଆଟୁପାଟୁ ଭୋକରେ । ମାତ୍ର ଏହି ସମୟରେ ଆମ୍ଭେ ମହାବିପଦର ସମ୍ମୁଖୀନ ହେଲୁ । ମହାବଳ ବାଘ ହାବୁଡ଼ରେ ପଡ଼ିଲୁ । ଆମେ କଅଣ ଚାଉଳ କିଣିବୁ ? ଆମେ ଦୁଇଜଣ ଯାକ ବାଘ ପେଟରେ ଚାଉଳ ହୋଇଥାନ୍ତୁ । ବାଘର ଆଖି ଦୂରରୁ ଦେଖି ଓ ଗନ୍ଧବାରି ଗୋଟିଏ ବଡ଼ ଗଛ ଉପରକୁ ଚଢ଼ିଗଲୁ । ରାତିଯାକ ସେହି ଗଛ ଉପରେ ଚଢ଼ି ରହିଲୁ । ବାଘ ତଳେ ହେଣ୍ଟାଳ ମାରି ଲାଙ୍ଗୁଡ଼ ପିଟି ଗଛ ଚାରିକଡ଼ ଘେରା ଖାଉଛି । ଖୁବ୍ ଜୋରରେ ହୁଙ୍କାର କରୁଛି । ବାଘ ଏହିପରି ରାତିଯାକ ରହିଲା । ଆମ୍ଭେ ଦୁହେଁ ସ୍ଥିର କଲୁ ଯେ କାଳେ ଆଖି ପଡ଼ିଗଲେ, ହାତ ହୁଗୁଳା ହୋଇଗଲେ, ତଳେ ପଡ଼ିଯିବୁ ଓ ବାଘ ସଙ୍ଗେ ସଙ୍ଗେ ଖାଇଦେବ । ତେଣୁ ଆମ ଗାମୁଛାରେ ଆମ କମରକୁ ଗଛ ଡାଳରେ ଭଲ ଭାବରେ ବାନ୍ଧି ରହିଲୁ । ବାବୁ, କରଲାପାଟ ଗାଁ ଆଉ କେତେବାଟ ? ଆମେ କହିଲୁ ଆଉ ୫/୬ ମାଇଲ । ଚାଲି ଚାଲି ଯା । ସେମାନେ ଆମକୁ ମାଗିଲେ, ତୁମ ପାଖରେ ବିଡ଼ି, ସିଗାରେଟ, ନିଅାଁପେଡ଼ି ବା ବିସ୍କୁଟ୍ କିଛି ଅଛି କି ? ଆମେ କହିଲୁ, ଆମ ଦଶା ତଦ୍ରୂପ । ଆମେ କିପରି ଭବାନୀପାଟଣା ଫେରିଯିବୁ ସେହି ଚିନ୍ତା । ତୁମେ ଚାଲିକରି ଯା । କରଲାପାଟରେ ଚାଉଳ ପାଇବ ।

ସେମାନଙ୍କର ଦୁର୍ଦ୍ଦଶା ଦେଖି ମୋର ମନରେ ବହୁତ ଦୁଃଖ ହେଲା । ସେତେବେଳେ ଦିନ ୧୦ ଘଣ୍ଟା । ଆସ୍ତେ ଆସ୍ତେ ବର୍ଷାର ବିରାମ ହେଲା । ମାତ୍ର ତଥାପି ଝିପୁରୁ ଝିପୁରୁ ଚାଲିଥାଏ । ଦିନ ପ୍ରାୟ ୧୨ ଘଣ୍ଟା ସମୟରେ ଶଗଡ଼ା ନାମକ ଏକ ପାର୍ବତ୍ୟ ନଦୀ ପାଖରେ ଆମେ ଉପସ୍ଥିତ ହେଲୁ । ନଦୀଟି ପ୍ରାୟ ୨୦୦ ଫୁଟ ଚଉଡ଼ା । ମାତ୍ର ସ୍ରୋତ ପ୍ରଖର । ସାପର ମୁଣ୍ଡ କାଟେ । ପ୍ରଥମେ ଜିପ୍ ରଖିଦେଇ ପାଣିରେ ପଶି ପାର ହେବାକୁ ଚେଷ୍ଟା କଲୁ । ମାତ୍ର ସେ ପାଖର ଲୋକ ପାଟିକରି କହିଲେ, ''ବାବୁମାନେ, ଏପରି ସାହସ କରନାହିଁ । ଏହାର ଏକ ମାଇଲ ନିମ୍ନରେ ଏକ ଜଳପ୍ରପାତ ଅଛି । ସେଥିପାଇଁ ସ୍ରୋତ ପ୍ରଖର । ନଦୀକୁ ପଶିକରି ଯିବା ବା ସନ୍ତରଣ କରି ଯିବାକୁ ଚେଷ୍ଟା କଲେ, ପ୍ରଖର ସ୍ରୋତରେ ଭାସିଯାଇ ପ୍ରପାତରେ ପିଟି ହୋଇ ମରିଯିବ । ତୁମ ମୃତଦେହ ମିଳିବ କି ନାହିଁ । ଆହୁରି ଗୋଟିଏ ବିପଦ । ଛୋଟ ଛୋଟ ଜଙ୍ଗଲୀ ସାପ ପାଣିରେ ଭାସି ଆସୁଛନ୍ତି । ନାକ ବା ପାଟିରେ ପଶିଗଲେ ଜୀବନ ଶେଷ । ଏହିପରି ନଦୀରେ ପଶିକରି ପାରହେବା ଭଳି ଦୁଃସାହସିକ କାର୍ଯ୍ୟରୁ ନିବୃତ୍ତ ହେଲୁ । କଅଣ କରିବା, କଅଣ ଖାଇବା, ଏହି ଚିନ୍ତା । ଦରିଦ୍ର ପଞ୍ଚାକ୍ଷର ମନ୍ତ୍ର ଜପ ଆରମ୍ଭ କଲୁ । ଆମର ସାଥୀ ପଂଜାବୀ ଭଦ୍ରଲୋକ କହିଲେ, ମୁଁ ଯାଏ, ତଳ ମୁଣ୍ଡରେ

ମାଇଲିଏ ବାଟ ଗଲେ ସ୍ଥାନୀୟ ଲୋକଙ୍କୁ ପଚାରି ଆସିବି । ଆମ ଅଫିସର ଓ ଡ୍ରାଇଭର ଛତା ଆବୁଆଳ କରି ପତ୍ର କାଠିକୁଟା ସଂଗ୍ରହ କରି ହାତରେ ରୁଟି କରି ସେହି ନିଆଁରେ ସେକିବାକୁ ଚେଷ୍ଟା କଲେ । ହାତ ତାତି ଯାଉଥାଏ । କୌଣସି ମତେ ଅଧାବାଲି ମିଶା ୪ ଖଣ୍ଡ ରୁଟି ଅଧାପୋଡ଼ା ଅଧାକଂଚା ହେଲା । ସେଇଆକୁ ଖାଇ ନଦୀର ଗୋଳିଆ ପାଣି ବୋତଲେ ବୋତଲେ ପିଇଲୁ । ପଂଜାବୀ ସାଥୀଙ୍କ ପାଇଁ ଖଣ୍ଡିଏ ଥିଲା । ସେ ସେଟାକୁ ଖାଇ କହିଲେ, ‘‘ଏଠାରୁ ଅଧ ମାଇଲ୍ ତଳେ ଦୁଇଗୋଟି ଶାଳଗଛ ଦୁଇପଟୁ କାଟି ପକାଇଛନ୍ତି । ପାଣିରେ ଗୋଡ଼ ନ ବୁଡ଼ାଇ ସେହି ଶାଳ ଗଛରେ ଗୁରୁଣ୍ଡିଲା ପରି ଘୁଷୁରି ଘୁଷୁରି ଧୀରେ ଧୀରେ ଅତି ସନ୍ତର୍ପଣରେ ଗଲେ ନଦୀ ପାର ହୋଇଯିବ । ଆମେ ଜିପ୍‌କୁ ଡ୍ରାଇଭର ଜିମା ଦେଲୁ । ତାକୁ ନିର୍ଦ୍ଦେଶ ଦେଲୁ ତୁମେ ଏହି ଜିପ୍‌ରେ ଥାଅ । ପାଣି କମିଲେ ବା ଆମ ଲୋକ କେହି କାଲି ସକାଳେ ଆସିଲେ ଯିବ ।

ଡ୍ରାଇଭରକୁ ଏହିପରି ନିର୍ଦ୍ଦେଶ ଦେଇ ଆମେ ତିନିଜଣଯାକ ପ୍ୟାଣ୍ଟ ଖୋଲି କେବଳ ଅଣ୍ଡରଓୟାର ପିନ୍ଧି ଭଗବାନଙ୍କୁ ସ୍ମରଣ କରି ସନ୍ଧ୍ୟା ୫ଟା ବେଳକୁ କଟା ହୋଇଥିବା ଶାଳଗଛ ପାଖକୁ ଆସିଲୁ । ପଞ୍ଜାବୀ ଭଦ୍ରଲୋକ ଆଗରେ ରହିଲେ କାରଣ ସେ ସବୁଠାରୁ ସାହସୀ । ମୁଁ ମଝିରେ ଓ ବାଗେ ବାବୁ ସବା ପଛରେ । ପ୍ୟାଣ୍ଟଟିକୁ ବେକରେ ଗୁଡ଼େଇ ଦେଲୁ । ଟଙ୍କା ପଇସା ପ୍ୟାଣ୍ଟର ଚୋରା ପକେଟ୍‌ରେ ହେପାଜତରେ ରଖି ନଦୀକାଠ ଉପରେ ଗୁରୁଣ୍ଡି ଗୁରୁଣ୍ଡି ଆସିଲୁ । ତଳେ ଅଗାଧପାଣି । ପଡ଼ିଗଲେ କେଉଁଆଡ଼େ ଭାସିଯିବ ଏବଂ ଜଳପ୍ରପାତରେ ପିଟି ହୋଇ ମରିଯିବ । ମାତ୍ର ମୋର ବିଶ୍ୱାସ ଥାଏ- ରଖେ ହରି, ମାରେ କିଏ, ମାରେ ହରି ରଖେ କିଏ ? ଯାହାକୁ ରଖିବେ ଅନନ୍ତ, କି କରିପାରେ ବଳବନ୍ତ । ନଦୀ ଏପାଖକୁ ଆସିଲାବେଳକୁ ସନ୍ଧ୍ୟା ହେଲା ପ୍ରାୟ । ସନ୍ଧ୍ୟା ୬ ଘଣ୍ଟା । ଏପାରିରେ ଶୁଣିଲୁ, ଗୋଟିଏ ବାଘୁଣୀର ଛୁଆକୁ ଶିକାରୀମାନେ ତା ପୂର୍ବଦିନ ମାରି ଦେଇଛନ୍ତି । ତେଣୁ ବାଘୁଣୀ ରକ୍ତମୁଖା । ସନ୍ଧ୍ୟା ହେଲେ ଜଙ୍ଗଲରେ ଘୋର ଶବ୍ଦ କରି ବୁଲୁଛି । ବହୁତ ଉତ୍ପାତ କରିବ । ଶଗଡ଼ା ଡାକବଙ୍ଗଳା ଏଠାକୁ ୧୦ କିମି ବାଟ, କୌଣସିମତେ ଚାଲିଯାଆନ୍ତୁ ଅତି ସତର୍କରେ । ଆଉ ୨ ଜଣ ସାଥୀ ଦେଖାହେଲେ । ସନ୍ଧ୍ୟା ୭ ଘଣ୍ଟା ଠାରୁ ରାତି ୧୦ ଘଣ୍ଟା ପର୍ଯ୍ୟନ୍ତ ଭୋକ ଉପାସରେ ଚାଲି ଚାଲି ନୟାନ୍ତ । ମୋତେ ମଝିରେ ରଖି ବନ୍ଧୁକ ଧାରୀ ଦୁଇସାଥୀ ଆଗପଛ ହୋଇ ସତର୍କରେ ଚାଲିଲେ । ବାଘୁଣୀର ଶବ୍ଦ ଦୂରରୁ ଶୁଣାଯାଉଥାଏ । ପ୍ରାଣ ଭୟରେ ଭଗବାନଙ୍କୁ ସ୍ମରଣ କରି କରି ଆସିଲୁ । ବାଗେ ଖ୍ରୀଷ୍ଟିଆନ୍ ଲୋକ, ଯୀଶୁଙ୍କ ନାମ ଉଚ୍ଚାରଣ କରୁଥାନ୍ତି । ପଞ୍ଜାବୀ ସାଥୀ ଜୟଗୁରୁ

ଛୟଗୁରୁ କହି ଆମେ ୬ ଜଣ ଲୋକ ରାତି ୧୧ ଘଣ୍ଟା ସମୟରେ ଶଗଡ଼ା ବଙ୍ଗଳାରେ ପହଞ୍ଚିଲୁ । ବର୍ଷାଯୋଗୁ ବଙ୍ଗଳା ଖାଲି । ମାତ୍ର ମରାମତି ଅଭାବରୁ ଘର ଭିତରେ ପାଣି ବାହାରେ ପାଣି । ବିଛଣାପତ୍ର ଶୂନ । ଯୋଡ଼ିଏ ଟେବୁଲ୍ ଆଣି ଦେଲେ । ମୁଁ ଏବଂ ବାଗେ ଗୋଟିଏ ଗୋଟିଏ ଟେବୁଲ୍‌ରେ ଶୋଇବା କଥା । ନିଜ ଗାମୁଛାରେ ପୋଛାପୋଛି କରି ଶୋଇବା କଥା । ଖାଇବୁ କଅଣ । ଭଗବାନଙ୍କ କୃପାରୁ ଅରକ୍ଷିତକୁ ଦଇବ ସାହା ।

ବାଗେ ବାବୁଙ୍କ ସ୍ତ୍ରୀ ବହୁତ ବୁଦ୍ଧିମତୀ । ସେ ଗୋଟିଏ ପ୍ରାଇଭେଟ୍ ଗାଡ଼ିରେ ୧୫ ମାଇଲ୍ ବାଟ ଜଣେ ଚପରାଶି ହାତରେ ୧୨ ଖଣ୍ଡି ପରଟା, ଆଳୁଭଜା ଓ କିଛି ଆଚାର ପଠାଇଥିଲେ । ମାତ୍ର ରାତି ଓ ନଦୀରେ ବହୁତ ପାଣି ଓ ସ୍ରୋତ ଯୋଗୁ ସେ ଏ ପାଖକୁ ଆସି ନପାରି ଟିଫିନ୍ ବାଟି ଗୋଟିଏ ଗୋଟିଏ ବ୍ୟାଗ୍‌ରେ ପୁରାଇ ବାଉଁଶରେ ବାନ୍ଧି ଏପାରିକୁ ବଢ଼ାଇ ଦେବାରୁ ଆଉ ଜଣେ ଲୋକ ଅଣ୍ଟାଏ ପାଣିରେ ସେ ପାଖରେ ପଶି ତାକୁ ଧରି ବ୍ୟାଗଟିକୁ ନେଇ ବଙ୍ଗଳାରେ ରଖିଥିଲେ । ବଙ୍ଗଳା ଚୌକିଦାର ଆମକୁ ଏ ଶୁଭ ଖବର ଦେଲା । ଆମେ ତା ପୂର୍ବରୁ କିଛି ଖାଇନାହୁଁ । ଏତେ ଭୋକ ହେଉଛି ଯେ ଜଣେ ଦୁଇଜଣ ସବୁତକ ଖାଇଦେବୁ । ମାତ୍ର ମୋ ପରାମର୍ଶରେ ତା ନକରି ଯେଉଁ ଦୁଇଜଣ ବାଟୋଇ ଆମ ସଙ୍ଗରେ ଦଶ ମାଇଲ ବାଟ ଚାଲି ଚାଲି ଆମକୁ ବାଟ ବତାଇ ଆଣିଥିଲେ, ସମସ୍ତେ ବାଣ୍ଟିକରି ପରଟା, ଆଳୁଭଜା ଓ ଆଚାର ଖାଇ ଦିବ୍ୟ ସନ୍ତୋଷ ଲାଭ କଲୁ । ବୋତଲେ ବୋତଲେ ଗୋଳିଆ ନଦୀ ଜଳ ପିଇଲୁ । ତା ପରେ ଭଗବାନଙ୍କୁ ସ୍ମରଣ କରି ଓଦା ଗାମୁଛାକୁ ମୁଣ୍ଡତଳେ ତକିଆ ପରି ଦେଇ ଟେବୁଲ୍ ଉପରେ ଶୋଇଗଲୁ । ସକାଳେ ୪ ଘଣ୍ଟା ବେଳକୁ ନିଦ ଭାଙ୍ଗିଲା । ଯାହା ଯେମିତି ନିତ୍ୟକର୍ମ ସାରି ସକାଳ ୬ ଘଣ୍ଟା ବେଳକୁ ପୁଣି ଚାଲି ଚାଲି ୬ ମାଇଲ୍ ବାଟ ଶଗଡ଼ା ନଦୀ କୂଳକୁ ଆସିଲୁ । ବଢ଼ି ଛାଡ଼ିଯାଇଥାଏ । କଷ୍ଟେ ମଷ୍ଟେ ନଦୀ ପାର ହୋଇ ଏ ପାଖକୁ ଆସିଲାବେଳକୁ ଆମ ଗାଡ଼ି ଛିଡ଼ା ହୋଇଛି । ସେହି ଗାଡ଼ିରେ ପୁଣି ୧୫ ମାଇଲ୍ ବାଟ ଆସି ଦିନ ୧୨ ଘଣ୍ଟା ବେଳକୁ ଭବାନୀପାଟଣାରେ ପହଞ୍ଚିଲୁ । ମୋର ଗାଡ଼ି ଏବଂ ଡ୍ରାଇଭର ମୋତେ ଭବାନୀପାଟଣାରେ ଅପେକ୍ଷା କରିଥିଲେ । ସମ୍ବଲପୁରରୁ ଆମ ପରିବାରରୁ ଘନ ଘନ ଫୋନ ଆସୁଛି । ମୁଁ ପହଞ୍ଚି ଖବର ଦେଲି ମୁଁ ତା ପରଦିନ ୧୨ ଘଣ୍ଟା ବେଳେ ପହଞ୍ଚିବି । ମୋ ପାଇଁ ବ୍ୟସ୍ତ ହେବ ନାହିଁ । ମୁଁ ନିରାପଦରେ ଅଛି ।

ଖାଇସାରି ଦିନ ୨ ଘଣ୍ଟା ସୁଦ୍ଧା ଭବାନୀପାଟଣା ଛାଡ଼ିଲି । କେଶିଙ୍ଗା ଦେଇ ଗଲେ ବେଲଗାଁ ଘାଟରେ ତେଲ ନଦୀ ପାରିହେବ । ସନ୍ଧ୍ୟା ୫ଟା ବେଳକୁ ବେଲ ଗାଁ ଘାଟ । ତେଲ

ନଦୀ କି ଭୟଙ୍କର ଦିଶୁଛି । ପ୍ରବଳ ପାଣି ସ୍ରୋତ । ଦୁଇଟି ଡଙ୍ଗା ଚାପ କରି ଗାଡ଼ି ପାର ହେଉଛି । ଡ୍ରାଇଭରକୁ କହିଲି ତୁମେ ଆଗ ଗାଡ଼ି ସାମନାରେ ଟାଳ ଏବଂ ସଂକେତ ଦିଅ । ଅତି ସନ୍ତର୍ପଣରେ ଘାଟର ଫେରିରେ ଚଢ଼ିଲୁ । ଡଙ୍ଗା ଦୁଇଟି ନଦୀର ପ୍ରତିକୂଳ ସ୍ରୋତରେ ପ୍ରାୟ ଏକ ମାଇଲ ଉପରକୁ ଉଠାଇ କରି ତାପରେ କାତରେ ଠେଲି ଦେଲେ । ତାପରେ କେବଳ ଆହୁଲାରେ ଧୀରେ ଧୀରେ ଆସି ସେପାଖ ଘାଟର ଏକ ମାଇଲ ତଳେ ଲଗାଇଲେ । ପୁଣି ଦଉଡ଼ିରେ ଭିଡ଼ି ଭିଡ଼ି ଘାଟ ପାଖରେ ପହଞ୍ଚିଲା ବେଳକୁ ସନ୍ଧ୍ୟା ୬ ଘଣ୍ଟା । ତା ପରେ ମୁଁ ଓ ମୋର ଡ୍ରାଇଭର ଦୀର୍ଘ ୮୦ କି.ମି. ବାଟ ବଲାଙ୍ଗୀର ଦେଇ ଆସି ରାତି ୧୧ ଘଣ୍ଟା ବେଳେ ବରଗଡ଼ ଡାକ ବଙ୍ଗଳାରେ ପହଞ୍ଚିଲୁ । ଡ୍ରାଇଭରକୁ ପଠାଇ ରୁଟି ୨/୩ ଖଣ୍ଡ ଓ କିଛି ତରକାରୀ ଆଣି ଖାଇ ଶୋଇଗଲୁ । ତା ପରଦିନ ଅର୍ଥାତ୍ ମଙ୍ଗଳବାର ଆଠଟାବେଳେ ହୋଟେଲରେ ଜଳଖିଆ ଓ ଚା ଖାଇ ସମ୍ବଲପୁରରେ ପହଞ୍ଚିଲା ବେଳକୁ ଦିନ ୧୧ ଘଣ୍ଟା । ଡ୍ରାଇଭରକୁ ମନାକଲି ସେ କିଛି କହିବାକୁ । ଏହିପରି କଳାହାଣ୍ଡି ଆବିଷ୍କାର ବା ଅଭିଯାନର ରୋମାଞ୍ଚକର ଅଭିଜ୍ଞତା । ଆମ ଓଡ଼ିଆରେ ଗୋଟିଏ ପ୍ରବାଦ ଅଛି,

''ସାତ ଥର ଯିବ ଗଙ୍ଗା, ଥରେ ଯାଇଥିଲେ ଚନ୍ଦ୍ରଭାଗା
ମୁହଁ ପଡ଼ିଯିବ ରଙ୍ଗା ।''

ଏହି ତିକ୍ତ ଅନୁଭୂତି ମୁଁ କାହା ଆଗରେ ସବିଶେଷ ବର୍ଣ୍ଣନା କରିନାହିଁ । ସେହି ଅଶିକ୍ଷିତ ଦରିଦ୍ର କନ୍ଧ ଲୋକମାନେ କେବେ ସଭ୍ୟତାର ସୂର୍ଯ୍ୟାଲୋକ ପାଇବେ ମୁଁ କହିପାରିବି ନାହିଁ । କଳାହାଣ୍ଡି ଏବେ ଦୁଇଟି ଜିଲ୍ଲା ହୋଇଛି । କଳାହାଣ୍ଡି ଏବଂ ନୂଆପଡ଼ା । ଗମନାଗମନରେ ସାମାନ୍ୟ ଉନ୍ନତି ହୋଇଛି ବୋଲି ଶୁଣୁଛି । ମାତ୍ର ମୋର ଦେଖିବାର ବୟସ ବା ସୁଯୋଗ ଆଉ ନାହିଁ ।

ଆମ ଫାଇନାନ୍‌ସ ଡିପାର୍ଟମେଣ୍ଟର ଜଣେ ଭଲ ମେଧାବୀ ଅଫିସର ଶ୍ରୀ ଉତ୍ତମ ପ୍ରଧାନ ''କଳାହାଣ୍ଡିରେ କଥାକାର'' ନାମକ ଗୋଟିଏ ଲୋକପ୍ରିୟ ବହି ଲେଖି ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର ପାଇଛନ୍ତି । ସେ ଗୋଟିଏ କପି ମୋତେ ଉପହାର ଦେଇଥିଲେ ଏବଂ ମୋର କଳାହାଣ୍ଡିର ପ୍ରତ୍ୟକ୍ଷ ଅନୁଭୂତି ସଂପର୍କରେ ଶୁଣିଥିଲେ ।

''କଳାହାଣ୍ଡିରେ କଥାକାର'' ଗଳ୍ପ ବହିରେ ବହୁତ ମଜା ମଜା କଥା ଲେଖିଛନ୍ତି । ଗଳ୍ପଗୁଡ଼ିକ ଯେପରି ଆମୋଦଦାୟକ, ସେପରି ହାସ୍ୟରସାତ୍ମକ । ମୋର ତାଙ୍କ ପ୍ରତି ବହୁତ ଶ୍ରଦ୍ଧା ଏବଂ ଆଶୀର୍ବାଦ । ବର୍ତ୍ତମାନ ମଧ୍ୟ ପରିଣତ ବୟସରେ ତାଙ୍କର ଲେଖନୀ ଚଳ ଚଞ୍ଚଳ ହୋଇ ରହିଛି । ଆଉ କେତୋଟି ବହି ପ୍ରକାଶ କରିଛନ୍ତି । ତାଙ୍କ ବହିଗୁଡ଼ିକର ଆଦର ପାଠକ ମହଲରେ ବହୁତ ବେଶି ।

# ନୃସିଂହନାଥ ମନ୍ଦିର ଦର୍ଶନ

ଭାଗବତରେ ଅଛି, ''ଏ ମନ ପାଞ୍ଚୁଥାଏ ଯାହା, କାଳେ ପ୍ରାପତ ହୁଏ ତାହା ।'' ନୃସିଂହ ନାଥ ମନ୍ଦିର ଦର୍ଶନ କରିବାକୁ ମୋର ସମ୍ବଲପୁରରେ ବାରମ୍ବାର ଅବସ୍ଥାନ ସମୟରେ ପ୍ରବଳ ମନୋବାଞ୍ଛା ଥିଲା । ମାତ୍ର ଏହା ପୂରଣ ହୋଇପାରିନଥିଲା ।

ଥରେ ଗ୍ରାମପଞ୍ଚାୟତ ବିଭାଗରେ ଥିଲାବେଳେ ୧୯୫୭ ମସିହାରେ ସରକାରୀ କାମରେ ଗୋଟିଏ ଜିପ୍ ନେଇ ନୂଆପଡ଼ା ଯାଇଥିଲି । ବରଗଡ଼, ସୋହେଲା, ପଦ୍ମପୁର, ପାଇକମାଳ ଦେଇ ବାମ ଦିଗକୁ ଗଲେ ନୂଆପଡ଼ା । ସେଠାରେ ୨/୩ ଦିନ ରହିଲି । ଆସିଲାବେଳକୁ ସକାଳ ୭ଟାରେ ନୂଆପଡ଼ା ଛାଡ଼ି କିଛି ବାଟ ଆସି ଡାହାଣକୁ ନ ମୋଡ଼ି ଭୁଲ୍‌ବଶତଃ ସିଧା ରାସ୍ତାରେ ଚାଲିଗଲି । ପ୍ରାୟ ୨୫/୩୦ ମାଇଲ୍ ବାଟ ଗଲାପରେ ଗୋଟିଏ ନଦୀ ପଡ଼ିଲା । ସେଠାରେ ଖରାଦିନ ପୋଲରେ ଟୋଲ ଗେଟ୍ ଚୌକିଦାର ମୋତେ ଟ ୨୦/- ଫିସ୍ ମାଗିଲା । ମୁଁ କହିଲି, ଏହି ସିଧା ରାସ୍ତା କେଉଁଠାକୁ ପଡ଼ିଛି ? ସେ କହିଲା, ରାୟପୁର । ଏହା ହେଉଛି ଜୋଙ୍କ ନଦୀ ଓଡ଼ିଶା ସୀମାରେ । ଆପଣ କେଉଁ ଆଡ଼କୁ ଯିବେ ? ମୁଁ କହିଲି, ବରଗଡ଼ ଦେଇ ସମ୍ବଲପୁର ଯିବି । ଆପଣ ଭୁଲ୍ ବାଟରେ ଆସିଲେ, ଫେରିଯାଆନ୍ତୁ । ନୂଆପଡ଼ା ପୂର୍ବରୁ ଗୋଟିଏ ଛକ ପଡ଼ିବ । ସେଠାରେ ବାମ କଡ଼କୁ ଗଲେ ସମ୍ବଲପୁର ରାସ୍ତା । ମୁଁ ଫେରିଲି । ପାଇକମାଳ ପହଞ୍ଚିଲାବେଳକୁ ୧୧ଘଣ୍ଟା ହେଲାଣି । ମୁଁ ଆସିଲେ ବରଗଡ଼ରେ ପହଞ୍ଚିବାକୁ ଅପରାହ୍ଣ ୩ ଘଣ୍ଟା ବାଜିଯିବ ଏବଂ ମଧ୍ୟାହ୍ନ ଭୋଜନ ବହୁତ ଡେରି ହୋଇଯିବ । ପାଇକମାଳ ପାଖରେ ବାମ ପାଖକୁ ୩ ମାଇଲ ଆସିଲେ ଗନ୍ଧମାର୍ଦ୍ଦନ ପର୍ବତ । ସେଠାରେ ପ୍ରସିଦ୍ଧ ଦର୍ଶନୀୟ ସ୍ଥାନ ନୃସିଂହନାଥ । ମୁଁ ଆସି ସେଠାକାର ମନୋହର ପ୍ରାକୃତିକ ପରିବେଶ ଏବଂ ସୌନ୍ଦର୍ଯ୍ୟ ଦେଖି ତନ୍ମୟ ହୋଇଗଲି । ପର୍ବତର ପାଦ ଦେଶରେ ଜଙ୍ଗଲ ଘେରା ସୁଶୀତଳ ଛାୟାରେ ଶ୍ରୀ ନୃସିଂହନାଥ ମନ୍ଦିର । ମୋତେ ସେଠାକାର ପୂଜକ କହିଲେ ୧୨ ଘଣ୍ଟା ସମୟରେ ଘଣ୍ଟ ବାଜିବ । ପାହାଡ଼ ଉପରେ ଯେତେ ଲୋକ ଥିବେ ସମସ୍ତେ ଆସିବେ । ସମସ୍ତଙ୍କୁ ଅନ୍ନଛତ୍ର ପଙ୍ଗତ ଦିଆଯିବ । ମାଗଣା ପ୍ରସାଦ । ଥରେ ପରସାଯିବ । ସେତିକିରେ ପ୍ରାୟ ଭକ୍ତ ସନ୍ତୁଷ୍ଟ ହୋଇଯିବ ।

ମୁଁ ପାହାଡ଼ ଉପରୁ ପଡୁଥିବା ଝରଣାରେ ଗାଧୋଇଲି । ବହୁତ ଗରମ ହେଉଥିଲା । ମୁଁ ବହୁତ ଶ୍ରାନ୍ତ କ୍ଳାନ୍ତ ହୋଇ ଆସିଥିବାରୁ ଏହି ସ୍ଥାନରେ ମୋର କ୍ଳାନ୍ତି ଦୂର ହୋଇଗଲା । ମୁଁ ଓ ମୋର ଡ୍ରାଇଭର ଆସି ମନ୍ଦିର ବାରଣ୍ଡାରେ ଅତି ଆରାମରେ ଶୋଇଗଲୁ । ପ୍ରାୟ

ଅଧଘଣ୍ଟା ପରେ ମୋତେ ଜଣେ ଲୋକ ଡାକିଲେ । ''ବାବୁ ଉଠନ୍ତୁ, ପ୍ରସାଦ ଖାଇବେ ''। ମୁଁ ଆସି ପ୍ରସାଦ ସେବନ କଲି । ଦିବ୍ୟ ପ୍ରସାଦ । ଅରୁଆ ଅନ୍ନ, ଡାଲମା ଏବଂ ଖଟା । ତାପରେ ଫେରିଲାବେଳକୁ ଅପରାହ୍ନ ୩ ଘଣ୍ଟା । ସେଠାରେ ପ୍ରସାଦ ସେବନ ବେଳେ ପଦ୍ମପୁରର ପାଣିଗ୍ରାହୀ ନାମକ ଜଣେ ବୟସ୍କ ବ୍ରାହ୍ମଣ ଲୋକଙ୍କ ସାଙ୍ଗରେ ପରିଚୟ ହେଲା । ମୋତେ କହିଲେ ସେ ହେଉଛନ୍ତି ମନ୍ଦିରର ଟ୍ରଷ୍ଟି । ସେ ପଦ୍ମପୁର ୩୦ ମାଇଲ ବାଟ ଯିବେ ତାଙ୍କୁ ସାଙ୍ଗରେ ନେଇ ଛାଡ଼ିଦେବାକୁ । ମୁଁ ଖୁସିରେ ତାଙ୍କୁ ସଙ୍ଗରେ ଆଣିଲି । ଠିକ୍ ମନ୍ଦିର ପରେ ପରେ ଏକ ବିରାଟ ଆମ୍ବ, ପଣସ ଓ ଫଳ ବଗିଚା । ସେଠାରେ ପଣସ କଠା ବହୁତ ହୋଇଛି । ସେ ପଚାରିଲେ, ''ଆପଣ ପଣସ କଠା ନେବେକି ?'' ମୁଁ ହଁ ଭରିଲି । ମୋତେ ଯୋଡ଼ିଏ ପଣସକଠା ଦେଇଥିଲେ । ମୁଁ ଗୋଟିଏ ଘରେ ରଖି ଆଉ ଗୋଟିଏ ଆମ ପଡ଼ିଶା ଘରେ ଦେଇଥିଲି ।

ନୃସିଂହନାଥଙ୍କର ଇତିହାସ ଅତି ପୁରାତନ । ବଲାଙ୍ଗୀର ରାଜାଙ୍କର କେଉଁ ପୂର୍ବପୁରୁଷ ଉଭୟ ନୃସିଂହନାଥ (ପଶ୍ଚିମରେ) ଓ ହରିଶଙ୍କର (ପୂର୍ବରେ) ମନ୍ଦିର ସ୍ଥାପନ କରିଥିଲେ । ଉଭୟ ମନ୍ଦିରରେ ସେବା ପୂଜା ଓ ନୀତି ପାଇଁ ଯଥେଷ୍ଟ ଜମି ବନ୍ଦୋବସ୍ତ କରିଥିଲେ । ନୃସିଂହନାଥ ମନ୍ଦିରର ନିୟମ ହେଲା ଜଣେ ଅବିବାହିତ ବ୍ରାହ୍ମଣ ପିଲା ବ୍ରତ ପରେ ପରେ ଆସି କର୍ମ କରିବ । ବିଭା ହୋଇଗଲେ ସେଠାରୁ ଚାଲିଯିବ ଓ ଅନ୍ୟ ପିଲା ଆସିବ । ସେଠାରେ ବୈଶାଖମାସ ନୃସିଂହ ଚତୁର୍ଦ୍ଦଶୀ ଦିନ ଗୋଟିଏ ବିରାଟ ମେଳା ବସେ । ବହୁତ ଲୋକ ପାଖ ଅଞ୍ଚଳ ଏବଂ ମଧ୍ୟ ପ୍ରଦେଶରୁ ଆସନ୍ତି । ମୁଁ ଆହୁରି ୨ଥର ଆସିଛି । ଥରେ ମୋର ପରିବାର ସହିତ ଓ ଆଉଥରେ ମୋ ବାପାଙ୍କ ସହିତ । ମୁଁ ତାଙ୍କୁ ସଙ୍ଗରେ ଆଣିଥିଲି । ଜଣେ ପାଇକମାଲର ଲୋକ ଦ୍ୱିବେଦୀ ମନ୍ଦିର ଟ୍ରଷ୍ଟିଙ୍କ ସହିତ ପରିଚିତ ହେଲେ । ସେ ବାପାଙ୍କୁ ରହିବାକୁ କହିଲେ । ମୁଁ ୨ ଦିନ ପରେ ଫେରିଲି । ସେ ତାଙ୍କର ବନ୍ଦୋବସ୍ତ କରିଦେଲେ । ମୋ ବାପା ତାଙ୍କ ଆଦର ଅଭ୍ୟର୍ଥନାରେ ଏତେ ମୁଗ୍ଧ ହୋଇଗଲେ ଯେ ସେ ମୋ ସଙ୍ଗେ ଫେରିବାକୁ ମନାକଲେ । ମୁଁ ଓ ଦ୍ୱିବେଦୀ ମହାଶୟ ତାଙ୍କୁ ବହୁତ ବୁଝାଇ ଫେରାଇ ଆଣିଥିଲୁ । ଏହିପରି ମୋର ମନୋବାଞ୍ଛା ପୂରଣ ହେଲା ।

# ରାଜ୍ୟ ବିଦ୍ୟୁତ୍ ବୋର୍ଡ଼

ପୂର୍ବରୁ electricity ର ଚାହିଦା ବା ପ୍ରସାର ଖୁବ୍ କମ୍ ଥିଲା । ଭୁବନେଶ୍ୱରରେ କେବଳ AC current ଥିଲା । କଟକରେ କେବଳ D.C. Current କୁ Octavious Steel Company supply କରୁଥିଲା । Machkund power ର କେବଳ ୫୦% ଓଡ଼ିଶା ଭାଗ ଥିଲା । ଆମର Share ୩୦% ଆନ୍ଧ୍ରକୁ 90 year lease ରେ ଖୁବ୍ ଶସ୍ତାରେ ବିକ୍ରୟ କରାଯାଇଥିଲା । ହିରାକୁଦ ଡ୍ୟାମ୍‌ରୁ 120 MW Firm Power ମିଳିଲା ପରେ କିଛି ମାତ୍ରାରେ Power ମିଳିଥିଲା । ତେଣୁ ୧୯୬୧ ରେ କେନ୍ଦ୍ର ସରକାରଙ୍କ ନିଷ୍ପତ୍ତି କ୍ରମେ ପ୍ରତ୍ୟେକ ରାଜ୍ୟରେ Electricity Board ଗଠିତ ହେଲା । ଏହା ରାଜ୍ୟ ସରକାରଙ୍କ Public Sector Undertaking ବୋଲି ଗଣା ହେଲା । ଏହାପରେ Talcherରେ ୬ଟି Thermal Power Station ହୋଇ ସେଥିରୁ 360 MW Power generate ହେଲା । ତେଣୁ T&D ବା Transmission ଓ Distribution line ସବୁ ବିସ୍ତାର କରାଗଲା ।

Power House ରେ ବିଶେଷତଃ Hydro power ବା ଜଳ ବିଦ୍ୟୁତ୍ 11 KV ରେ generate ହୁଏ । ପୁଣି ତାକୁ Upgrade ବା High voltage କରି 132 KV line ରେ ତାଳଚେର ପର୍ଯ୍ୟନ୍ତ ଆଣି Grid ରେ ମିଶାଯାଏ । TTPS ରେ ଉତ୍ପାଦିତ Power କୁ ମିଶାଇ ସେ ସବୁକୁ ଆଣି Jajpur Road Grid ରେ 132 KV ରେ Transmission କରି ଉତ୍ତରକୁ Balasore, Baripada, ଭଦ୍ରକ ଓ ଦକ୍ଷିଣକୁ ଭୁବନେଶ୍ୱରକୁ Chowdwar Grid ରେ ମିଶାଯାଏ । ତେଣେ ଦକ୍ଷିଣରେ ଯେଉଁ ବିଦ୍ୟୁତ ଉତ୍ପାଦିତ ହୁଏ ତାକୁ 220 KV EHT line ରେ ରାୟଗଡ଼ା, ମୋହନା ଦେଇ ଭଞ୍ଜନଗର ପର୍ଯ୍ୟନ୍ତ ସେଠାରୁ ଅଣାଯାଇ ଭୁବନେଶ୍ୱର ଗ୍ରୀଡ଼୍‌ରେ ମିଶାଯାଏ । ତେଣୁ ଭୁବନେଶ୍ୱରକୁ ଦକ୍ଷିଣରୁ 220 KV line ଏବଂ ଉତ୍ତରରୁ ତାଳଚେର ଓ ଯାଜପୁର ରୋଡ୍ ଲାଇନ୍ ମିଶାଇ ଉଭୟ ଦିଗରୁ ସପ୍ଲାଇ କରାଯାଏ । ରାଜ୍ୟର ଚାହିଦା ଅନୁସାରେ ଉତ୍ପାଦିତ ବିଦ୍ୟୁତ୍ ଅଧିକା ବୋଲି କୁହାଯାଉଛି । ମାତ୍ର ଅସୁବିଧା ହେଉଛି ଦୁଇଟି । ମୌସୁମୀ ବାୟୁ ବର୍ଷାର ଅନିୟମିତତା, ଜଳ ପରିମାଣ କମ୍ ହୋଇଗଲେ ହୀରାକୁଦର ଜଳ ବିଦ୍ୟୁତ୍ ଉତ୍ପାଦନ କମିଯାଏ । ଏଣେ ତାଳଚେରରେ କୋଇଲା ସପ୍ଲାଇ ଶ୍ରମିକ ଆନ୍ଦୋଳନ ଯୋଗୁ TTPS ର ଥର୍ମାଲ୍ ବିଦ୍ୟୁତ୍ ଶକ୍ତି ବହୁତ କମ୍ ଉତ୍ପାଦିତ ହୁଏ ।

TTPSରେ ଶ୍ରମିକ ଅଶାନ୍ତି ଅତି ତୀବ୍ର ହେଲା । କୋଇଲାକୁ ଗୁଣ୍ଡ କରି ସେଥିରେ ପାଣି ମିଶାଇ ନିଆଁ ଲଗାଇ Turbine ଭିତରେ ପୁରାଇଲେ Thermal Power ଉତ୍ପାଦିତ ହୁଏ । ଏହି ପ୍ରଣାଳୀ ବହୁତ ପୁରୁଣା କାଳର, ୧୯୬୫ ମସିହାରେ ହୋଇଥିଲା । ପୁଣି Coal Supply ନିରବଚ୍ଛିନ୍ନ ନୁହେଁ । ଆଜି କୋଇଲା ଖଣି ଭିତରେ ଶ୍ରମିକ ଅଶାନ୍ତି, କାଲି ବୋହିବା Truck Driver ମାନଙ୍କର ଅଶାନ୍ତି । ଯେଉଁ ଭଲ ଭଲ ଦକ୍ଷ ଅଫିସରମାନଙ୍କୁ ସେଠାକୁ ପଠାଯାଇଛି, ସେଠାରେ ସେମାନେ ରାତିରେ ଶୋଇପାରିଲେ ନାହିଁ । ଶେଷରେ ଓଡ଼ିଶା ସରକାର NTPC (National Thermal Power Corporation) କୁ ଖୁବ୍ ଶସ୍ତାରେ ବିକ୍ରି କରିଦେଲେ । ତାହା ଏକ ଗୁରୁତର ପ୍ରମାଦ ପୂର୍ଣ୍ଣ ନିଷ୍ପତ୍ତି । ଶ୍ରମିକ ଅଶାନ୍ତି ଅତି ଦକ୍ଷ ଓ ଦୃଢ଼ ହସ୍ତରେ ଶାନ୍ତ କରାଇ ପୂରା Generate କରି ପାରୁଥିଲେ ଏବଂ ଏହା ବିକ୍ରି କରି ନଥିଲେ ଭଲ ହୋଇଥାନ୍ତା ।

ଏହିପରି ଅତି ଘଡ଼ିସନ୍ଧି ସମୟରେ ୧୯୭୧ ମସିହାରେ ମୁଁ ରାଜ୍ୟ ବିଦ୍ୟୁତ୍ ବୋର୍ଡ଼କୁ ଅର୍ଥନୈତିକ ପରାମର୍ଶ ଦାତା ରୂପେ ଆସି ୩ ବର୍ଷ କାର୍ଯ୍ୟ କରିଛି । ପୁନର୍ବାର ଆଉଥରେ ୧୯୮୧ ରୁ ୧୯୮୩ ଦ୍ୱିତୀୟବାର ଆସିଲି । ଭଗବାନଙ୍କ ଦୟାରୁ ଏହି ୫ ବର୍ଷଯାକ ମୁଁ କୌଣସିମତେ ଚଳାଇ ନେଇଛି । ଏଣେ ଅର୍ଥର ଘୋର ଅଭାବ । ରାଜ୍ୟ ସରକାର ତାଙ୍କ ସୁଧ ବାବଦ ଟଙ୍କା ପାଇଁ ଘନ ଘନ ତଲବ କରୁଥାନ୍ତି । ପୁଣି ଗ୍ରାମ୍ୟ ବିଦ୍ୟୁତ୍‌କରଣ ଯୋଗୁ ବହୁତ କ୍ଷତିରେ ସେ ସବୁ କାର୍ଯ୍ୟ କରାଯାଉଛି । ଗ୍ରାମ୍ୟ ବିଦ୍ୟୁତକରଣ ଯୋଜନାରେ ପ୍ରାୟ ପ୍ରତି ୧୦୦୦ ଲୋକ ସଂଖ୍ୟା ବିଶିଷ୍ଟ ଗ୍ରାମମାନଙ୍କୁ ବିନା ମିଟରରେ Flat ରେଟ୍‌ରେ ବିଦ୍ୟୁତ୍ ଯୋଗାଇ ଦେବାକୁ ହେବ । World Bank ନିର୍ଦ୍ଦେଶ ଅନୁସାରେ ଏହି Scheme ଗୁଡ଼ିକ ସର୍ବନିମ୍ନ Gross Profit 6% ଦେଖାଇବାକୁ ହେବ । କେହି କରିପାରୁନଥାନ୍ତି । ତଥାପି ଆମେ ପ୍ରାୟ ୩୦% ଗ୍ରାମକୁ ବିଦ୍ୟୁତ୍ ଯୋଗାଇ ଦେଇଛୁ । ଓଡ଼ିଶାର ମୋଟ ୪୮୦୦୦ ଗ୍ରାମରୁ ୧୫୦୦୦ ବିଦ୍ୟୁତ୍ ଯୋଗାଇ ଦେଇଛୁ । ସେତିକିବେଳକୁ ଶ୍ରୀଯୁକ୍ତ ଅଶୋକ ଚନ୍ଦ୍ର ବନ୍ଦୋପାଧ୍ୟାୟ ନାମକ ଜଣେ ଦକ୍ଷ, ବିଜ୍ଞ ଆଇ.ଏ.ଏସ୍. ଅଫିସର Rural Electrification Corporation ରେ ଦୀର୍ଘ ଅଭିଜ୍ଞତା ନେଇ ଚେୟାରମ୍ୟାନ ରୂପେ ନିଯୁକ୍ତ ହେଲେ । ତାଙ୍କ ଦକ୍ଷ ପରିଚାଳନା ଏବଂ ମୋତେ ପୂର୍ଣ୍ଣ ସମର୍ଥନ ଦେବାଦ୍ୱାରା ମୋର କାର୍ଯ୍ୟ ସାମାନ୍ୟ ସହଜସାଧ୍ୟ ହେଲା । ଯାହାହେଉ ଅର୍ଥ ଅଭାବକୁ ମେଣ୍ଟେଇବା ପାଇଁ ନିୟମିତ ବିଲ୍ ଗରାଖମାନଙ୍କୁ ଦେବା ଏବଂ ଏହା କିପରି ତ୍ୱରାନ୍ୱିତ ହୋଇପାରିବ, ସେଥିପାଇଁ Card

System Bradma Company କୁ ନେଇ କରାଗଲା । ଯେଉଁମାନେ EHT ବା ବଡ଼ ବଡ଼ କାରଖାନା ଆମଠାରୁ ବିଦ୍ୟୁତ୍ ନେଉଛନ୍ତି, ସେମାନଙ୍କୁ ମାସ ପୁରିବାର ଏକ ସପ୍ତାହ ମଧ୍ୟରେ ବିଲ୍ ଦେଇ ଆଉ ଏକ ସପ୍ତାହ ମଧ୍ୟରେ ଟଙ୍କା ଆଦାୟ କରାଗଲା । ଏହିପରି ପ୍ରାୟ ବଡ଼ ବଡ଼ Customer 100 Company କୁ Head Office ତଦାରଖ କଲେ । ବଡ଼ ବଡ଼ ବ୍ୟାଙ୍କ ମାନଙ୍କୁ ସେହି ଟଙ୍କା ପଇଠ କରିବାକୁ ଦାୟିତ୍ୱ ଦିଆଗଲା । ସେହି ବ୍ୟାଙ୍କମାନେ ମଧ୍ୟ Ways and Means Advance ବା ଅତ୍ୟାବଶ୍ୟକ ସମୟରେ ଖୁବ୍ ଅଳ୍ପ ସୁଧରେ ଆମକୁ ଆଡ଼୍‌ଭାନସ୍ ଦେଉଥିଲେ । ଏହିସବୁ ବ୍ୟାଙ୍କ ମଧ୍ୟରେ United Bank of India, Calcatta, United Commercial Bank, State Bank of India, Andhra Bank, IOB ଏବଂ Canara Bank ପ୍ରଧାନ । ସେତେବେଳେ Electricity Board ର Bill Collection ପାଇଁ ତୀବ୍ର ପ୍ରତିଯୋଗିତା । ମୁଁ ସେହି ପ୍ରତିଯୋଗିତାର ସୁଯୋଗ ନେଇ ଓଡ଼ିଶାର ବିଭିନ୍ନ ପ୍ରାନ୍ତରେ ବଡ଼ ବଡ଼ ବ୍ୟାଙ୍କ ମାନଙ୍କୁ Bill Collection ର ଦାୟିତ୍ୱ ହସ୍ତାନ୍ତର କରିଦେଲି । ସେମାନେ ଆମ ଟଙ୍କା ବ୍ୟାଙ୍କ ରେଟ୍‌ରେ ୩ ମାସ ପାଇଁ ଡିପୋଜିଟ୍ ରଖି ଆମର ଟଙ୍କା ଦରକାର ବେଳେ ଆମକୁ ଅତି ମାମୁଲି Interest ରେ Ways and Means Advance ଦେବେ । ଆମର ଅତି ଚିରୋଟ ସମୟ ହେଉଛି ସେପ୍ଟେମ୍ବର, ଅକ୍ଟୋବର ମାସ । ବର୍ଷକରେ ଆମେ ମାତ୍ର ୧୦ ବା ୧୧ଟି ବିଲ୍ ଦେଇ ପାରୁଥିଲୁ । ଦୁର୍ଗାପୂଜା ବେଳେ ସହଜେ ଶ୍ରମିକ ଅଶାନ୍ତି, ଟଙ୍କାର ବହୁତ ଜରୁରୀ ଆବଶ୍ୟକତା । ଶ୍ରମିକମାନଙ୍କର ମାସକର ଦରମା, ମାସକର ପୂଜା ଆଡ଼୍‌ଭାନ୍‌ସ ଏବଂ ବୋନସ୍ । ଶ୍ରମିକମାନେ ସରକାରୀ ଏବଂ କଂପାନୀ ଉଭୟ ସୁବିଧା ଉପଭୋଗ କରୁଥାନ୍ତି । ଲୋକମାନେ କାମ ନ କରି ସବୁବେଳେ ତମ୍ବୁ ପକାଇ ଗେଟ୍ ପାଖରେ ଇନ୍‌କିଲାବ୍ ଜିନ୍ଦାବାଦ୍, ଇଲେକ୍‌ଟ୍ରିକ୍ ବୋର୍ଡ଼ ମୁର୍ଦ୍ଦାବାଦ୍ କରୁଥାନ୍ତି । କାମ କରିବାର ପରିବେଶ ନଥିଲା । ଏସବୁ ଉପରେ Talcher Thermal House ଗୋଟିଏ ଗଳଗ୍ରହ । ଖର୍ଚ୍ଚ ମାସକୁ ମାସ ୨ କୋଟି ଟଙ୍କା । ପ୍ରତି ୬ ମାସ ପରେ Thermal Station ର କୋଇଲା ଗୁଣ୍ଡ କରିବା Turbine ର Rings & balls 6 set ବଦଳାଇଲେ ଖର୍ଚ୍ଚ ହେବ ୫ ଲକ୍ଷ ଟଙ୍କା । ରଜାଝିଅକୁ ବୁଢ଼ୀ ଅସୁରୁଣୀ ଫରୁଆ ଭିତରେ ପ୍ରଜାପତି ପରି ରଖିବା ପରି TTPS ବୋର୍ଡ଼କୁ କାବୁ କରି ରଖିଛି । State ଓ Central Govt. ନାଚାର ।

TTPS କୁ କୋଇଲା ସପ୍ଲାଇ କରୁଥିବା National Coal Supply Development Corporation ର ମାସିକ ବିଲ୍ ପ୍ରାୟ ୨୦/୩୦ ଲକ୍ଷ ଟଙ୍କା । ଚୁକ୍ତି ଅନୁସାରେ ଏକ ମାସର ବିଲ୍ ଆର ମାସ ୨୦ ତାରିଖ ମଧ୍ୟରେ ଦେବାକୁ ହେବ । ସେମାନଙ୍କର ଥରେ ପ୍ରାୟ ୩ କୋଟି ଟଙ୍କା ବାକି । DGM rank ର ଜଣେ ବଡ଼ ଅଫିସର ଟଙ୍କା ନେବାକୁ ଆସି ଚଡ୍ଢା ଗଳାରେ କଥାବାର୍ତ୍ତା କଲେ । ମୁଁ ତାଙ୍କ ସଙ୍ଗେ ଅତି ଭଦ୍ରୋଚିତ ଭାଷାରେ କଥାବାର୍ତ୍ତା କଲି । ୨୫% ଟଙ୍କା ନେଇ ଅବଶିଷ୍ଟ ଟଙ୍କା ୩ ମାସ ମଧ୍ୟରେ ଦେଇ ଦେବାକୁ ପ୍ରତିଶ୍ରୁତି ଦେଲି ।

ସେମାନେ ମୋର ମଧୁର ବଚନ ଏବଂ ବ୍ୟବହାରରେ ଆପ୍ୟାୟିତ ହୋଇ Chairman Mr.Kumarmangalam ଙ୍କୁ କହି ମୋତେ ମୌଖିକ ଗୋଟିଏ offer ଦେଇଥିଲେ ଏବଂ ମୋତେ ଥରେ କାଲ୍‌କାଟା ଡକାଇ ଥିଲେ । ମୁଁ Chairmanଙ୍କ ଦର୍ଶନ ଅପେକ୍ଷାରେ ଥିଲାବେଳେ କୋଇଲା ଶ୍ରମିକ ୟୁନିୟନର ନେତାମାନଙ୍କର ଅଶାନ୍ତି ଏବଂ ଗୁଣ୍ଡାରାଜ ପରିବେଶର ଅବସ୍ଥା ଦେଖି ମୁଁ ସେଠାକୁ ଯିବା ପ୍ରସ୍ତାବରୁ କ୍ଷାନ୍ତ ହେଲି । କାରଣ ତାହା ମହରଗରୁ ଯାଇ କାନ୍ତାରରେ ପଡ଼ିବା ପରି ହେବ ବୋଲି ଭାବିଲି । ଏହି ସବୁ କାର୍ଯ୍ୟକ୍ରମ ହାତକୁ ନେବାରୁ ଆମର ବାର୍ଷିକ ଆୟ ୪୫ କୋଟି ଟଙ୍କାରୁ ୨ ବର୍ଷ ମଧ୍ୟରେ ୯୦ କୋଟି ଟଙ୍କା ହୋଇଗଲା ।

ଏଣେ ଶ୍ରମିକ ଅଶାନ୍ତି ଅସମ୍ଭାଳ । ଲୋକମାନେ କାମ କରୁନଥାନ୍ତି । ଶ୍ରମିକମାନଙ୍କର ୨୪ ଟା ୟୁନିୟନ୍ । ଆଜି ଗୋଟିଏ ୟୁନିୟନ୍ ଧ୍ୱନି ଦେଲେ କାଲି ଆଉ ଗୋଟିଏ । କେବେ ଛାଡ଼ ନାହିଁ । Wage revision ପ୍ରତି ୪ ବର୍ଷ ପରେ । ପୁଣି revision ପ୍ରାପ୍ୟ ହେବାର ବର୍ଷକ ପୂର୍ବରୁ ଗୋଳମାଳ ଲାଗେ । ଠିକ୍ ଏହି ସମୟରେ ଶ୍ରୀଯୁକ୍ତ ବନ୍ଦୋପାଧ୍ୟାୟ ବ୍ୟତିବ୍ୟସ୍ତ ହୋଇ ଦିଲ୍ଲୀ ବଦଳି ହୋଇଗଲେ । ମୁଁ ମଧ୍ୟ ସମର୍ଥନ ନ ପାଇ ଛୁଟିରେ ଚାଲିଗଲି । ମାସକ ପରେ ସସ୍ତ୍ରୀକ ଦକ୍ଷିଣ ଭାରତ ଭ୍ରମଣ ଶେଷ କରି ଆସି ଟ୍ରେଜେରୀର ଡିରେକ୍‌ଟର ହୋଇ ଯୋଗଦେଲି ।

ରାଜ୍ୟ ବିଦ୍ୟୁତ୍ ବୋର୍ଡ଼ରେ କାର୍ଯ୍ୟ ନିର୍ବାହ କରିବା କଷ୍ଟକର । ମାତ୍ର ମୁଁ କେତେଗୁଡ଼ିଏ ଭଲ ଓ ବିବେକାନୁମୋଦିତ କାର୍ଯ୍ୟ କରିଛି, ଯେଉଁ ଗୁଡ଼ିକ ମୋର ମାନସପଟରେ ଲିପିବଦ୍ଧ ହୋଇ ରହିବ ।

ମୁଁ ଫାଇନାନ୍ସ ସେକ୍‌ସନରେ ଥିଲାବେଳେ ଶ୍ରୀଯୁକ୍ତ ଦୁର୍ଗାପ୍ରସାଦ ତ୍ରିପାଠୀ (IAS. Retd.) ଆସି ଗୋଟିଏ ଅନୁରୋଧ କଲେ । ଧଉଳି ବୌଦ୍ଧ ମନ୍ଦିର ଶୀର୍ଷରେ ଗୋଟିଏ

ଶିବ ମନ୍ଦିର ତାଙ୍କ ନିଜର ବ୍ୟକ୍ତିଗତ ଉଦ୍ୟମରେ ସ୍ଥାପନ କରିଥିଲେ । ଧଉଳିର ପାଦ ଦେଶରେ ସ୍ଥାପିତ ବୌଦ୍ଧ ମନ୍ଦିର ଜାପାନ ବୌଦ୍ଧ ସଂଘ ଅନୁଦାନରେ ନିର୍ମିତ । କୌଣସି ମନ୍ଦିର ବିଦ୍ୟୁତକରଣ ହୋଇନଥିଲା । ଏହି ଯୋଡ଼ିକଯାକ ମନ୍ଦିରକୁ ବିଦ୍ୟୁତ୍‌କରଣ କରିବାକୁ ଅନୁରୋଧ କଲେ । ମୁଁ ଭୁବନେଶ୍ୱର ଏକଜିକ୍ୟୁଟିଭ୍ ଇଂଜିନିୟରଙ୍କୁ କହିଲି । ସେ କହିଲେ, ''ଯଦି ନିକଟବର୍ତ୍ତୀ ଧଉଳି ଗ୍ରାମର ବାସିନ୍ଦାମାନେ ତାଙ୍କ ଗ୍ରାମ ବିଦ୍ୟୁତକରଣ ପାଇଁ ଦରଖାସ୍ତ କରିବେ, ତେବେ ସେଥିରେ ଏ ଯୋଡ଼ିକଯାକ ମିଶାଇ ବିଦ୍ୟୁତ୍‌କରଣ ମାସକ ମଧ୍ୟରେ କରାଯାଇପାରିବ । ପ୍ରାୟ ଏକ ଲକ୍ଷ ଟଙ୍କା ଖର୍ଚ୍ଚ ହେବ । ସେହି ଅନୁସାରେ କାର୍ଯ୍ୟ କଲେ ବୁଦ୍ଧ ପୂର୍ଣ୍ଣିମା ପୂର୍ବରୁ ଶେଷ ହୋଇଯିବ । ମାନ୍ୟବର ମନ୍ତ୍ରୀ ଆସି ଉଦ୍‌ଘାଟନ କରିବେ । ଯୋଜନାନୁସାରେ କାର୍ଯ୍ୟ ସଂପୂର୍ଣ୍ଣ ହୋଇଯିବାରୁ ମୋର ମନରେ ବହୁତ ଆନନ୍ଦ ଜାତ ହେଲା ।

ଆଉଥରେ ଢେଙ୍କାନାଳର ଶ୍ରୀ ଶ୍ରୀ ଚନ୍ଦ୍ରଶେଖର ଜୀଉ ଶିବ ମନ୍ଦିର କପିଳାସର ଗ୍ରାମ ବିଦ୍ୟୁତକରଣ ପାଇଁ ପ୍ରସ୍ତାବ ଦେଲେ । ମୁଁ ସେହିପରି କରି ପାଦଦେଶରେ ଦେଓଗାଁ ଗ୍ରାମ ବିଦ୍ୟୁତ୍‌କରଣ ଯୋଜନାରେ ଭର୍ତ୍ତି କରିଦେଲାରୁ କପିଳାସ ପର୍ବତ ଉପରେ ଇଲେକ୍‌ଟ୍ରିକ୍ ସଂଯୋଗ ହୋଇପାରିଲା । କେବଳ ମନ୍ଦିର ଭିତରେ ଲାଇଟ୍ ଦେବାକୁ ପଣ୍ଡାମାନେ ବାରଣ କଲେ । ମାତ୍ର ରାସ୍ତାରେ ଲାଇଟ୍ ହୋଇଯିବାରୁ ଯାତ୍ରୀମାନଙ୍କର ବହୁତ ସୁବିଧା ହୋଇଗଲା ।

ଆଉଥରେ ମୁଁ ଭଞ୍ଜନଗର ଯାଉଥିଲି । ବାଟରେ ଓଡଗାଁ ମହାବିଦ୍ୟାଳୟ ଘରୋଇ କଲେଜର ଡ. ଦାଶରଥୀ ମିଶ୍ର, ପ୍ରଫେସର ଅବସର ପରେ ପ୍ରିନ୍‌ସ୍‌ପାଲ୍ ଥାଆନ୍ତି । ସେ ମୋର ଜ୍ୟେଷ୍ଠ ଭ୍ରାତା ସଦୃଶ । ସେ କହିଲେ, ମାତ୍ର ୭ ଦିନ ପରେ ଗଭର୍ଣ୍ଣର ଶ୍ରୀଯୁକ୍ତ ଭଗବତ୍ ଦୟାଲ୍ ଶର୍ମା ଆସି କଲେଜ ପରିଦର୍ଶନ କରିବାର କାର୍ଯ୍ୟକ୍ରମ ରହିଛି । ଯେବେ ଏହା ଭିତରେ ବିଦ୍ୟୁତ୍ ସଂଯୋଗ ହୋଇପାରନ୍ତା, ତେବେ କଲେଜ ସହିତ ଓଡଗାଁ ରଘୁନାଥପୁର ପ୍ରଭୃତି ଆଲୋକିତ ହୋଇପାରନ୍ତା । ମୁଁ ଚେଷ୍ଟା କରିବି ବୋଲି କହିଲି । ରଘୁନାଥ ଜୀଉ ମନ୍ଦିର ନୟାଗଡ଼ ସମେତ ଭଞ୍ଜନଗର ଓ ଗଂଜାମ ଜିଲ୍ଲାରେ ବିଖ୍ୟାତ । କାରଣ, କବି ସମ୍ରାଟ୍ ଉପେନ୍ଦ୍ରଭଂଜ ଏହିଠାରେ ରଘୁନାଥ ଜୀଉଙ୍କ ରାମତାରକ ମନ୍ତ୍ର ସାଧନା କରି ବୈଦେହୀଶ ବିଳାସ ଭଳି କାବ୍ୟ କେବଳ 'ବ' ଅନୁପ୍ରାସରେ ରଚନା କରିଥିଲେ । ଏହା ଓଡ଼ିଆ ସାହିତ୍ୟରେ ଗୋଟିଏ ଉଜ୍ଜ୍ୱଳ କୀର୍ତ୍ତି । ମୁଁ ଭଂଜନଗରରେ ପହଞ୍ଚି ଖୋର୍ଦ୍ଧା ଏକ୍‌ଜିକ୍ୟୁଟିଭ୍ ଇଂଜିନିୟରଙ୍କୁ ଫୋନ କରି କହିଲି । ଓଡ଼ଗାଁ ଗ୍ରାମବାସୀଙ୍କ

ବିଦ୍ୟୁତ୍‌କରଣ ଏବଂ ଏସବୁ ପ୍ରସ୍ତାବ ଏକତ୍ର କରି ଗ୍ରାମବାସୀମାନେ ଅନୁରୋଧ କଲେ । କାମ ସଙ୍ଗେ ସଙ୍ଗେ ଆରମ୍ଭ ହୋଇ ଲାଟ୍ ସାହେବଙ୍କ ଆଗମନ ପୂର୍ବରୁ ସମ୍ପୂର୍ଣ୍ଣ ହେଲା । ସେଥିପାଇଁ ଅଧିକ ଅର୍ଥ ମଂଜୁର କରାଇ ପଠାହେଲା । ଗଭର୍ଣ୍ଣର ସାହେବ ଏସବୁ କାର୍ଯ୍ୟଦେଖି ପ୍ରିନ୍ସିପାଲଙ୍କୁ ଓ ଡିପାର୍ଟମେଣ୍ଟକୁ ଧନ୍ୟବାଦ ଦେଲେ । କାମର ଜରୁରୀ ଆବଶ୍ୟକତା ଅନୁସାରେ ସଙ୍ଗେ ସଙ୍ଗେ ପଦକ୍ଷେପ ନେଇ ଠିକ୍ ସମୟରେ ଶେଷ କରିବା ହେଉଛି ଦକ୍ଷତା ।

ଆମ ସୁକିନ୍ଦା ଓ ଭୁବନ ଅଞ୍ଚଳରେ ସେହିପରି ବିଦ୍ୟୁତ୍ ସଂଯୋଗ ନଥିଲା । ଆମର ଏମ.ଏଲ.ଏ. ଥିଲେ ସ୍ୱର୍ଗତଃ ସନାତନ ଦେଓ । ଯାଜପୁର ରୋଡ୍‌ର ଏକ୍‌ଜିକ୍ୟୁଟିଭ୍ ଇଂଜିନିୟର ଥିଲେ ଢେଙ୍କାନାଳ ଭୁବନର ସ୍ୱର୍ଗତଃ ନରସିଂହ ମିଶ୍ର । ମୁଁ ବୋର୍ଡ଼ରେ ଥିଲି । ଏମ୍.ଏଲ୍.ଏ. ଶ୍ରୀଯୁକ୍ତ ଦେଓ ମାନ୍ୟବର ମନ୍ତ୍ରୀଙ୍କ ଠାରୁ ଅର୍ଡ଼ର କରାଇ ଆଣିଲେ । ମୁଁ ମଧ୍ୟ ବୋର୍ଡ଼ ତରଫରୁ ମଂଜୁରୀ ଅର୍ଡ଼ର କରାଇନେଲି । ସ୍ୱର୍ଗତଃ ନରସିଂହ ମିଶ୍ର ମନପ୍ରାଣ ଦେଇ କାର୍ଯ୍ୟଟି ସଂପୂର୍ଣ୍ଣ କରାଇନେଲେ । ଫଳରେ ଏହି ଅଞ୍ଚଳର ଅତି ଛୋଟ ଆଦିବାସୀ ପଲ୍ଲୀ ବ୍ୟତୀତ ଅଧିକାଂଶ ଗ୍ରାମ ବିଦ୍ୟୁତ୍‌କରଣ ହୋଇଗଲା । ତା ସଙ୍ଗେ ସଙ୍ଗେ ପ୍ରାୟ ୨୦ଟି ଉଠା ଜଳସେଚନ ଯୋଜନା କାର୍ଯ୍ୟକାରୀ ହେଲା । ଏହିପରି ରାଜନୈତିକ ଇଚ୍ଛାଶକ୍ତି, ଆବଶ୍ୟକୀୟ ଅର୍ଥ ଏବଂ ଉପକରଣ ଏବଂ ଇଂଜିନିୟରଙ୍କ ଦକ୍ଷତା - ଏହି ତିନୋଟି ଶକ୍ତି ଏକତ୍ର ଏକମୁଖୀ ହୋଇ କାର୍ଯ୍ୟ କରିପାରିଲେ ଯୋଜନା ଗୁଡ଼ିକର ସଫଳ ରୂପାୟନ ହୋଇପାରିବ ।

## ଟ୍ରେଜେରୀ ଡିପାର୍ଟମେଣ୍ଟ

ମୁଁ ଡିରେକ୍ଟର ହୋଇ ଯୋଗ ଦେବାବେଳକୁ ଟ୍ରେଜେରୀ ଡିପାର୍ଟମେଣ୍ଟ ମଧ୍ୟ ହୁଲସ୍ଥୁଲ୍ । ବହୁତ ସ୍ଥାନୀୟ ଲୋକ ସେହିଠାରେ ରହି ଷ୍ଟାଫମାନଙ୍କ ସଙ୍ଗରେ ମିଶି ବିଭ୍ରାଟ ସୃଷ୍ଟି କରାଉଥାନ୍ତି । ସେମାନଙ୍କର ବହୁ ସଂଖ୍ୟାରେ ବଦଳି ହୋଇଥିଲା । ମୁଁ ସେଥିରୁ ବହୁ ବର୍ଷ ରହିଥିବା କେତେକଙ୍କୁ ବୁଝାଇ ସୁଝାଇ ବଦଳି କରି ଅନ୍ୟମାନଙ୍କ ଅର୍ଡ଼ର ବାତିଲ୍ କରିଦେଲି । ଯାହାହେଉ ଖୁବ୍ ଶାନ୍ତି ଶୃଙ୍ଖଳାରେ ଚାଲିଲା ।

ସେତେବେଳେ ପ୍ରତି ଜିଲ୍ଲାରେ ଗୋଟିଏ ଲେଖାଏଁ ଏପରି ୧୩ଟି ଟ୍ରେଜେରୀ, ଭୁବନେଶ୍ୱରରେ ଗୋଟିଏ ସ୍ପେଷାଲ୍ ଟ୍ରେଜେରୀ ଏବଂ ପ୍ରତି ସବ୍-ଡିଭିଜନ୍‌ରେ ଗୋଟିଏ

ସବ୍-ଟ୍ରେଜେରୀ । ନିୟମାନୁସାରେ ଡିରେକ୍‌ଟର ବର୍ଷକୁ ଅନ୍ତତଃ ପ୍ରତି ଟ୍ରେଜେରୀକୁ ବର୍ଷକୁ ଥରେ ଯାଇ ୨/୩ ଦିନ ରହି ପୁଙ୍ଖାନୁପୁଙ୍ଖ ତଦାରଖ କରିବେ । ମୁଁ ନିୟମ ମୁତାବକ ପ୍ରତି ଟ୍ରେଜେରୀକୁ ବର୍ଷକୁ ଥରେ ଲେଖାଏଁ ଯାଇଛି । ସବ୍-ଟ୍ରେଜେରୀମାନଙ୍କୁ କେତେକଙ୍କୁ ମୁଁ ଯାଏ, ଆଉ ଅନ୍ୟମାନଙ୍କୁ ଆମ Dy-Director ମାନଙ୍କୁ ପଠାଏ । ଟ୍ରେଜେରୀ Inspection ଗୁଡ଼ିକ ମତେ ଖୁବ୍ ଭଲଲାଗେ । ଟ୍ରେଜେରୀ କୋର୍ଡ଼ର ପ୍ରଧାନ ପ୍ରଧାନ ଧାରା, ଯଥା- ନିୟମିତ ବିଲ୍ ପାଶ୍ କରିବା, AG କୁ ଠିକ୍ ପ୍ରତି ମାସର 10th ଏବଂ 16th ରେ ପୂର୍ବମାସର ଏକାଉଣ୍ଟ ପଠାଇବା ଇତ୍ୟାଦି ଠିକ୍ ଭାବରେ ତଦାରଖ କଲି । Accountant General ଥିଲେ Tamilnadu ର ବାସିନ୍ଦା A.G. Cadre ର ପୁରୁଖା ଅଫିସର Sri A.K.A. Subramanyam, IA &AS. ସେ ବରାବର Finance Secretary ଙ୍କ ପାଖକୁ Accounts ଡେରି ହେଉଛି ବୋଲି ଅଭିଯୋଗ କରୁଥିଲେ । Finance Secretary ମୋତେ ବରାବର ବିରକ୍ତ ହୋଇ କହୁଥାନ୍ତି । ମୁଁ ଏହାକୁ ଏକ Challenge ବୋଲି ଗ୍ରହଣ କଲି । AG ଙ୍କୁ ଫୋନ୍ କରି ତାଙ୍କ ସଙ୍ଗେ ସାକ୍ଷାତ କଲି । କହିଲି, ''ଆପଣ ଡେରି ହେଲେ କେଉଁ ଟ୍ରେଜେରୀରୁ ଡେରି ହେଉଛି କହନ୍ତୁ ।'' ଦେଖାଗଲା, କେତେକ ବଡ଼ ବଡ଼ ସବ୍-ଟ୍ରେଜେରୀ ମାନଙ୍କର Accounts ରେ ଟ୍ରେଜେରୀକୁ ପଠାଇବା ଡେରି ହେଉଛି ମୁଖ୍ୟ କାରଣ । ମୁଁ ୬ଟି ବଡ଼ ବଡ଼ ସବ୍-ଟ୍ରେଜେରୀମାନଙ୍କୁ Special Treasury ଘୋଷଣା କରିବାକୁ Finance Deptt. କୁ ଲେଖିଲି । ୬ଟି ବଡ଼ ବଡ଼ ସବ୍-ଟ୍ରେଜେରୀ ସ୍ପେଷାଲ୍ ଟ୍ରେଜେରୀ ଘୋଷଣା କରାଗଲା । ସେଗୁଡ଼ିକ ହେଲା ବରଗଡ଼, ଭଦ୍ରଖ, ଯାଜପୁର, କେନ୍ଦ୍ରାପଡ଼ା, ଜଗତସିଂହପୁର, ବରହମପୁର । ଏକାଉଣ୍ଟସ୍ ପଠାଇବାରେ ବହୁତ ସମୟାନୁବର୍ତ୍ତିତା ନିୟମ ରକ୍ଷା କରିହେଲା ।

ବିଲ୍ ପାଶ୍ ହେବାରେ ଅହେତୁକ ବିଳମ୍ବ ହେଉଥିଲା । ଓଡ଼ିଶା ଟ୍ରେଜେରୀ କୋଡ୍ ଅନୁସାରେ ବିଲ୍‌ରେ ଯାହା ଅବ୍‌ଜେକ୍‌ସନ୍, ତାକୁ ଏକାଥରକେ ଦର୍ଶାଇଦେଇ ଦ୍ୱିତୀୟ ଥରକୁ ସେଗୁଡ଼ିକ ପୂରଣ ହୋଇଗଲେ ବିଲ୍ ପାଶ୍ ହୋଇଯିବ । ବିଶେଷତଃ ପେନ୍‌ସନ୍ ବିଲ୍‌ରେ ରିଟାୟାର୍ଡ଼ ଲୋକମାନଙ୍କୁ ବହୁତ ହଇରାଣ କରାଯାଉଥିଲା । ଜଣେ ସାଲେପୁର ଅଞ୍ଚଳର ଶିକ୍ଷକଙ୍କୁ ୩ ଥର ଫେରାଇ ଦେଇ ଅବସର ପାଇବାର ୧ ବର୍ଷ ପର୍ଯ୍ୟନ୍ତ ପେନ୍‌ସନ୍ ଦେଲେ ନାହିଁ । ସେ ବହୁତ ହନ୍ତସନ୍ତ ହୋଇ ପ୍ରତିଥର ୫୦ ଟଙ୍କା ଖର୍ଚ୍ଚ କରି କେନ୍ଦ୍ରାପଡ଼ା ଯାଇ ଫେରିଆସିଲେ । ତାପରେ ଚିଫ୍ ମିନିଷ୍ଟର ଶ୍ରୀମତୀ ନନ୍ଦିନୀ ଶତପଥୀଙ୍କୁ

ଦରଖାସ୍ତ କଲେ । ଚିଫ୍ ମିନିଷ୍ଟରଙ୍କ ଅଫିସ୍‌ରୁ ଚିଠି ଓ ଲୋକର ଦରଖାସ୍ତର କପି ଆସିଲା । ମୁଁ ଆମର ଜଣେ ବିଶ୍ୱସ୍ତ ଦକ୍ଷ ଡେପୁଟି ଡିରେକ୍ଟରଙ୍କୁ ପଠାଇ ତର୍ଜମା କରାଇଲି । ତାହା ସତ୍ୟ ବୋଲି ଜଣାପଡ଼ିଲା । ତେଣୁ ସେହି କିରାଣୀଙ୍କୁ ସଙ୍ଗେ ସଙ୍ଗେ ଓ୍ୱାର୍ଣ୍ଣିଂ ଦେଇ ଆଠଗଡ଼ ସବ୍-ଟ୍ରେଜେରୀକୁ ୪ ଦିନ ଭିତରେ ବଦଳି କରାଗଲା । ପେନ୍‌ସନ୍ ବିଲ୍ ଶିକ୍ଷକଙ୍କର ପାଶ୍ ହୋଇଗଲା । ଚିଫ୍ ମିନିଷ୍ଟର ଖୁସି ହୋଇ ଫୋନ୍ କରି ପ୍ରାଇଭେଟ୍ ସେକ୍ରେଟେରୀ ସ୍ୱର୍ଗତଃ ରଘୁନାଥ ମିଶ୍ରଙ୍କ ଜରିଆରେ ଜଣାଇଲେ । ଆଉ ସେପରି ଗୋଟିଏ ଦୟନୀୟ କେସ୍ ଘଟିଥିଲା ଅନୁଗୁଳ ସବ୍-ଟ୍ରେଜେରିରେ । ନିକଟବର୍ତ୍ତୀ ହୁଲୁରିସିଂହା ଗ୍ରାମର ଜଣେ ଅବସରପ୍ରାପ୍ତ ପିଅନ କୁଷ୍ଠରୋଗୀ ପ୍ରତିମାସ ୩ ତାରିଖ ବେଳକୁ ଗୋଟିଏ ବଳଦଗାଡ଼ିରେ ୧୦ ଟଙ୍କା ଖର୍ଚ୍ଚ କରି ଆସନ୍ତି । କିରାନୀକୁ ଦେବେ ଟ ୧୦ଙ୍କା, ଖାଇବେ ଟ ୧୦ ଙ୍କା । ପେନ୍‌ସନ୍ ପାଇବେ ମାତ୍ର ଟ ୧୦୦ଙ୍କା । ଥରେ ତାଙ୍କୁ ୪ଟା ବେଳେ ମନା କରିଦେଲେ । ଆଜି ରୁହ, କାଲିକୁ ମିଳିବ । ଆହୁରି ଖର୍ଚ୍ଚ ଟ ୨୦/୨୫/- । କେଉଁଠୁ ଆଣିବେ ? ସେ ସେଥର ଆସି ମୋତେ ବିକଳ ହୋଇ ପ୍ରାର୍ଥନା କରି ଲେଖିଲେ । ମୁଁ ତାଙ୍କ ଦରଖାସ୍ତର କପି ଦେଇ ଅନୁଗୁଳ ସବ୍-ଟ୍ରେଜେରୀ ଅଫିସରଙ୍କୁ ମନ୍ତବ୍ୟ ଦେବାକୁ ଲେଖିଲି । ଅଫିସର ୩ ଦିନ ପରେ ମୋର ଘରେ ଆସି ହାଜର । ମୁଁ ତାଙ୍କୁ ଟିକିଏ କଡ଼ା ସ୍ୱରରେ କହିଲି, ''ଆପଣଙ୍କର ମନ୍ତବ୍ୟ ଲିଖିତ ଆକାରରେ ଦିଅନ୍ତୁ । ମୁଁ ଏହାର ବିହିତ ପ୍ରତିକାର କରିବି । ଅଫିସର ଜଣକ କାନ୍ଦ କାନ୍ଦ ହୋଇ କ୍ଷମା ମାଗିଲେ ଏବଂ ଏହାର ପୁନରାବୃତ୍ତି ନ ହେବାପାଇଁ ପ୍ରତିଶ୍ରୁତି ଦେଲେ ।

ଆଉ ଗୋଟିଏ ବଡ଼ ଘଟଣା ହୋଇଥିଲା । ଥରେ ଗଭର୍ଣ୍ଣର ହାଉସ୍‌ରୁ ଫୋନ୍ ଆସିଲା । ଗଭର୍ଣ୍ଣର ଶ୍ରୀଯୁକ୍ତ ଆକ୍‌ବର୍ ଅଲି ଖାଁ ଚାହୁଁଛନ୍ତି ତା ପରିଦିନ ସକାଳେ ମୁଁ ତାଙ୍କୁ ଦେଖା କରିବାକୁ । ଘଟଣାଟି କ'ଣ ବୁଝିବାପାଇଁ ADC ଙ୍କ ପାଖକୁ ଫୋନ୍ କରିବାରୁ ସେ ମୋତେ କହିଲେ ଯେ ଜଣେ ଡାକ୍ତର ତିନିମାସ ହେଲା ବରହମପୁରରୁ transfer ହୋଇ ଆସିଛନ୍ତି । LPC ନପାଇବାରୁ ସେ ଦରମା ନ ପାଇ ହଇରାଣ ହୋଇ ଗଭର୍ଣ୍ଣଙ୍କୁ ଫେରାଦ ହୋଇଛନ୍ତି । ମୁଁ ସଙ୍ଗେ ସଙ୍ଗେ ଛତ୍ରପୁର ଟ୍ରେଜେରୀ ଏବଂ ବରହମପୁର ସବ୍-ଟ୍ରେଜେରୀକୁ ଫୋନ୍ କରି କହିଲି । ବରହମପୁର ସବ୍-ଟ୍ରେଜେରୀ ସ୍ପେଷାଲ୍ ମେସେନ୍‌ଜର ଦେଇ LPC ଆଣି ଛତ୍ରପୁର ଟ୍ରେଜେରୀରୁ ଦସ୍ତଖତ କରାଇ ସେହିଦିନ ଆସି ଭୁବନେଶ୍ୱର ସ୍ପେଷାଲ୍ ଟ୍ରେଜେରୀରେ ଦାଖଲ କଲେ । ଡାକ୍ତରଙ୍କୁ

କପି ଦିଆଗଲା । ଡାକ୍ତର ମଧ୍ୟ ଗଭର୍ଣ୍ଣର ସାହେବଙ୍କୁ ଖବର ଦେଲେ । ମୁଁ ଗଭର୍ଣ୍ଣରଙ୍କୁ ସାକ୍ଷାତ କରିବାକୁ ଠିକ୍ ତା ପରଦିନ ପୂର୍ବାହ୍ନ ୧୧ ଘଣ୍ଟା ସମୟରେ ରାଜ ଭବନରେ ଅପେକ୍ଷା କଲି । ଗଭର୍ଣ୍ଣର ସାହେବ ଠିକ୍ ୧୧ ଘଣ୍ଟା ବେଳେ ମୋ ନିକଟକୁ ଆସିଲେ । ସେ ଅତି ଆନନ୍ଦରେ ମୋର କର ମର୍ଦ୍ଦନ କରି କହିଲେ, "Mr Mishra, you are a very tactful officer. ଯାହା ୩ ମାସ ହେଲା ହୋଇପାରି ନଥିଲା, ତାହା ଦିନକ ଭିତରେ ହୋଇଗଲା । ଆପଣଙ୍କୁ ବହୁତ ଧନ୍ୟବାଦ ।'' ପଣ୍ଡିତ ଗୋବିନ୍ଦ ବଲ୍ଲଭ ପନ୍ଥ Home Minister ଥିବାବେଳେ ଗୋଟିଏ ପ୍ରସ୍ତାବ ଦେଇଥିଲେ । All India Service Officerଙ୍କ ବ୍ୟତୀତ ଅନ୍ୟ ଯେଉଁ ଦକ୍ଷ ଅଫିସରମାନେ ବିଭିନ୍ନ ରାଜ୍ୟରେ ଅଛନ୍ତି, ସେମାନଙ୍କୁ ୩ ବର୍ଷ ସକାଶେ ଅନ୍ୟ ଷ୍ଟେଟ୍‌କୁ ବଦଳି କଲେ ସୁଫଳ ମିଳନ୍ତା । ମାତ୍ର IAS Officer ମାନେ ଏଥିରେ ରାଜି ହେଲେ ନାହିଁ । ସେପରି ହୋଇଥିଲେ ଗୋଟିଏ ରାଜ୍ୟର Non-IAS Officer ମାନେ ଅନ୍ୟ ରାଜ୍ୟକୁ ବଦଳି ହୋଇ ଡେପୁଟେସନ୍‌ରେ ଗଲେ ସଂପୃକ୍ତ ରାଜ୍ୟ ଏବଂ ଅଫିସରମାନଙ୍କର କର୍ମ କରିବାର ଦକ୍ଷତା ବଢ଼ିପାରନ୍ତା । ଗଭର୍ଣ୍ଣର ସାହେବଙ୍କ ଅତି ସୌହାର୍ଦ୍ଦପୂର୍ଣ୍ଣ ବ୍ୟବହାରରେ ମୁଁ ଅତ୍ୟନ୍ତ ଆନନ୍ଦିତ ହେଲି । ପରେ ଶୁଣିଲି ସେ ଦିଲ୍ଲୀରେ ଅତି ଦୟନୀୟ ନିରାଶ୍ରୟ ଭାବରେ ଏକ ବସ୍ତିରେ ମୃତ୍ୟୁ ବରଣ କଲେ । ମନୁଷ୍ୟ ଜୀବନ ଶେଷ ବେଳକୁ କିପରି ଯିବ, ତାହା କିଏ କହିବ ?

Special Treasury 6 ଟି ସିଧା ସିଧା Accounts A.G. office କୁ ପଠାଇଲେ । ତେଣୁ A.G. Officeରେ ସବୁ ଟ୍ରେଜେରୀମାନଙ୍କର Accounts ଠିକ୍ ସମୟରେ ପହଞ୍ଚିଲା । Accounts compilationରେ ଡେରି ହେଲାନାହିଁ । AG ଶ୍ରୀଯୁକ୍ତ ସୁବ୍ରମନ୍ୟମ୍ ମୋତେ ବହୁତ ଭଲ ପାଇଲେ । ତାଙ୍କ ଅଫିସରମାନଙ୍କ ମିଟିଂକୁ ମୋତେ ନିମନ୍ତ୍ରଣ କଲେ । ମୁଁ ମଧ୍ୟ ଆମ ଟ୍ରେଜେରୀ ଅଫିସର ସମ୍ମିଳନୀକୁ ତାଙ୍କୁ ନିମନ୍ତ୍ରଣ କଲି । ସରକାରୀ କାର୍ଯ୍ୟରେ ଯୋଗସୂତ୍ର ଏବଂ ସମନ୍ୱୟ ରକ୍ଷା ବହୁତ ଆବଶ୍ୟକ । ଆଉ ଥରେ CAG Mr. H.R. Buxi ଓଡ଼ିଶା ଟୁରରେ ଆସିଥିଲେ । ରାଜ୍ୟ ସରକାରଙ୍କ ତରଫରୁ ମୁଁ Liaison Officer ଭାବେ ନିଯୁକ୍ତ ହୋଇଥିଲି । ସେ ପୁରୀ, କୋଣାର୍କ, ଚିଲିକା ନୌକା ବିହାର ପାଇଁ ଇଚ୍ଛା ପ୍ରକାଶ କଲେ । ସେଗୁଡ଼ିକ ଯଥାବିଧି ଆୟୋଜିତ ହୋଇଥିଲା । ତାଙ୍କୁ ସବୁଆଡ଼େ ଭବ୍ୟ ସମ୍ବର୍ଦ୍ଧନା ଦିଆଯାଇଥିଲା । ରାଜଭବନରେ ତାଙ୍କ ରହଣିର ସୁବନ୍ଦୋବସ୍ତ କରାଯାଇଥିଲା । ଆସେମ୍ବ୍ଲି ମେମ୍ବରମାନଙ୍କୁ ସମ୍ମିଳନୀ କକ୍ଷରେ ଉଦ୍‌ବୋଧନ ଦେବାର କାର୍ଯ୍ୟକ୍ରମ କରାଯାଇଥିଲା । CAG ଙ୍କର ସ୍ଥାନ

Protocol ଅନୁସାରେ Vice-President ଙ୍କ ଠିକ୍ ତଳକୁ । ମୋତେ ବହୁତ ଭୟ ଲାଗୁଥାଏ । ମାତ୍ର ମୁଁ ଏହି କାର୍ଯ୍ୟ ଅତି ସୁଚାରୁ ରୂପେ ସଂପନ୍ନ କଲି । ଏ.ଜି.ଙ୍କର ଅଫିସରମାନଙ୍କୁ ସେ ଯେଉଁ ଉଦ୍‌ବୋଧନ ଦେଇଥିଲେ, ସେଥିରେ ମୋତେ ନିମନ୍ତ୍ରଣ କରାଯାଇଥିଲା । ପ୍ରଥମେ ଆସିଲାବେଳକୁ Airportରେ AGଙ୍କ ସଙ୍ଗରେ ଅଭିବାଦନ କରିବାକୁ ଫୁଲତୋଡ଼ା ନେଇ ଯାଇଥିଲି । ପୁଣି ବିଦାୟବେଳକୁ ମଧ୍ୟ ମୁଁ ହାଜର । ସେ ଅତ୍ୟନ୍ତ ପ୍ରୀତ ହୋଇ ମୋତେ କହିଲେ, ''ମୁଁ ଦେଖୁଛି, ଆପଣ State Govt. ଅଫିସର ହୋଇ ମଧ୍ୟ ଆମ ଡିପାର୍ଟମେଣ୍ଟର ଅଫିସରମାନଙ୍କ ସଙ୍ଗରେ ଘନିଷ୍ଠ ସହଯୋଗ ରକ୍ଷା କରି ଆସୁଛନ୍ତି । ମୋର ୪ ଦିନ ରହଣି ମଧ୍ୟରେ କୌଣସି ମିଟିଂରେ ଆପଣଙ୍କୁ ନ ଦେଖିଛି ନାହିଁ । ଆପଣଙ୍କୁ ଏବଂ ଷ୍ଟେଟ୍ ଗଭର୍ନମେଣ୍ଟକୁ ମୋର ଅଶେଷ ଧନ୍ୟବାଦ ।'' ମୁଁ ସେହି ବାର୍ତ୍ତା ଫାଇନାନ୍ସ୍ ସେକ୍ରେଟେରୀ ଶ୍ରୀଯୁକ୍ତ ଶୋଭନ୍ କାନୁନ୍‌ଗୋଙ୍କୁ କହିବାରୁ ସେ ବହୁତ ଖୁସି ହେଲେ ।

ଆଉ ଗୋଟିଏ ବିଷୟ ଉଲ୍ଲେଖ ନ କରି ରହିପାରୁନାହିଁ । ମୁଁ ଜଏନ୍ କରିବାର ଏକ ସପ୍ତାହ ମଧ୍ୟରେ ଭୁବନେଶ୍ୱର Special Treasuryକୁ ଗୋଟିଏ ୬ ଲକ୍ଷ ଟଙ୍କାର ଜାଲ୍ ବିଲ୍ Payment ଦେବାର Bank Account ରୁ ଧରାପଡ଼ିଲା । Finance Secretary ମୋତେ କଡ଼ା ତାଗିଦ୍ କଲେ ଓ ପ୍ରତିକାର କରିବାକୁ ନିର୍ଦ୍ଦେଶ ଦେଲେ । Treasury Officer ଥାନାରେ ଏତଲା (FIR) ଦାୟର କଲେ ।

ତା ପରଦିନ ସକାଳ ୧୨ଟା ସମୟରେ ଜଣେ ପୋଲିସ୍ ଅଫିସର ଶ୍ରୀଯୁକ୍ତ କୁଳମଣି ଦେଓ ଏବଂ ଜଣେ ଥାନା ଅଫିସର ମୋତେ ଦେଖା କରିବାକୁ ଆସିଲେ । ଯେଉଁ ୩ଟି ଜାଲ୍ ବିଲ୍ ପେମେଣ୍ଟ ହୋଇଛି, ତାହାର ଅର୍ଥ ପରିମାଣ ୬ ଲକ୍ଷଟଙ୍କା ହେବ । ସେ କହିଲେ ଯେ ସେହି ବିଲ୍ ଗୁଡ଼ିକ ସବୁ Rengali Irrigation Divisionଙ୍କ ନାମରେ ହୋଇଛି । ଜଣେ କିରାନୀଙ୍କ ହସ୍ତାକ୍ଷର । ତେଣୁ ପୂର୍ବ ୩ ମାସର PWD Bills ଦେଖିବାକୁ ଚାହିଁଲେ । ସେ AG ଙ୍କୁ ଫୋନ୍ କରିବାରୁ ସେ ପରାମର୍ଶ ଦେଲେ, ''ତା ପରଦିନ ଶନିବାର, half holiday. ଆପଣଙ୍କ ପୋଲିସ ଅଫିସରମାନେ ଆସନ୍ତୁ । ଆମେ ସେହି ପୂର୍ବ ବିଲ୍ ଗୁଡ଼ିକୁ ଅନ୍ୟ କେହି ନଥିବାବେଳେ ଖୋଜି ବାହାର କରିନେବୁ ।'' ସେଇଆ ହେଲା । ପୂର୍ବ ୩ ମାସର ବିଲ୍ ପ୍ରାୟ ୭/୮ଟା ମିଳାଇ ଦେଖିଲାବେଳକୁ ଜଣେ Accounts କିରାନୀଙ୍କ ହସ୍ତାକ୍ଷର । ଜଣେ Treasury Clerk ତାକୁ ପାଶ୍ କରିଛନ୍ତି ଏବଂ State Bank ର ଜଣେ Cashier Payment କରିଛନ୍ତି ।

ରବିବାର ଭୋର ୪ଟା ବେଳରୁ ପୋଲିସ୍ ସେମାନଙ୍କ ଘର ଖାନତଲାସ କଲେ । କିଛି ଜାଲ୍ ମୋହର ଓ କିଛି ଉଦ୍‌ବୃତ୍ତ ଟଙ୍କା ପ୍ରତ୍ୟେକଙ୍କ ଘରୁ ମିଳିଲା । ସମସ୍ତଙ୍କୁ ଗିରଫ କରି କୋର୍ଟ ଚାଲାଣ ହେଲା । ମାଜିଷ୍ଟ୍ରେଟ୍ କୋର୍ଟରେ ସମସ୍ତଙ୍କୁ ଫାଇନ୍ ଏବଂ ସଶ୍ରମ କାରାଦଣ୍ଡ ଆଦେଶ ଦେଲେ । ସେମାନେ ହାଇକୋର୍ଟରେ ଅପିଲ୍ କଲେ । ମୋର ପରବର୍ତ୍ତୀ ଡିରେକ୍ଟର ଏ କେସ୍‌ରେ Advocate ଙ୍କୁ ଉପଯୁକ୍ତ ସହଯୋଗ ନ କରିବାରୁ କେସ୍‌ରେ ଦଣ୍ଡାଦେଶ ଲାଘବ ହୋଇଗଲା । ମାତ୍ର Suspension ସମୟର ଦରମା ମିଳିଲା ନାହିଁ । ଆମ ସରକାରୀ କେସର୍ ଦୁର୍ଦ୍ଦଶା ଏହିପରି ।

ଏହାପରେ ବିଲ୍ ପାଶ୍ ହେଲାପରେ କେବଳ ଗୋଟିଏ ରସିଦ୍ ଦେଇ ବ୍ୟାଙ୍କକୁ ଗୋଟିଏ ଲଉମୁଦ ବାକ୍ସରେ ପାଶ୍ ବିଲ୍‌ଗୁଡ଼ିକ ପଠାଇ ଦିଆହେଲା । ତେଣୁ ଜାଲ୍ ବିଲ୍ ଆଶଙ୍କା ଦୂର ହୋଇଗଲା ।

ବର୍ତ୍ତମାନ ସବୁ ଷ୍ଟାଫ୍‌ମାନଙ୍କୁ ବ୍ୟାଙ୍କ ଚେକ୍ ଦେବାରୁ ବ୍ୟାଙ୍କରେ ଭୀଷଣ ଭିଡ଼ ଓ ବିଭ୍ରାଟ ଏବଂ କର୍ମଚାରୀମାନେ ବହୁତ ଅସୁବିଧା ଭୋଗୁଛନ୍ତି । ନିୟମ ପରିବର୍ତ୍ତନ କରିବା ବେଳକୁ ଏହା କେତେଦୂର କାର୍ଯ୍ୟକାରୀ ହୋଇପାରିବ, ତାହା ବିଚାରକୁ ନେବା ଉଚିତ୍ ।

ଏହିପରି ଅତି ସନ୍ତୋଷଜନକ ଭାବେ ୩ ବର୍ଷ କାମ କରି ମୁଁ ୧୯୭୮ ମସିହାରେ ଅର୍ଥ ବିଭାଗକୁ ଜଏଣ୍ଟ ସେକ୍ରେଟେରୀ ଭାବେ ବଦଳି ହେଲି ।

ମୋଟ ଉପରେ ଟ୍ରେଜେରୀ କାର୍ଯ୍ୟରେ ମୋର ଖୁବ୍ ଆନନ୍ଦଦାୟକ ହେଉଥିଲା ।

ଢେଙ୍କାନାଳ ଟ୍ରେଜେରୀ ଅଫିସର ଥିଲେ ଆମର ଜଣେ ଦକ୍ଷ ଅଫିସର ସ୍ୱର୍ଗତଃ ରସାନନ୍ଦ ମହାନ୍ତି । ତାଙ୍କର ଅକ୍ଳାନ୍ତ ପ୍ରଚେଷ୍ଟାରେ ସେହି ଢେଙ୍କାନାଳର କଲେକ୍ଟରଙ୍କ ଷ୍ଟେନୋ ଶ୍ରୀଯୁକ୍ତ ଦାମୋଦର ତ୍ରିପାଠୀଙ୍କ ଜ୍ୟେଷ୍ଠପୁତ୍ର ଶ୍ରୀ ପ୍ରସନ୍ନ କୁମାରଙ୍କ ସଙ୍ଗେ ମୋର ଜ୍ୟେଷ୍ଠା କନ୍ୟା ମିନାକ୍ଷୀଙ୍କ ଶୁଭ ପରିଣୟ ଅନୁଷ୍ଠିତ ହେଲା ୧୯୭୫ ମସିହାରେ । ବିବାହ ପରେ ପ୍ରସନ୍ନଙ୍କର Indian Overseas Bank ରାୟଗଡ଼ା ବଦଳି ହୋଇଗଲା । ରାୟଗଡ଼ାରୁ ପୁଣି ପଦ୍ମପୁର ବୋଲି ଏକ ଗ୍ରାମ ଶାଖା । ପଦ୍ମପୁରର ବୁଗୁଡ଼ା ବଂଶଧାରା ନଦୀ କୂଳରେ ଏକ ବ୍ରାହ୍ମଣ ଗ୍ରାମ । ମୁଁ ସେଠାକୁ ବହୁତ ଥର ଯାଇଛି । ତାହା ଅତି ଶସ୍ତା ଜାଗା । ବିଶେଷତଃ ଆମ୍ବ, ଫଳ ଏବଂ ଦୁଧ ଦହି ବହୁତ ଶସ୍ତା । ସେହି ହାଇସ୍କୁଲ୍‌ରେ ମୋର ଝିଅ ମିନାକ୍ଷୀ ଗଣିତ ଶିକ୍ଷକ ଭାବେ ନିଯୁକ୍ତି ପାଇଥିଲେ । ଗୋଟିଏ ମାତ୍ର ସନ୍ତାନ । ସେ ଆମ ପାଖରେ ଥାଏ । ସେମାନେ ସେଠାରେ

ଅତି ଆନନ୍ଦରେ ଦୁଇ ବର୍ଷ ବିତାଇଲା ପରେ ଭବାନୀପାଟଣାକୁ ବଦଳି ହୋଇଗଲେ । ସେମାନେ ଏବେ ମଧ୍ୟ ସ୍ମରଣ କରନ୍ତି ତାଙ୍କ ଚାକିରୀ କାଳ ମଧ୍ୟରେ ପଦ୍ମପୁର ପୋଷ୍ଟିଂ କିପରି ଅତି ଆନନ୍ଦଦାୟକ ଏବଂ ସୁଖକର ଥିଲା । ସେଠାକାର ଖାଦ୍ୟଦ୍ରବ୍ୟ ଏବଂ ସୁଲଭ ମୂଲ୍ୟ ଆଉ କେଉଁଠି ମିଳିବ ନାହିଁ । ସେହି ଦିଗକୁ ଗଲାବେଳେ ଏବଂ ଫେରିଲାବେଳେ ମୋହନା ଡେଇଁ ଗଲେ ତପ୍ତପାଣି ଉଷ୍ଣପ୍ରସ୍ରବଣ । ଉତ୍ତାପ ୧୦ ଡିଗ୍ରୀ ସେଣ୍ଟିଗ୍ରେଡ୍ ଥିଲାବେଳେ ଗରମ ପାଣିରେ ସ୍ନାନ କଲେ କି ଆରାମ । ପ୍ରଥମେ ପାଣିରେ ଗୋଡ଼ ପୂରାଇଲାବେଳେ ଗୋଡ଼ ପୋଡ଼ିଯିବା ଭଳି ଲାଗିବ । ମାତ୍ର ଗାଧୋଇସାରି ଆସିଗଲେ କି ଆରାମ । ତା ପରେ ଲୁଗାପଟା ପିନ୍ଧି କଫି କପେ ଓ କେତୋଟି ଗରମ ବରା ଖାଇନେଲେ ସ୍ୱର୍ଗସୁଖ । ସେ ବେଳ ଆଉ ଆସିବ ନାହିଁ ।

## ଅର୍ଥ ବିଭାଗ

ଅର୍ଥ ବିଭାଗରେ ଜଏଣ୍ଟ ସେକ୍ରେଟେରୀ ରୂପେ ୩ ବର୍ଷ ଏବଂ ଆଡ଼ିସ୍‌ନାଲ୍ ସେକ୍ରେଟେରୀ ଭାବେ ୩ ବର୍ଷ ଏପରି ୬ ବର୍ଷରୁ ଊର୍ଦ୍ଧ୍ୱ କାର୍ଯ୍ୟ କରିଛି ।

ମୋର ପ୍ରଧାନ ଦାୟିତ୍ୱ ଥିଲା Efficiency Audit ଏବଂ Local Fund Audit । ଏହାଛଡ଼ା ଆହୁରି କେତେକ କାର୍ଯ୍ୟ, ଯଥା- Group Insurance and Small Savings.

Efficienc-Audit ରେ ପ୍ରାୟ ୨୫ ଜଣ ବେଶ୍ ପୁରୁଖା ଅଡ଼ିଟର କାମ କରୁଥିଲେ । ସେତେବେଳେ Mr. SMH Burney ଯେ Commissioner, Commercial Taxes ଥିଲେ ସେ Central Govt.ରୁ ଫେରି Board of Revenueର ମେମ୍ବର ଭାବେ ଜଏନ୍ କଲେ । ସେ ଫାଇନାନ୍‌ସ୍ ସେକ୍ରେଟେରୀଙ୍କୁ ଅନୁରୋଧ କଲେ ଗୋଟିଏ ଅଡ଼ିଟ୍ ପାର୍ଟି Port Trust Organisationକୁ ପଠାଇ ଅଡ଼ିଟ୍ କରାଇବା ପାଇଁ । ସେଥିରେ ପ୍ରାୟ ୮୦ ମଟର ଲଞ୍ଚ ବିଭିନ୍ନ ନଦୀରେ ମହଜୁଦ ଥାଏ, ବନ୍ୟାବେଳେ ରିଲିଫ୍ କାର୍ଯ୍ୟରେ ସାହାଯ୍ୟ କରିବାପାଇଁ । ସେ ଅଫିସର ଚିଫ୍ ଇଞ୍ଜିନିୟର ଯେପରି ଅଦକ୍ଷ, କର୍ମଚାରୀମାନେ ମଧ୍ୟ ବଡ଼ ଅଦକ୍ଷ ଏବଂ ଛିଲା । ଠିକ୍ ଜୁଲାଇ ମାସରେ ଲଞ୍ଚ ଗୁଡ଼ିକରୁ ଅନେକଟା ଅଚଳ । ରିଲିଫ୍ ପାଇଁ ଘରୋଇ ଡଙ୍ଗା ଭଡ଼ା ଆସୁଥିଲା । ଖର୍ଚ୍ଚ ପ୍ରାୟ ଏକ କୋଟି ଟଙ୍କା । ମୋତେ Member ଅନୁରୋଧ କଲେ ଶୀଘ୍ର ଅଡ଼ିଟ୍ ରିପୋର୍ଟ୍

ଦେବାପାଇଁ । ଦୁଇମାସ ସମୟ ଦେଲେ । ମୁଁ ଦେଢ଼ ମାସ ଭିତରେ ୪ ଜଣ ଅଡ଼ିଟରଙ୍କୁ ପଠାଇ ଗୋଟିଏ ଉତ୍ତମ ଅଡ଼ିଟ୍ ରିପୋର୍ଟ ଦେଲି । ସେଥିରେ ଲେଖିଥିଲି ସରକାରଙ୍କ ପ୍ରତ୍ୟେକ ବିଭାଗ ନିର୍ଦ୍ଦିଷ୍ଟ କାର୍ଯ୍ୟ ପାଇଁ ଉଦ୍ଦିଷ୍ଟ । ସେ ବିଭାଗଟି ଯେବେ ସେ କାର୍ଯ୍ୟଟି ଠିକ୍ ଭାବେ ଚଳାଇ ପାରୁନାହିଁ; ତା ହେଲେ ସେ ବିଭାଗର ପୁନର୍ଗଠନ କରାଯିବା ଉଚିତ । କଅଣ କରାଯିବ, ସରକାର ସିଦ୍ଧାନ୍ତ କରନ୍ତୁ । ରିପୋର୍ଟ ଧାର୍ଯ୍ୟ ସମୟ ପୂର୍ବରୁ ଦେଇଦେବାରୁ Mr. Burney ସାହେବ ଅତ୍ୟନ୍ତ ସନ୍ତୋଷ ପ୍ରକାଶ କରି Finance Secretary ଙ୍କୁ ମୋତେ ଓ ମୋର ସହକର୍ମୀମାନଙ୍କୁ ଗଭୀର ଧନ୍ୟବାଦ ଜ୍ଞାପନ କରିଥିଲେ । ଏହାର ମାସକ ପରେ Mr. Burney ସାହେବ ଚିଫ୍ ସେକ୍ରେଟେରୀ ହୋଇ ଆସିଲେ । ସେତେବେଳେ ଥରେ West Bengalରେ ମୂଷଳ ଧାରାରେ ବର୍ଷା ଓ ତଦ୍‌ଜନିତ ବନ୍ୟା ହେଲା । ସେମାନେ Orissa Govt. କୁ S.O.S. ବାର୍ତ୍ତା ଦେଲେ , ୧୦୦ ମନୁଷ୍ୟ ଡାକ୍ତର ଓ 100 Veterinary ଡାକ୍ତର ଆବଶ୍ୟକୀୟ ଔଷଧ ସହିତ ୨୪ ଘଣ୍ଟା ମଧ୍ୟରେ ପଠାଅ । ସେତେବେଳେ Finance Secretary, Chief Minister, Finance Minister ସମସ୍ତେ ହେଡ୍‌କ୍ୱାଟରସ୍ ବାହାରେ । ମୋ ପାଖକୁ ଫାଇଲ୍ ଆସିଲା । ସିଧା ଚିଫ୍ ସେକ୍ରେଟେରୀଙ୍କ ପାଖକୁ ନେଲି । ସେ ସଙ୍ଗେ ସଙ୍ଗେ Approve କରି ମୋତେ କହିଲେ ଡାକ୍ତର ଓ ପଶୁ ଡାକ୍ତର ଆଜି ରାତି ପୁରୀ ଏକ୍‌ସ୍‌ପ୍ରେସ୍‌ରେ ଯାଇ ଆସନ୍ତା କାଲି ସକାଳେ କଲିକତାରେ ପହଞ୍ଚିବେ । କାହାରିକୁ ଅପେକ୍ଷା କରନା । ସେମାନେ ଗଲେ କି ନାହିଁ ବୁଝି ଆଜି ରାତି ୯ଟା ବେଳେ ମୋତେ ସରକିଟ୍ ହାଉସ୍‌କୁ ଫୋନ କରି ଜଣାଇଦେବ । Finance Minister ଏବଂ Chief Minister ଦିଲ୍ଲୀରୁ ଫେରିଲେ ଫାଇଲ୍ ଦେଖିବେ । ଏଥିରେ ଓଡ଼ିଶା ସରକାରଙ୍କର ପ୍ରାୟ ଏକ କୋଟି ଟଙ୍କା ଖର୍ଚ୍ଚ ହେବ । ଏପରି ସାହସ କାହାର ହେବ !

ଆମର ପଡ଼ୋଶୀ ରାଜ୍ୟକୁ ଏପରି ପ୍ରାକୃତିକ ବିପର୍ଯ୍ୟୟ ବେଳେ ସାହାଯ୍ୟ କରିଥିବାରୁ ମୋ ମନରେ ବହୁତ ଆନନ୍ଦ ।

ଏହିପରି ବହୁତ ଘଟଣା ଘଟିଛି, ଯାହା ମୋ ମନରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ।

ଆମ ଓଡ଼ିଶାରେ ଯେତେ ଚିଫ୍ ସେକ୍ରେଟେରୀ ଥିଲେ ତାଙ୍କ ଭିତରେ ଶ୍ରେଷ୍ଠ ହେଉଛନ୍ତି Sri B. Sivaraman, ICS । ତାଙ୍କ ଦକ୍ଷତା ଏତେ ଉଚ୍ଚକୋଟୀର ଯେ ମୁଁ ତାଙ୍କ ବିଷୟରେ କିଛି କହିବାକୁ ଅକ୍ଷମ ।

ମାତ୍ର ତାଙ୍କ ପରେ Mr. SMH Burney, Mr.Ramkrishnaya, Mr.Gyana Chand, Mr. A.K.Barren, Mr.R.N.Das ଙ୍କ ପରି ଦକ୍ଷ ଏବଂ ସାହସୀ ଅଫିସର ଆସିଛନ୍ତି । ସେମାନଙ୍କୁ ମୋର କୃତଜ୍ଞତା ଓ ସମ୍ମାନ ଜଣାଉଛି । ଡ. ରମାକାନ୍ତ ରଥ ଜଣେ ଦକ୍ଷ ଏବଂ ଅଭିଜ୍ଞ ଚିଫ୍ ସେକ୍ରେଟେରୀ ଥିଲେ । ସେ ଜାତୀୟ ସାହିତ୍ୟ ଏକାଡେମିର ସଭାପତି ରୂପେ ୫ ବର୍ଷ ସୁଚାରୁରୂପେ କାର୍ଯ୍ୟ ସଂପାଦନ କରିଛନ୍ତି ।

ଆଉ ଗୋଟିଏ ଗୁରୁତ୍ୱପୂର୍ଣ୍ଣ ଚାର୍ଜ ହେଲା ପେନ୍‌ସନ୍ । ବ୍ରିଟିଶ୍ ଟାଇମ୍‌ରେ ସର୍ବୋଚ୍ଚ ପେନ୍‌ସନ୍ ଥିଲା ଟ.୩୫୦୦/- । ପେନ୍‌ସନରେ ହାର ଥିଲା ୩୦/୮୦ x number of qualified years of service । ସର୍ବନିମ୍ନ ସର୍ଭିସ୍ ଥିଲା ୨୦ ବର୍ଷ । କିନ୍ତୁ ୧୦ ବର୍ଷ ପରେ ମେଡ଼ିକାଲ୍ ସାର୍ଟିଫିକେଟ୍ ଭିତିରେ ଇନ୍‌ଭେଲିଡ୍ ପେନସନ୍ ଦିଆ ଯାଉଥିଲା । ୟୁନିଭରସିଟି ଏବଂ ପ୍ରାଇମେରୀ ଶିକ୍ଷକମାନଙ୍କୁ ପେନ୍‌ସନ୍ ଦିଆଯାଉ ନଥିଲା । ତାହାର ଏବେ ସରଳୀକରଣ କରାଯାଇ ପେନସନ ୫୦% ବା ମୂଳ ଦରମାର ଅଧା ଦିଆଗଲା । ଚାକିରୀରେ ଥିବା ଲୋକଙ୍କୁ ଯେପରି ମହଙ୍ଗା ଭରା ଦିଆଯାଉଥିଲା, ପେନସନ୍‌ଗ୍ରାହୀ ମାନଙ୍କୁ ସେପରି ମହଙ୍ଗା ଭତା ଦିଆଯାଉଛି । ବୟସ ୮୦ ବର୍ଷରୁ ଅଧିକ ହେଲେ ୨୦% ଅଧିକ, ୮୫ ରୁ ବେଶି ହେଲେ ୨୫% , ୯୦ରୁ ଅଧିକ ହେଲେ ୩୦% ଓ ୧୦୦ ରୁ ଅଧିକ ହେଲେ ୧୦୦% ଅଧିକ ହେବ । ବୟସ ଅନୁସାରେ ପେନ୍‌ସନ୍ ଦିଆଗଲେ Age Bonus Pension ଦରକାର ହେଉଛି । ଜାତୀୟକରଣ ବ୍ୟାଙ୍କରୁ ମଧ ପେନ୍‌ସନ୍ ଆଣିପାରିବ । କଲେଜ୍ ଶିକ୍ଷକ ଏବଂ ଶିକ୍ଷକମାନଙ୍କ ପାଇଁ ପେନ୍‌ସନ ଅଥରିଟି ଜଣେ ଭାରପ୍ରାପ୍ତ ଫାଇନାନ୍‌ସ୍ ଡିପାଟ୍‌ମେଣ୍ଟାଲ୍ ଅଫିସରଙ୍କ ଗୋଟିଏ ସ୍ୱତନ୍ତ୍ର ଅଫିସ୍ ଅଛି । ସେ ସମୟରେ ଏକାଥରକେ ପୁରୁଣା ହେଡ୍‌ମାଷ୍ଟର ଓ ଶିକ୍ଷକମାନେ ଯେଉଁମାନେ taken over School ବା ବେସରକାରୀରୁ ସରକାରୀ ସଂସ୍ଥାକୁ ଆସିଥିଲେ, ସେମାନଙ୍କୁ ଗୋଟିଏ ଅଙ୍କ ପିଛିଲା ତାରିଖରୁ ପେନ୍‌ସନ୍ ଦେବାଦ୍ୱାରା ସେମାନେ ଆଖିବୁଜିବା ପୂର୍ବରୁ ଆଶ୍ୱସ୍ତି ଏବଂ ସନ୍ତୋଷରେ ଶେଷ ଜୀବନ କଟାଇଲେ । ସ୍ୱନାମଧନ୍ୟ ପୁରାତନ ହେଡ୍‌ମାଷ୍ଟର ମାନେ ଯଥା:- ଦିବ୍ୟସିଂହ ପଟ୍ଟନାୟକ, ଶଶଧର ପଟ୍ଟନାୟକ (ଛତ୍ରପୁର) ରାଧାକାନ୍ତ ପଣ୍ଡା (ଆସିକା) ପ୍ରଭୃତି । ବିଶ୍ୱବିଦ୍ୟାଳୟ ପ୍ରଫେସରମାନଙ୍କ ସି.ପି.ଏଫ୍. ବଦଳାଇ ପେନ୍‌ସନ୍ କରାଯାଇଛି । ଏହାପରେ ପୁଣି ସ୍ୱାଧୀନତା ସଂଗ୍ରାମୀ ପେନ୍‌ସନ୍ ଏବଂ ଏମ.ଏଲ୍.ଏ./ ଏମ୍.ପି ପେନ୍‌ସନ୍, କୁଷ୍ଠରୋଗୀମାନଙ୍କ ପାଇଁ ପେନ୍‌ସନ୍ । ଏହିସବୁ ମିଶାଇ ବର୍ଷକୁ ପ୍ରାୟ ୪୦୦୦ କୋଟି ଟଙ୍କା ପେନ୍‌ସନ୍‌ରେ

ଖର୍ଚ୍ଚ ହେଉଛି । ସର୍ବୋଚ୍ଚ ସୀମା କିଛି ନାହିଁ । ସୁପ୍ରିମ୍ କୋର୍ଟ କହିଲେ ''ପେନ୍‌ସନ୍ ଜଣେ କର୍ମଚାରୀର ନ୍ୟାୟଗତ ଅଧିକାର । ତାକୁ କେହି ସଂକୁଚିତ କରିପାରିବ ନାହିଁ ।'' ଏହି ରାୟ ଦ୍ୱାରା କେନ୍ଦ୍ର ଓ ରାଜ୍ୟ ସରକାର କେବେ ପେନ୍‌ସନ୍ ଊଣା କରିନାହାନ୍ତି ।

ଅଧିକ ଖର୍ଚ୍ଚ ଯୋଗୁ ନୂତନ କର୍ମଚାରୀମାନଙ୍କ ପାଇଁ ପେନ୍‌ସନ୍ ବଦଳରେ ଅନ୍ୟ ରକମ୍ ପେନସନ୍ ଦିଆଯାଉଛି । କର୍ମଚାରୀମାନେ ଦରମାରୁ କିଛି ଅଂଶ ଦାଖଲ କରୁଛନ୍ତି । ସରକାର ସେତିକି ବା ଅଧିକ ଅର୍ଥ ଦାଖଲ କରି ପେନ୍‌ସନ୍ ଫଣ୍ଡରେ ଜମା ରଖି ସେହି ଜମାରୁ ପେନ୍‌ସନ ଦିଆଯିବ । ତାହାର କାର୍ଯ୍ୟ ପ୍ରଣାଳୀ ଏ ପର୍ଯ୍ୟନ୍ତ ସିଦ୍ଧାନ୍ତ ହୋଇନାହିଁ । ଯେତେଦିନ ପୂର୍ବ ଅବସ୍ଥା ବା ପ୍ରଣାଳୀ ଚାଲିଥିବ, ଅବସରପ୍ରାପ୍ତ କର୍ମଚାରୀମାନଙ୍କୁ ଅନ୍ତତଃ ୨/୩ ମାସ ମଧ୍ୟରେ ପେନ୍‌ସନ୍ ଦେଇଦେଲେ ସେମାନେ ଆଶ୍ୱସ୍ତ ହୁଅନ୍ତେ । କର୍ମଚାରୀମାନଙ୍କ ମଧ୍ୟରେ ଦୁର୍ନୀତି ହ୍ରାସ ପାଆନ୍ତା ଏବଂ ଅସନ୍ତୋଷ କମ୍ ହୁଅନ୍ତା ।

ଆଉ ଗୋଟିଏ ଗୁରୁତ୍ୱପୂର୍ଣ୍ଣ ବ୍ୟବସ୍ଥା ହେଲା Group Insurance Scheme । ସରକାରୀ କର୍ମଚାରୀମାନଙ୍କ ଏକ ଗ୍ରୁପ୍‌କୁ ଏକ Unit ଧରାଗଲେ ବାର୍ଷିକ ମୃତ୍ୟୁ ସଂଖ୍ୟା ପ୍ରାୟ ୨ ବା ୩ % । ତେଣୁ ସେମାନଙ୍କ ଠାରୁ ଏକମୁଣ୍ଡରେ କିଛି ଟଙ୍କା ପ୍ରିମିୟମ ବାବଦରେ ନେଇ ସରକାରୀ କର୍ମଚାରୀଙ୍କୁ ଗୋଟିଏ Policy ଦେଇଦେଲେ ସମସ୍ତେ ସେଥିରେ କଭର ହୋଇପାରିବେ । ଏଲ୍.ଆଇ.ସି. ର ଜଣେ ଡିଭିଜନାଲ୍ ଅଫିସର ଶ୍ରୀଯୁକ୍ତ ଧର୍ମାନନ୍ଦ ମିଶ୍ର ଏଥିରେ ବହୁତ ଦକ୍ଷତା ଦର୍ଶାଇଥିଲେ । କର୍ମଚାରୀ ମରିଯିବାର ୮/୧୦ ଦିନ ମଧ୍ୟରେ Insured ଟଙ୍କା ଟ.୪୦,୦୦୦/- ବା, ଟ.୬୦,୦୦୦/- ସଙ୍ଗେ ସଙ୍ଗେ ମିଳିବ । ଜମା ଟଙ୍କା ସୁଧ ସହ ଏବଂ Insured ଟଙ୍କା ସବୁ ମିଳିଗଲେ ମୃତ ଲୋକର ପରିବାରକୁ ବହୁତ ଆର୍ଥିକ ସାହାଯ୍ୟ ମିଳିପାରିବ । ଏହି ସ୍କିମ୍ ପରେ Municipality କର୍ମଚାରୀ, University କର୍ମଚାରୀ, ବେସରକାରୀ ଅନୁଷ୍ଠାନର କର୍ମଚାରୀ ସମସ୍ତଙ୍କ ପ୍ରତି ଲାଗୁ ହୋଇଗଲା । ଏହାକୁ ବ୍ଲକ୍ ଜରିଆରେ ଚାଷୀମାନଙ୍କୁ ପ୍ରଯୁଜ୍ୟ କରାଇବା ପାଇଁ ଏକ ଯୋଜନା ଚିନ୍ତା କରାଯାଉଥିଲା । ତାହା ହୋଇ ପାରିନାହିଁ ।

ମୁଁ ଏବେ ଖବରକାଗଜରେ ପଢ଼ିଲି, ଚାଇନାରେ ଉଭୟ ପେନସନ୍ ଏବଂ ଇନ୍‌ସୁରାନ୍‌ସ୍ ସ୍କିମ୍ ସେହି ଦେଶର କୃଷକମାନଙ୍କ ପ୍ରତି ଲାଗୁ ହୋଇଛି । ସରକାର ଅଧିକ ଟଙ୍କା ଦେଉଛନ୍ତି, କୃଷକ ଖୁବ୍ ଅଳ୍ପ ଟଙ୍କା ଦେଉଛନ୍ତି । ଆମ ଦେଶରେ ସେହିପରି କୃଷକ, ରିକ୍ସାବାଲା, ଅଟୋବାଲା ଏବଂ ମତ୍ସ୍ୟଜୀବୀ, ସବୁ ଶ୍ରେଣୀର ଦଳିତ ବର୍ଗ

ଯେଉଁମାନେ ବିପଦ ସଂକୁଳ ଅବସ୍ଥାରେ ଜୀବନ ନିର୍ବାହ କରୁଛନ୍ତି, ସେମାନଙ୍କ ପ୍ରତି ପ୍ରଯୁଜ୍ୟ କଲେ ଭଲ ହୁଅନ୍ତା । ଏ ବିଷୟରେ ବିଚାର ବିମର୍ଷ ହୋଇଥିଲା । ମାତ୍ର କାର୍ଯ୍ୟକାରୀ ହୋଇପାରି ନାହିଁ ଏବଂ ମୋ ନଜରକୁ ଅନେକ ଦୟନୀୟ ଦୃଷ୍ଟାନ୍ତ ଆସିଛି । ବିଶେଷତଃ ଅଟୋଚାଳକ, କାର୍ ଡ୍ରାଇଭର, କୁଲି ମୂଲିଆ ଓ ବିପଦ ସଂକୁଳ କାମ କରୁଥିବା ଶ୍ରମଜୀବୀମାନଙ୍କୁ ଏହି ସ୍କିମ୍ ଲାଗୁକଲେ ଦରିଦ୍ର ଲୋକେ ବହୁ ଉପକାର ପାଆନ୍ତେ ।

ଫାଇନାନ୍ସ ଡିପାର୍ଟମେଣ୍ଟରେ ଥିଲାବେଳେ ଆଉ ଗୋଟିଏ ଲୋକ ସଂପର୍କ ବିଭାଗରେ ମୁଁ କାମ କରିଥିଲି । ତାହା ହେଲା Small Savings Scheme. ସେତେବେଳେ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ଭାରତର ପ୍ରଧାନମନ୍ତ୍ରୀ ଥିଲାବେଳେ Postal Savings ଓ Fixed Deposit Scheme ବହୁତ ଆକର୍ଷକ ଥିଲା । Bank Interest ଅପେକ୍ଷା ସେଥିରେ 1% to 2% ଅଧିକ ସୁଧ ଥିଲା । ସମୟ ଥିଲା ଆଠ ବର୍ଷ ବା ସାତ ବର୍ଷ । ମଧ୍ୟବିତ୍ତ ସରକାରୀ କର୍ମଚାରୀ ଓ ସାଧାରଣ ଲୋକେ ଏଥିରେ ରଖିବାକୁ ପସନ୍ଦ କରୁଥିଲେ । Small Saving ର Deputy Director ଥିଲେ ସ୍ୱର୍ଗତଃ ରାଘବାନନ୍ଦ ପାଣିଗ୍ରାହୀ । ସେ ବାଲେଶ୍ୱର ସୋରର ଲୋକ । ରାଜନୀତିରେ ବହୁତ କାମ କରି Contract Service ରେ ଆସି୫/୭ ବର୍ଷ କାମ କରିଥିଲେ । ତାଙ୍କ ସଙ୍ଗେ ମୋର ବହୁତ ସଦ୍‌ଭାବ ଥିଲା । ଆମେ ଉଭୟେ ବହୁତ ମିଟିଂ କରିଛୁ ଏବଂ ଟୁର୍‌ରେ ଯାଇ ଆନନ୍ଦରେ ସମୟ ଅତିବାହିତ କରିଛୁ । Small Savings ରେ ଯାହା ଆଦାୟ ହୁଏ ତାହାର ଖର୍ଚ୍ଚ ବାବଦ ୨୦% କଟାଯାଇ ଅବଶିଷ୍ଟ ଟଙ୍କା ୫୦% State Plan କୁ ଯାଏ ଓ ୫୦% Central Plan । ସେଗୁଡ଼ିକ ପାଇଁ ଲଟେରୀ ଉଠାଯାଇ ବିଜେତା ଡିପୋଜିଟର ମାନଙ୍କୁ ପୁରସ୍କାର ଦିଆଯାଉଥିଲା । ସେ ପ୍ରଥା କେଉଁ ଯୁଗରୁ ଲୋପ ପାଇଲାଣି ।

ଆଉ ମଧ୍ୟ Central Govt. ର Employee's Provident Fund ରେ ମୁଁ State Govt. ତରଫରୁ ତାଙ୍କ Bank ରେ Director ଥିଲି । ସେଗୁଡ଼ିକ ସବୁ Centralised ହୋଇ ଭୁବନେଶ୍ୱରରେ ଥିଲା । ତାର ୩ଟି ବ୍ରାଞ୍ଚ ଅଫିସ୍ - ଗୋଟିଏ Rourkela ରେ, ଗୋଟିଏ Sambalpur ରେ ଓ ଆଉ ଗୋଟିଏ Berhampur ରେ ଖୋଲି Industrial Employee ମାନଙ୍କୁ Account Slip ଦେବା ତ୍ୱରାନ୍ୱିତ ହୋଇପାରିଲା ।

ମୋର ଆଉ ଗୋଟିଏ ଗୁରୁତ୍ୱପୂର୍ଣ୍ଣ ସେକ୍‌ସନ୍ ବା ଚାର୍ଜ ହେଲା Local Fund Audit । ଏହା ଅଧୀନରେ ଆମର ଥିଲେ ପ୍ରାୟ 1200 Auditor, 50 Audit Super-

intendents, ୧୩ ଜଣ ଜିଲ୍ଲା ଅଡ଼ିଟ୍ ଅଫିସର ଏବଂ ୨ ଜଣ ଡେପୁଟି ସେକ୍ରେଟେରୀ ପାହ୍ୟାର ଅଫିସର । ଆମର କାମ ହେଲା 314 Block Audit, 110 Municipality, NAC Audit, 110 ଟି ବଡ଼ ବଡ଼ ମନ୍ଦିର ଯେଉଁ ଗୁଡ଼ିକର ଆୟ ବାର୍ଷିକ ଏକ ଲକ୍ଷ ଟଙ୍କାରୁ ବେଶି ଏବଂ Endowment Commissioner ଙ୍କ ପରିଚାଳନାକୁ ଯାଉଛି । ସେଗୁଡ଼ିକୁ ଥରେ ବର୍ଷକୁ ପୁଙ୍ଖାନୁପୁଙ୍ଖ ଅଡ଼ିଟ୍ କରିବାକୁ ହେବ । ପୁଣି ତା ସାଙ୍ଗକୁ ୫/୬ ଟି ୟୁନିଭରସିଟି ଅଡ଼ିଟ୍ । ଏତେ ଅନୁଷ୍ଠାନ ପାଇଁ ଷ୍ଟାଫ୍ କମ୍ । ତଥାପି Block Audit ଯେଉଁଥିରେ Central Govt. Aids ଆସୁଛି, ସେଗୁଡ଼ିକୁ ଆଗ କରାହେବ । ପୁନଶ୍ଚ ୟୁନିଭରସିଟି ଅଡ଼ିଟ୍ ପାଇଁ ମଧ୍ୟ ୨/୩ ଜଣ ଅଡ଼ିଟରଙ୍କୁ ୫/୬ ମାସ ଲାଗେ । Endowment Audit ରେ ଶ୍ରୀଜଗନ୍ନାଥ ମନ୍ଦିର ଅଡ଼ିଟ୍ ୨ ଜଣ ଅଡ଼ିଟରଙ୍କର ୬ମାସର କାମ । ଅଡ଼ିଟ୍ ସରିଗଲେ ଜଣେ Audit Superintendent ତାକୁ ରିଭ୍ୟୁ ବା ପୁନର୍ବାର Check କଲେ ଅଡ଼ିଟ୍ ଅଫିସରଙ୍କ ଦସ୍ତଖତରେ ରିପୋର୍ଟ ୧୫ ଦିନ ମଧ୍ୟରେ ଦିଆଯିବ । ଯେଉଁ ବି.ଡି.ଓ.ମାନଙ୍କ ଅବହେଳା ଯୋଗୁ ଟଙ୍କା ଅପବ୍ୟବହାର ବା ତୋଷରପାତ ହୋଇଥିବ, ସେମାନଙ୍କ ଉପରେ ଦୃଢ଼ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯିବାକୁ ଆଇନ୍ ଅଛି । ନଚେତ୍ ସରଚାର୍ଯ କରାଯାଇ ତାଙ୍କଠାରୁ ଟଙ୍କା ଆଦାୟ କରାଯିବ । ଦେଖାଗଲା, ବହୁତ ବି.ଡ଼ି.ଓ. ମନାକଲେ ସୁଦ୍ଧା ତାଙ୍କୁ ଅଧିକ ଟଙ୍କା ଦିଆହୋଇ ସରକାରଙ୍କ Plan ବା ଟାରଗେଟ୍ ପୂରଣ କରାଗଲା । ଏପରିକି ପାର୍ବତ୍ୟ ଅଞ୍ଚଳରେ ଡାଲୁଅ ବା ଖରିପ୍ ଋତୁରେ ଡାଲୁଅ ଧାନ ବିହନ ଔଷଧ ମିଶାଯାଇ ପଠାଯାଇଥିଲା, ଯାହା ଶେଷକୁ ନଷ୍ଟ ହେଲା । ଆଇନ୍ ଅନୁସାରେ ଏପରି କ୍ଷତିକୁ ବି.ଡ଼ି.ଓ. କାହିଁକି ଭରଣା କରିବେ ? ଯାହାହେଉ Surcharge Proceeding କେବଳ ଗୋଟିଏ ଧମକ ବା ଡରାଇବା ପାଇଁ । ଏହାକୁ କଡ଼ାକଡ଼ି ପାଳନ କଲେ ବ୍ଲକ୍ କାର୍ଯ୍ୟ କରାଯାଇ ପାରିବ ନାହିଁ । ମୁଁ ଅବସର ନେବା ପୂର୍ବରୁ ବହୁତ ବି.ଡ଼ି.ଓ.ମାନଙ୍କୁ Warning ବା ତାଗିଦ୍ କରି ୪୦ କେସ୍ ଫଇସଲା କରିଦେଇ ଥିଲି ।

ଭଲ କାମ ହେଲା ଓଡ଼ିଶାର ପ୍ରସିଦ୍ଧ ମନ୍ଦିରମାନଙ୍କ ମଧ୍ୟରୁ ପ୍ରାୟ ଅନେକ ମନ୍ଦିର ଦର୍ଶନ କରିବାର ସୌଭାଗ୍ୟ ଅର୍ଜନ କରିଛି । ଯଥା ଶରଣକୂଳର ଲଡୁବାବା ମନ୍ଦିର, ଓଡଗାଁର ରଘୁନାଥଜୀଉ, କଣ୍ଟିଲୋର ନୀଳମାଧବ ଏହିପରି ଅନେକ ମନ୍ଦିର ।

ଏହିପରି କର୍ତ୍ତବ୍ୟ ଅନୁରୋଧରେ ମୁଁ ବିଭିନ୍ନ ପ୍ରସିଦ୍ଧ ମନ୍ଦିର ଦେଖିବାର ଆନନ୍ଦ ଉପଭୋଗ କରିବାର ସୁଯୋଗ ଲାଭ କରିଛି ।

ଜଗନ୍ନାଥ ମନ୍ଦିରର ଜମାପାଣ୍ଠି କିପରି ବୃଦ୍ଧି କରାଯିବ, ସେଥିଲାଗି କେତେଗୁଡ଼ିଏ ମିଟିଂରେ ମୁଁ ଯୋଗ ଦେଇଛି । କିପରି ଆୟ ବୃଦ୍ଧି ହୋଇପାରିବ, ହୁଣ୍ଡି ଖୋଲିବା ଏବଂ ଉଦ୍‌ବୃତ୍ତ ପାଣ୍ଠିକୁ ରାଷ୍ଟ୍ରାୟତ୍ତ ବ୍ୟାଙ୍କରେ Fixed Deposit ରେ ଦାଖଲ କରି ସୁଧ ସହ ୫ ବର୍ଷ ରଖିଲେ ଆୟ ବଢ଼ିଯିବ । ପ୍ରସ୍ତାବ ଗୃହୀତ ହେଲା । ଶ୍ରୀଜୀଉଙ୍କର ଅମୃତ ମଣୋହି ପାଇଁ ଉଦ୍ଦିଷ୍ଟ କେବଳ ଖୋର୍ଦ୍ଧା ଅଞ୍ଚଳରେ ୧୨୦୦ ଏକର ଲାଖରାଜ Endowment ଜମି ଯେଉଁଥିରୁ କିଛି ଆୟ ଆସୁନାହିଁ, ତାହାକୁ ଖୁବ୍ ସୁଲଭ ମୂଲ୍ୟରେ ରୟତମାନଙ୍କୁ ବିକ୍ରି କରାଗଲେ ମନ୍ଦିରର ବେଶ୍ କିଛି ଆୟ ହୋଇପାରିବ ବୋଲି ମତ ପ୍ରକାଶ ପାଇଲା । ଏହି ମିଟିଂରେ ପୂର୍ବତନ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ଜାନକୀବଲ୍ଲଭ ପଟ୍ଟନାୟକ ବହୁତ ଆଗ୍ରହ ଦେଖାଇଥିଲେ । ମନ୍ଦିର ଅଫିସ୍‌ଟିଏ ଶ୍ରୀମନ୍ଦିର ବେଢ଼ାରେ ସ୍ଥାପିତ ହେବାରେ ସମସ୍ତେ ସହମତି ଦେଇଥିଲେ । ମନ୍ଦିର ଗୁଡ଼ିକର ଆୟ ବଢ଼ାଇବାରେ Endowment Commissioner ତ୍ରୁଷି ଆଗ୍ରହ ପ୍ରକାଶ କରୁନଥିଲେ । ରେମୁଣାର ପ୍ରସିଦ୍ଧ କ୍ଷୀରଚୋରା ମନ୍ଦିରକୁ ଦର୍ଶନ କରିବାରେ ମୋର ଅପାର ଆନନ୍ଦ ମିଳିଥିଲା ।

ଏହିସବୁ କାର୍ଯ୍ୟ ବ୍ୟତୀତ ଗୋଟିଏ ବଡ଼ ଜଟିଳ ଅର୍ଥ ବିବାଦ Indian Ferro Chrome, Jajpur ଏବଂ Electricity Board ମଧ୍ୟରେ ଲାଗିଥିଲା । Electricity dues ମାତ୍ର ୩୦ ଲକ୍ଷ ଟଙ୍କା । ମାତ୍ର ସେଥିରେ Late payment surcharge ୧୨% ମିଶାଇ ତାହା ଦୁଇ ବର୍ଷରେ ସମୂଳସୁଧ ହାରରେ ଏକ କୋଟି କୋଡ଼ିଏ ଲକ୍ଷ ଟଙ୍କା ହେଲା । ବିଦ୍ୟୁତ୍ ବୋର୍ଡ଼ ଇଲେକ୍‌ଟ୍ରିକ୍ ଲାଇନ୍ କାଟିବାକୁ ନୋଟିସ୍ ଦେଲେ । ଚିଫ୍ ସେକ୍ରେଟେରୀ Sri L.I. Parija, IAS ଏହାର ସମାଧାନ ପାଇଁ ମୋତେ ନିର୍ଦ୍ଦେଶ ଦେଲେ । ମୁଁ ଉଭୟ ପକ୍ଷକୁ ଡକାଇ ଯାଜପୁର ରୋଡ଼ ଯାଇ ଦୁଇଦିନ ରହି ସିଦ୍ଧାନ୍ତରେ ଉପନୀତ ହେଲି ଯେ ଯେଉଁ ୩୦ ଲକ୍ଷ ଟଙ୍କା ଇଲେକ୍‌ଟ୍ରିକ୍ ବିଲ ବାକି ରହିଛି, ସେଥିରେ ବ୍ୟାଙ୍କ ରେଟ୍‌ରେ ୧୦% ସରଳ ସୁଧ ହାରରେ ହିସାବ କରି ଆଉ ୧୦ ଲକ୍ଷ ଟଙ୍କା, ଏହିପରି ସର୍ବମୋଟ ୪୦ ଲକ୍ଷ ଟଙ୍କା ଦେୟ ଦେବାକୁ ସ୍ଥିର ହେଲା । ସଙ୍ଗେ ସଙ୍ଗେ ୨୦ ଲକ୍ଷ ଟଙ୍କା ଦେବେ । ଅବଶିଷ୍ଟ ୫୦% ବା ୨୦ ଲକ୍ଷ ଟଙ୍କା ୩ ମାସ ମଧ୍ୟରେ ଦିଆଯିବ । ଏଣିକି ମାସିକ କୌଣସି ବିଲ୍‌ର ଦେୟ ବାକି ରହିବ ନାହିଁ । ଠିକ୍ ଟାଇମ୍‌ରେ ପଇଠ ହେବ । ଉଭୟ ପକ୍ଷ ସରକାରୀ ଅନୁଷ୍ଠାନ ହୋଇଥିବାରୁ ମୋର କିଛି ଅସୁବିଧା ନଥିଲା । ଏହିପରି ଅତି ସହଜରେ ପରସ୍ପର ବୁଝାମଣାରେ ଏତେ ବଡ଼ ଜଟିଳ ବିବାଦ ଯାହା ବର୍ଷ ବର୍ଷ ଧରି ଲାଗି ଆସିଥିଲା ତାହାର ସମାଧାନ ହୋଇଗଲା ।

Finance Deptt. ରେ ଥିଲାବେଳେ ଆଉ ଯୋଡ଼ିଏ ଉଲ୍ଲେଖନୀୟ ଘଟଣା ନ ଲେଖି ରହିବା ଉଚିତ୍ ମନେ କରୁନାହିଁ । ପ୍ରଥମଟି ହେଉଛି All India Local Fund

Audit Conference ରେ ଯୋଗଦାନ । ପ୍ରଥମେ ହୋଇଥିଲା ଆଲ୍ଲାହାବାଦ୍‌ରେ । ମୁଁ ଓ ମୋ ସ୍ତ୍ରୀ ସେଠାରେ ଯାଇ ଯୋଗଦାନ କରିଥିଲୁ । ମିଟିଂଟି ବହୁତ ସଫଳ ଏବଂ ଉପଯୋଗୀ ହୋଇଥିଲା । ପଂଜାବ ଏବଂ ହରିୟାନାର ବହୁତ ଅଫିସର ଆସିଥିଲେ । ସେମାନଙ୍କ ମଧ୍ୟରୁ କେତେକ ପ୍ରାକ୍ ସ୍ୱାଧୀନତା ସମୟର ଲୋକ । ସେମାନଙ୍କର ଜନ୍ମ ଲାହୋର, କ୍ୱେଟା, କରାଚୀ ପ୍ରଭୃତି ଅଞ୍ଚଳରେ (ବର୍ତ୍ତମାନ ପାକିସ୍ଥାନରେ ଅଛି) । ସେମାନଙ୍କର ଅବସ୍ଥିତି ଏବଂ ସୌହାର୍ଦ୍ଦପୂର୍ଣ୍ଣ ଜାତି ଧର୍ମ ନିର୍ବିଶେଷରେ ଏକତ୍ର କାର୍ଯ୍ୟ କରିବାର ମଧୁର ଅଭିଜ୍ଞତା ବର୍ଣ୍ଣନା କରିଥିଲେ । ମୁଁ ଓ ମୋର ସ୍ତ୍ରୀ ଗଙ୍ଗା ଓ ଯମୁନାର ତ୍ରିବେଣୀ ସଙ୍ଗମ ପ୍ରୟାଗରେ ଯାଇ ବୁଡ଼ ପକାଇ ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ ତର୍ପଣ କରିଥିଲୁ । ତ୍ରିବେଣୀ ସଙ୍ଗମ ଦର୍ଶନୀୟ ତୀର୍ଥ ସ୍ଥାନ । ଗଙ୍ଗା ନଦୀର ଜଳ ବରଫ ଯୋଗୁ ଧଳା ଏବଂ ଯମୁନା ନଦୀର ଜଳ ଈଷତ୍ କୃଷ୍ଣ ବର୍ଣ୍ଣ । ସଙ୍ଗମର ବହୁତ ତଳକୁ ମଧ୍ୟ ସେହି Line of demarcation ବା ମିଶ୍ରଣ ରେଖା ଜଣାପଡ଼େ । ମୋଟ ଉପରେ Allahabad Conference ଖୁବ୍ ସଫଳ ଏବଂ ଉପଭୋଗ୍ୟ ହୋଇଥିଲା ।

ଦ୍ୱିତୀୟ କନ୍‌ଫରେନ୍‌ସ ହେଲା ମଧ୍ୟପ୍ରଦେଶର ଭୋପାଳ ଠାରେ । ମୁଁ ଏବଂ ମୋର ସହକର୍ମୀ ଡେପୁଟି ସେକ୍ରେଟେରୀ ଶ୍ରୀ ପ୍ରଭାକର ଶତପଥୀ ସେଥିରେ ଯୋଗ ଦେଇଥିଲୁ । ସେଠାରେ ଛତିଶଗଡ଼ର ଜଗଦଳପୁର ଜିଲ୍ଲାର ଡାଲଖାଇ ଆଦିବାସୀ ନୃତ୍ୟ ଅର୍ଦ୍ଧ ଓଡ଼ିଆ ଏବଂ ଅର୍ଦ୍ଧ ଛତିଶଗଡ଼ୀ ଭାଷାରେ ପରିବେଷଣ କରିଥିଲେ । ସେଠାରେ ସ୍ଥିର ହେଲା ଆମ ଭୁବନେଶ୍ୱରରେ ଓଡ଼ିଶା ସରକାରଙ୍କ ତରଫରୁ ଗୋଟିଏ All India Seminar ହେବ । ଆମର ମନ୍ତ୍ରୀ ଥିଲେ ଶ୍ରୀଯୁକ୍ତ ଗଙ୍ଗାଧର ମହାପାତ୍ର । ଫାଇନାନ୍‌ସ ସେକ୍ରେଟେରୀ ଥିଲେ ଶ୍ରୀ ଶୋଭନ କାନୁନ୍‌ଗୋ । ସେମିନାର ୩ ଦିନ ଚାଲିଲା । ଭାରତର ପ୍ରତ୍ୟେକ ରାଜ୍ୟର ଡିରେକ୍‌ଟର ଏବଂ ଡେପୁଟି ଡିରେକ୍‌ଟରମାନେ ଯୋଗ ଦେଇଥିଲେ । କେତେକଙ୍କ ନାମ ହେଲା ଆନ୍ଧ୍ରପ୍ରଦେଶର Mr. Mohamad Hassan, ଗୁଜରାଟର Mr. Sharma । ଏହିପରି ଅନେକ ସମବୟସ୍କ ଏବଂ ମର୍ଯ୍ୟାଦାପୂର୍ଣ୍ଣ ଅଫିସର । ମି. ହାସନ୍ ହାଇଦ୍ରାବାଦର ନିଜାମ କୋଠି ନିକଟରେ ବାସ କରନ୍ତି । ସେ ଆଉ ଥରେ ଦୁଇଥର ତାଙ୍କର ସିନିୟର ଅଫିସରମାନଙ୍କୁ ଡକାଇ ମୋତେ ତାଙ୍କର ଏକ Govt.Bungalow ରେ address କରିବାକୁ ଡାକିଥିଲେ । ଅତି ଉଚ୍ଚ ସ୍ତରର ବ୍ୟକ୍ତି । ନିଜାମଙ୍କ ପରିବାର ସହିତ ଅତି ଘନିଷ୍ଠ ସଂପର୍କ ।

ଆଉ ଗୋଟିଏ କନ୍‌ଫରେନ୍‌ସ ହୋଇଥିଲା ଚେନ୍ନାଇରେ । ମୁଁ ଯାଇପାରି ନଥିଲି । ମୋଟ ଉପରେ Local Fund Audit ରେ କାର୍ଯ୍ୟ କରି ମୁଁ ଓଡ଼ିଶା ବାହାରେ ଏବଂ ଭିତରେ ବହୁତ ସ୍ଥାନ ଓ ଅନୁଷ୍ଠାନ ଦେଖିବାକୁ ସୁଯୋଗ ଲାଭ କରିଥିଲି । ପଂଜାବରେ

Local Fund Auditର Directorଙ୍କ ନିମନ୍ତଣ କ୍ରମେ ମୁଁ ଚଣ୍ଡିଗଡ଼ ଯାଇ ସେଠାରେ ବହୁତ ଗୁଡ଼ିଏ Reform ର ପରାମର୍ଶ ଦେଇ ତାହାକୁ କାର୍ଯ୍ୟକାରୀ କରିଥିଲି । ଯଥା- LPC system A.G Office ରୁ ଉଠାଇ ଆଣି Head of Deptt. କୁ ଦେବା ।

ଆଉ ଏକ ଉଲ୍ଲେଖନୀୟ ଘଟଣା ହେଉଛି Senior Deputy Director ଏବଂ Deputy Secretary ମାନଙ୍କ ପାଇଁ ଏକ Management Training Programmeର ଆୟୋଜନ କରିଥିଲି ।

IIPA (Indian Institure of Public Administration) କୁ ୨/୩ ଥର ଟ୍ରେନିଂରେ ଯାଇଛି । ସେଠାକାର ଶିକ୍ଷାର ପରିବେଶ ଏବଂ ଲାଇବ୍ରେରୀ ଖୁବ୍ ଉଚ୍ଚମାନର । ତାଙ୍କର ସହାୟତାରେ ଏବଂ ଆଦର୍ଶରେ ମୁଁ ସେହିପରି ଏକ ଟ୍ରେନିଂ ପ୍ରୋଗ୍ରାମ ଭୁବନେଶ୍ୱରରେ ଆୟୋଜନ କରିଥିଲି । IISM ବା Indian Institute of Secretariat Training and Managemnt, Indian Institute of Chartered Accountancy, Indian Institute of Management, Calcutta, IIM , Ahmedabad ର ଜଣେ ଜଣେ ପ୍ରଫେସର ଆମର Guest Faculty ଭାବରେ ଆସିଥିଲେ । ସବୁଠାରୁ ନାମଜାଦା ପ୍ରଫେସର ହେଲେ IIM, Calcutta ର ପ୍ରଫେସର ଶ୍ରୀ କେ. ବାନାର୍ଜି । ପୁରୀ ଏକସ୍‌ପ୍ରେସ୍‌ରେ ଆସିଲାବେଳକୁ ମୁଁ ସକାଳେ ୬ଟାରେ ଷ୍ଟେସନ୍ ଯାଇଥିଲି । ଜଣେ ଧୋତି ପଂଜାବୀ ପରିହିତ ବଙ୍ଗାଳୀ ଭଦ୍ରଲୋକ Ist Class Compartment ରୁ ଅବତରଣ କଲେ । ମୁଁ ତାଙ୍କୁ ଦେଖିଲା ମାତ୍ରେ ଅତି ବିନୀତ ଭାବେ କହିଲି ଆପଣ ମି. ବାନାର୍ଜି । ସେ ହଁ ବୋଲି କହିବେ । ତାଙ୍କୁ ସାଦରେ ଅଭ୍ୟର୍ଥନା କରି Guest Houseରେ ରଖାଇଲି । ସେଠାରେ ଯୋଗ ଦେଇଥିଲେ ସେକ୍ରେଟେରୀଏଟ୍‌ର କେତେକ ଡେପୁଟୀ ସେକ୍ରେଟେରୀ, Head of Department ମାନଙ୍କରୁ ଜଣେ ଜଣେ ଡେପୁଟି ଡିରେକ୍‌ଟର । ମୁଁ ସ୍ୱାଗତ ଭାଷଣ ଦେଲି । ମି. କେ.ରାମମୂର୍ତ୍ତି ଚିଫ୍ ସେକ୍ରେଟେରୀ ମୁଖ୍ୟ ଅତିଥି ମୋର ସ୍ୱାଗତ ଭାଷଣରେ ମୁଗ୍ଧ ହୋଇ Congratulate କରି ଚାଲିଗଲେ । ମି. ବାନାର୍ଜି, କାଲକାଟା IIM ର କହିଲେ, Managementର ମୁଖ୍ୟ ଲକ୍ଷ୍ୟ ହେଲା ଅନୁଷ୍ଠାନର Production, Engineering, Finance ଏବଂ Marketing, ସମସ୍ତଙ୍କୁ ଏକ ଦିଗରେ ମୁଖ୍ୟ ଲକ୍ଷ୍ୟ ଆଡ଼କୁ ଗତି କରାଇବା । Mathematics ରେ କୁହାଯାଏ ସଂଖ୍ୟା ବା Number ହେଉଛି ଦୁଇ ପ୍ରକାର Scalar quantity ଏବଂ Vector quantity । Scalar quantity ର ଗୋଟିଏ ମାତ୍ର ଗୁଣ Quantum ବା ପରିମାଣ । Vector quantity ର ଦୁଇଟି

ଗୁଣ । Both quantity and Direction । ଅନୁଷ୍ଠାନର ସମସ୍ତ ଲୋକ ଏକ ଦିଗରେ ଏକ ଲକ୍ଷରେ କାର୍ଯ୍ୟ କଲେ ଅନୁଷ୍ଠାନର ଉଦ୍ଦେଶ୍ୟ ସାଧିତ ହେବ । ନଚେତ୍ Sports ର Tug of War ପରି ଦୁଇ ଆଡ଼କୁ ଟାଣିଲେ ଦଉଡ଼ିଟି ଚାଲିବ ନାହିଁ ବା ବିପରୀତ ଦିଗରେ ଏକ ପାଖକୁ ଯାଇ ବିଫଳ ହେବ । ପ୍ରତ୍ୟେକ ମାନବ ବା Worker ଏକ Vector quantity, scalar quantity ନୁହେଁ । ସରକାରୀ ଅନୁଷ୍ଠାନର ବିଫଳତା ଏଥିପାଇଁ ।

୭ ଦିନ ପରେ Tourism Deptt.ରୁ ବଡ଼ ବସ୍ ନେଇ ପୁରୀ, କୋଣାର୍କ ପରିଦର୍ଶନରେ ଗଲୁ । ଯାବତୀୟ ଖର୍ଚ୍ଚ Tourism Departmentର । ସେହିପରି କାର୍ଯ୍ୟକ୍ରମ ଏବେ କାହିଁକି ହେଉନାହିଁ ? ଏହାଦ୍ୱାରା Secretariat ଏବଂ Head of Deptt ର Middle Level Officer ମାନେ ଯେଉଁମାନେ କାଲିକୁ Director Postକୁ ଆସିବେ ସେମାନଙ୍କୁ Modern Management Method ବିଷୟରେ ପରିଚିତ କରାଇବା ।



# ମୋର ସୋଭିଏଟ୍ ଇଉନିୟନ ଯାତ୍ରା

ମୁଁ ୧୯୮୬ ମାର୍ଚ୍ଚ ୩୧ ତାରିଖରେ ସରକାରୀ ଚାକିରୀରୁ ଅବସର ଗ୍ରହଣ କଲି । ଆସିଲାବେଳକୁ ଅର୍ଥ ବିଭାଗର ସମସ୍ତ କର୍ମଚାରୀ ପ୍ରାୟ ୨୦୦ ଲୋକ ଏବଂ ସେକ୍ରେଟେରୀ ରାଜକିଶୋର ଭୂଞ୍ଜବଳ ଓ ଆଡ଼ିସନାଲ୍ ସେକ୍ରେଟେରୀ ସଂଜୀବ ଚନ୍ଦ୍ର ହୋତା ମଧ ଉପସ୍ଥିତ ଥିଲେ । ଗୋଟିଏ ଉଲ୍ଲସିତ ବିଦାୟ ଉତ୍ସବରେ ଭବ୍ୟ ଭୋଜିର ଆୟୋଜନ କରିଥିଲେ । ସରକାରୀ ଚାକିରୀ ସମାପ୍ତ ।

ମୋର ପେନ୍‌ସନ ମାତ୍ର ୭ ଦିନ ଭିତରେ ଏ.ଜି. ଅଫିସ୍ କ୍ଲିୟର କରି ଦେଇଦେଲେ । ସେହି ଅଫିସର ଜଣେ ପରିଚିତ ବନ୍ଧୁ ବିଦ୍ୟାଧର ଷଡ଼ଙ୍ଗୀ କହିଲେ, ''ତୁମର ପେନସନ୍ ଯେତେ ଶୀଘ୍ର ହୋଇଯାଇଛି, ଏପରି ଦୃଷ୍ଟାନ୍ତ ବିରଳ ।''

୧୯୮୬ ନଭେମ୍ବର ମାସରେ ମୋର ପିତା ସ୍ୱର୍ଗାରୋହଣ କଲେ । ତାଙ୍କର ଶେଷ ପର୍ଯ୍ୟନ୍ତ ସ୍ନେହପୂର୍ଣ୍ଣ ବଚନ ଏବଂ ସହିଷ୍ଣୁତା ଏବଂ ମୋତେ ଘୋର ବିପଦବେଳେ ସଦୁପଦେଶ ଯୋଗୁ ମୁଁ ଅତି ସୁନାମ ଏବଂ ଦକ୍ଷତା ସହିତ ଚାକିରୀରୁ ଅବସର ଗ୍ରହଣ କଲି । ତାଙ୍କରି ସୁକୃତରୁ ମୁଁ ଦୁଃଖ ଓ ସୁଖ ମିଶ୍ରିତ ଜୀବନ ଏବଂ ସୁନାମ ଅର୍ଜନ କରିଛି । ବେଳେ ବେଳେ ମନ ବିକ୍ଷଣ୍ଣ ବେଳେ ପଦେ ଅଧେ କହିଦେଇ ଥିବି, ଏହା କେବଳ ଅପରିପକ୍ୱତାର ଫଳ । ପିତା ଚାଲିଗଲା ପରେ ମୋତେ ସଂସାରର ସବୁ ଦାୟିତ୍ୱ ମାଡ଼ି ପଡ଼ିଲା ।

ବେଗୁନିଆର ପୂର୍ବତନ ବିଧାୟକ, ସ୍ୱନାମଧନ୍ୟ ସ୍ୱର୍ଗତ ଗଙ୍ଗାଧର ପାଇକରାୟଙ୍କ ସଙ୍ଗେ ମୋର ବହୁତ ବନ୍ଧୁତା ଥିଲା । ମୁଁ ଆଡ଼ିସନାଲ ସେକ୍ରେଟେରୀ ଭାବେ ଅର୍ଥ ବିଭାଗରେ ଥିଲାବେଳେ ସେ ବହୁତ ଥର ଛୋଟ ଛୋଟ କାମରେ ଆସି ମୋ ସଙ୍ଗେ ବନ୍ଧୁତା କରିଥିଲେ । ତାଙ୍କୁ ମୁଁ ଜ୍ୟେଷ୍ଠ ଭ୍ରାତା ସଦୃଶ ସମ୍ମାନ ଦିଏ । ପ୍ରାତଃ ଭ୍ରମଣରେ ସବୁଦିନେ ଦେଖେ ।

ମୋତେ ଦିନେ ପଚାରିଲେ, ''ଆପଣ ସୋଭିଏଟ୍ ୟୁନିୟନ (ଋଷିଆ) ଦେଶ ଦେଖିବାକୁ ଯିବାପାଇଁ ଆଗ୍ରହୀ ?'' ମୁଁ ଏହାକୁ ଏକ ସୁବର୍ଣ୍ଣ ସୁଯୋଗ ଭାବି ହଁ ଭରିଲି । କେତେ କଅଣ ଖର୍ଚ୍ଚ ହେବ ? ସେ କହିଲେ ବିଶେଷ ନୁହେଁ । ଜଣକୁ ଟ୧୦,୦୦୦/ ଦିଲ୍ଲୀ ଠିକ୍ ସମୟରେ ପହଞ୍ଚିପାରିଲେ ଆମ କମ୍ୟୁନିଷ୍ଟ ପାର୍ଟି ସେଠାରୁ ଯିବା ଆସିବା ପ୍ଲେନ୍ ଫେୟାର, 3 star ହୋଟେଲ୍‌ରେ ରହଣି, ଖାଇବା ଇତ୍ୟାଦି

ସମସ୍ତ ଖର୍ଚ୍ଚ ବହନ କରିବେ । ଋଷିଆରେ ବହୁତ ଗୁଡ଼ିଏ ଦର୍ଶନୀୟ ସ୍ଥାନ ଦେଖାଇ ୧୬ ଦିନରେ ଦିଲ୍ଲୀ ଫେରାଇ ଆଣିବେ । Pass Port ଏବଂ ଭିସା ଇତ୍ୟାଦି ସମସ୍ତ କାଗଜପତ୍ର ISCUS ତରଫରୁ ଆମେ ବନ୍ଦୋବସ୍ତ କରିବୁ । ISCUS ହେଉଛି Indo Soviet Cultural Society । ଖର୍ଚ୍ଚର ବେଶୀ ଭାଗ ସୋଭିଏଟ୍ ସରକାର ବହନ କରନ୍ତି । ଭାରତୀୟ କମ୍ୟୁନିଷ୍ଟ ପାର୍ଟି ଆଂଶିକ ଖର୍ଚ୍ଚ ବହନ କରେ । ମୁଁ ଏଥିରେ ହଁ ଭରିଲି । କହିଲି, ମୋତେ ଜଣାଇଲେ ମୁଁ ନିର୍ଦ୍ଦିଷ୍ଟ ତାରିଖ ଓ ସ୍ଥାନରେ କାଗଜ ପତ୍ର ନେଇ ହାଜର ହେବି ।

୧୯୮୭ ମସିହା ଏପ୍ରିଲ୍ ମାସରେ କଟକକୁ ବହୁତ ଲୋକଙ୍କୁ ଡକାଇଥିଲେ । ମନୋନୀତ ହେଲେ ମାତ୍ର ଦୁଇଜଣ । ମୁଁ ଏବଂ ସୁପ୍ରସିଦ୍ଧ ଲେଖିକା, 'ଯାଜ୍ଞସେନୀ'ର ରଚୟିତା, ସାହିତ୍ୟ ଏକାଡେମି ପୁରସ୍କାର ବିଜେତା ଶ୍ରୀମତୀ ପ୍ରତିଭା ରାୟ । ମୁଁ ତାଙ୍କୁ ଆଗରୁ ଜାଣି ନଥିଲି । ସାକ୍ଷାତରେ ତାଙ୍କର ମୋ ପ୍ରତି ପିତୃତୁଲ୍ୟ ବ୍ୟବହାର ଏବଂ ମୋର ତାଙ୍କ ପ୍ରତି କନ୍ୟା ସଦୃଶ ସ୍ନେହରେ ଆମ୍ଭେ ଉଭୟେ ଆପ୍ୟାୟିତ ହେଲୁ ।

ଦିଲ୍ଲୀ ଯାଇ ପହଞ୍ଚିଲୁ ଏପ୍ରିଲ୍ ୨୦ ତାରିଖରେ । ଆମକୁ ଦିଲ୍ଲୀର ଏକ ନିର୍ଦ୍ଦିଷ୍ଟ ଜାଗାରେ ଏକତ୍ର ହେବାକୁ ଡକରା । ଆମ ଟିମ୍‌ରେ ମୋଟରେ ୧୧୦ ଜଣ ଟୁରିଷ୍ଟ । ଓଡ଼ିଶାରୁ ଆମେ ମାତ୍ର ୨ ଜଣ, ବଙ୍ଗଳାରୁ ୨, ତାମିଲ୍‌ନାଡୁରୁ ୪ ଜଣ, ଏହିପରି ବିଭିନ୍ନ ରାଜ୍ୟରୁ ପ୍ରତିନିଧି । ପୁଣି ସେଥିରେ ଅବସରପ୍ରାପ୍ତ ସରକାରୀ ଅଫିସର୍, ଲେଖକ, ନୃତ୍ୟ ଓ ସଙ୍ଗୀତରେ ସୁନାମ ଅର୍ଜନ କରିଥିବା ପୁରୁଷ ଓ ସ୍ତ୍ରୀ, କ୍ରୀଡ଼ାବିତ୍ । ଏହିପରି ବିଭିନ୍ନ ଅଭିଜ୍ଞତା ଥିବା ପୁରୁଷ ଓ ମହିଳାମାନଙ୍କୁ ମନୋନୀତ କରାଯାଇଛି । ପ୍ରଥମେ ଆମର ବନ୍ଦୋବସ୍ତକାରୀ ମୁଖ୍ୟ ଜଣ ଜଣକୁ ଡାକି ନିଜ ନିଜ ଭିତରେ ପରିଚୟ କରାଇଲେ । ଯେପରି ଋଷିଆରେ ପହଞ୍ଚିଲାବେଳକୁ ଆମେ ଅତି ପରିଚିତ, ଜଣାଶୁଣା ଏବଂ ଏକ ପରିବାରର ଲୋକ ଭାବେ ଆମ୍ଭମାନଙ୍କ ମଧ୍ୟରେ ବ୍ୟବହାର କରିବୁ । ଅପରିଚିତ ନୁହନ୍ତି ବା ଦୂରଛଡ଼ା ନୁହନ୍ତି । ଆମେ ଓଡ଼ିଆ, ବଙ୍ଗାଳୀ, ଆନ୍ଧ୍ର, ତାମିଲ୍, ହିନ୍ଦୁସ୍ଥାନୀ, ପଂଜାବୀ, ମୁସଲମାନ, ହିନ୍ଦୁ ସମସ୍ତେ ଭାରତୀୟ । ଏହା ଅତି ନୂତନ ଶିକ୍ଷା । ସରକାରୀ ଚାକିରୀରେ ଏହା ସ୍ୱପ୍ନ । Regional Caste, Community ଓ ଭାଷାରେ ଏହା ପ୍ରଭାବିତ । ଏପରିକି All India Service ରେ ଯାହା ପୂର୍ବରୁ ନଥିଲା ସେଥିରେ ମଧ୍ୟ ସମୟକ୍ରମେ ବିଭେଦ ପ୍ରବେଶ କରିଛି ।

ଦ୍ୱିତୀୟରେ କହିଲେ ସେଠାରେ ଚାକର ପ୍ରଥା ନାହିଁ । ଯେଉଁମାନେ ସାହାଯ୍ୟ କରୁଛନ୍ତି, ସେମାନେ ସମସ୍ତେ କମ୍‌ରେଡ୍ । Assistant ବୋଲି ଜାଣ । ହୋଟେଲ୍‌ର

ନିୟମ ମାନି ଚଳିବ । ସଙ୍ଗୀମାନଙ୍କୁ ଛାଡ଼ି ଅନ୍ୟ ଆଡ଼କୁ ଯିବ ନାହିଁ । ଦୁଇଟି ସୁଟ୍ । ଗୋଟିଏ ଓଭର କୋଟ ଓ ମୁଣ୍ଡରେ ଗରମ ଟୋପି । ନିଜକୁ ଗରମ ପୋଷାକରେ ଆବୃତ କରି ରଖିବ, ଇତ୍ୟାଦି । ଆଉ ମଧ୍ୟ ହୋଟେଲ୍ ପିଲା ଆସି ୮ଟା ବେଳେ ଚା ଦେବ । ଯାହାର ଚା ଦରକାର ସେ ବାଥରୁମ୍‌ରୁ ଅଳ୍ପ ଗରମ ପାଣିରେ ଚା କରି ଚଳାଇ ନେବେ ।

ଏପ୍ରିଲ୍ ୨୪ ତାରିଖ ରାତି ୧୦ଟା ବେଳେ ଦିଲ୍ଲୀର ଇନ୍ଦିରା ଗାନ୍ଧୀ International Airportରେ ସମସ୍ତେ ହାଜର ହେଲୁ । ଆମର ପାସ୍‌ପୋର୍ଟ ଓ ଭିସା ଦେଖାଇ ଭିତରକୁ ପ୍ରବେଶ କଲୁ । Luggage ହେଉଛି ଗୋଟିଏ ଲେଖାଏଁ ସୁଟ୍‌କେଶ ଏବଂ ହେଣ୍ଡବ୍ୟାଗ୍ । ରାତି ୧୨ଟା ବେଳେ ବୃହତକାୟ Air India Planeରେ ବସିଲୁ । ୩୦୦ରୁ ଅଧିକ ସିଟ୍ । ରାତି ୧୨ଟାରେ ପ୍ଲେନ୍ ଛାଡ଼ିଲା । ଗନ୍ତବ୍ୟ ସ୍ଥାନ ଉଜବେକିସ୍ଥାନର ରାଜଧାନୀ ତାସକେଣ୍ଟ ନଗରୀ, ଯେଉଁଠି ଆମର ସ୍ୱର୍ଗତ ପ୍ରଧାନମନ୍ତ୍ରୀ ତ୍ୟାଗୀ, ସଚ୍ଚୋଟ ଏବଂ ଉଚ୍ଚ ଆଦର୍ଶର ପରାକାଷ୍ଠା ଲାଲ ବାହାଦୂର ଶାସ୍ତ୍ରୀ ଭାରତ-ପାକିସ୍ଥାନ ସନ୍ଧି ସ୍ଥାପନ ପାଇଁ ଋଷିଆର ରାଷ୍ଟ୍ରପତି ବ୍ରେଜନେଭଙ୍କ ମଧ୍ୟସ୍ଥତାରେ ସେଠାକୁ ଯାଇଥିଲେ । ଦୁର୍ଭାଗ୍ୟକୁ ସେଠାରେ ହୃଦ୍‌କ୍ରିୟା ବନ୍ଦ ହୋଇଯିବାରୁ ପ୍ରାଣତ୍ୟାଗ କରିଥିଲେ ।

ତାସକେଣ୍ଟରେ ଭୋର ୪ ଘଣ୍ଟା ସମୟରେ ପହଞ୍ଚିଲୁ । ସେଠାରେ ହୋଟେଲ୍‌ରେ ନିତ୍ୟକର୍ମ ସାରି ମୁଁ ଟିକିଏ ବାହାରକୁ ଆସିଲି । ସକାଳ ୮ ଘଣ୍ଟା । ପୂର୍ବ ଦିଗନ୍ତରେ ସୂର୍ଯ୍ୟ ଉଦୟ ହୋଇଛନ୍ତି । ପଚାରିଲି ପୂର୍ବ ଦିଗରେ କେଉଁ ଦେଶ । ଉତ୍ତର ପାଇଲି ଫରଗାନା, ବର୍ତ୍ତମାନ୍ ଉଜ୍‌ବେକିସ୍ଥାନ ଅଧୀନରେ । ସେହି ବିଖ୍ୟାତ ମୋଗଲ ସମ୍ରାଟ ବାବର ଭାରତକୁ ଯାଇଥିଲେ । ସେମାନଙ୍କର କାର୍ଯ୍ୟ ଏବଂ ସହୃଦୟତା ଯୋଗୁ ଭାରତବାସୀଙ୍କ ଆପଣାର ହୋଇ ଆକ୍ରମଣକାରୀରୁ ଦେଶଗଠନ ଓ ଏକତା ସଂପର୍କ ସ୍ଥାପନର ମୂଳଦୁଆ ପକାଇ ଏଠାରେ ଚିରକାଳ ବସବାସ କଲେ । ଇତିହାସର ସ୍ମୃତି ମନରେ ଜାଗ୍ରତ ହେଲା । ଶୀଘ୍ର ମଧ୍ୟାହ୍ନ ଭୋଜନ ସାରି ଦିନ ୧୨ଟା ବେଳକୁ ପ୍ରସ୍ତୁତ । ସଙ୍ଗେ ସଙ୍ଗେ ଏୟାରପୋର୍ଟକୁ ବାହାରିଗଲୁ । ଅପରାହ୍ନ ଗୋଟାଏ ବେଳେ ଯାତ୍ରା ଆରମ୍ଭ । ଗନ୍ତବ୍ୟ ସ୍ଥାନ ଲେନିନ୍‌ଗ୍ରେଡ୍ । ବର୍ତ୍ତମାନ ତାର ନାମ Petrograde ।

ପ୍ଲେନ୍‌ରୁ ଅବତରଣ କଲାବେଳେ ଘୋଷଣା କଲେ ବାହାରେ ଟେମ୍ପରେଚର୍ କମ୍, ମାତ୍ର $0^{\circ}$C । ଉପଯୁକ୍ତ ଡ୍ରେସ୍ ପିନ୍ଧି ବାହାରିଲୁ । କାରଣ କିଛି ଦିନ ପୂର୍ବେ ଡ୍ରେସ୍

କୋର୍ଡ଼ ନମାନି ଜଣେ ଆଫ୍ରିକାନ୍ ବ୍ୟକ୍ତି ବାହାରକୁ ବାହାରିବାରୁ ଅତ୍ୟଧିକ ଥଣ୍ଡା ଯୋଗୁଁ ସନ୍ନିପାତ ରୋଗରେ ପ୍ରାଣତ୍ୟାଗ କଲେ ।

ଆମ୍ଭେମାନେ ଯାଇ ହୋଟେଲ୍‌ରେ ରାତ୍ରିଯାପନ କଲୁ । ସନ୍ଧ୍ୟା ହେଉଛି ରାତି ୧୧ଟା । ପରଦା ନ ଦେଲେ ନିଦ ହେବ ନାହିଁ । ପୁଣି ସୂର୍ଯ୍ୟୋଦୟ ସକାଳ ୮ ଘଣ୍ଟାରେ । ଘରର ପରଦା ଟାଣିଦେଲେ Baltic Sea ଦୃଶ୍ୟମାନ । Finland ର Helsinki ସହରର ଲାଇଟ୍ ମଧ୍ୟ ଦିଶୁଛି । ଭୂଗୋଳ ଜ୍ଞାନ ସତ୍ୟ ବୋଲି ପ୍ରମାଣିତ ହେବାରୁ ମୋର ମନରେ ବହୁତ ଆନନ୍ଦ ।

ଲେନିନ୍‌ଗ୍ରେଡ୍‌ରେ ଦର୍ଶନୀୟ ସ୍ଥାନ ହେଉଛି ଲେନିନ୍‌ଗ୍ରେଡ୍ ମିଉଜିୟମ । ପୂର୍ବରୁ CZAR ରାଜତ୍ୱ ବେଳେ ସେଠାରେ ସମ୍ରାଟ୍ ରହୁଥିଲେ ।୧୯୨୧/୨୨ ମସିହାରେ ଲେନିନ୍ ବିଦ୍ରୋହ କରି CZAR ଶାସନର ଅବସାନ ଘଟାଇଥିଲେ । ପ୍ରଥମ ରାଷ୍ଟ୍ରପତି ହୋଇଥିଲେ ଷ୍ଟାଲିନ୍ । ତାଙ୍କର ଜଣେ ଘନିଷ୍ଠ ସହକର୍ମୀ ଟ୍ରଟସ୍କି କ୍ଷମତାରେ ପ୍ରତିଦ୍ୱନ୍ଦିତା କରିବାରୁ ତାଙ୍କୁ କଳେବଳେ କୌଶଳେ ହଟାଇଦେଲେ । ସେ ଦେଶାନ୍ତର ହୋଇ ଦୟନୀୟ ଭାବେ ମୃତ୍ୟୁବରଣ କଲେ । ପାଖରେ ଗୋଟିଏ ବଡ଼ କେନାଲ୍ । ତାହା ବର୍ଷର ୯ ମାସ ବରଫାବୃତ । ଲେନିନ୍‌ଗ୍ରେଡ୍‌ରେ ଗୋଟିଏ ଦିନ ରହି ଆମ୍ଭେମାନେ ଟ୍ରେନ୍‌ରେ ମସ୍କୋ ଯାତ୍ରା କଲୁ ।

ରାତ୍ରି ୧୧ ଘଣ୍ଟାରେ ଟ୍ରେନ୍ ଛାଡ଼ିବ । ବରଫାବୃତ ଯୋଗୁ ଡବାଗୁଡ଼ିକ କଳାରଙ୍ଗ । ଠିକ୍ ୧୧ଟା ବେଳକୁ ଟ୍ରେନ୍ ଛାଡ଼ିଲା । କୌଣସି ବେଲ୍ ବା ଘୋଷଣା ନାହିଁ । କାରଣ ଅନ୍ୟ ଯାତ୍ରୀମାନଙ୍କର ନିଦ୍ରାଭଙ୍ଗ ଏବଂ ଶବ୍ଦ ପ୍ରଦୂଷଣ ହେବ । ଲେଲିନ୍‌ଗ୍ରେଡ୍‌ରୁ ମସ୍କୋ ୩୦୦ ମାଇଲ୍ । ଟ୍ରେନ୍‌ଟି ନନ୍‌ଷ୍ଟପ୍ । ଠିକ୍ ୮ ଘଣ୍ଟା ସମୟରେ ମସ୍କୋରେ ପହଞ୍ଚିଲୁ । କୁଲି କରି ଟ୍ୟାକ୍ସି ପର୍ଯ୍ୟନ୍ତ ନେବା ବ୍ୟୟସାପେକ୍ଷ । ତେଣୁ ନିଜ ଜିନିଷ ନିଜେ ବହନ କରି ଟ୍ୟାକ୍‌ସିରେ ହୋଟେଲ୍‌କୁ ଆସିଲୁ । ହୋଟେଲ୍‌ର ନାମ ହେଉଛି Hotel Russia । ବିରାଟ ହୋଟେଲ୍ । ଚାରିଗୋଟି ଦ୍ୱାର- East, West, North, South । ରୁମ୍ ନମ୍ବର ଅନୁସାରେ ଦ୍ୱାରବାଟେ ଯିବାକୁ ହେବ । ଠିକ୍ ନ ବୁଝି ଅନ୍ୟ ଦ୍ୱାରବାଟେ ଗଲେ ଅସୁବିଧା ପଡ଼ିବ । ମୋର ଯେଉଁ ରୁମ୍ ରିଜର୍ଭ ହୋଇଥିଲା ସେଥିରେ ଆସାମର ଜଣେ ବେଙ୍ଗଲୀ ଭଦ୍ରଲୋକଙ୍କୁ ସ୍ଥାନ ମିଳିଥିଲା । ମୋତେ ସେ ଅନୁରୋଧ କଲେ ମୁଁ ଯାଇ ରୁମ୍ ଖୋଲା କରିଦେଉଛି । ତୁମେ ତୁମର ଓ ମୋର ଦୁଇଗୋଟି ସୁଟ୍‌କେଶ୍ ଆଣି ତିନି ମହଲା ରୁମ୍‌କୁ ଆସ । ମୁଁ ଅନୁରୋଧ ରକ୍ଷା କରି ୨ ଗୋଟି ସୁଟ୍‌କେଶ୍ ପ୍ରାୟ ୫୦

କେ.ଜି. ବୋହି ବୋହି ଲିଫ୍‌ଟ୍ ପାଖକୁ ଆସିଲି । ପୁଣି ଲିଫ୍‌ଟ୍‌ରେ ତିନି ମହଲାକୁ ଯାଇ ରୁମ୍‌ରେ ପହଞ୍ଚିଲି । ମୁଁ ପୁରା ନାକେଦମ୍ । କୁହାଯାଇଥିଲା ବ୍ରେକ୍‌ଫାଷ୍ଟ ଓ ଟି' ଅଧଘଣ୍ଟା ପରେ ଦିଆଯିବ । ତାପରେ ଦିନ ଗୋଟାକବେଳେ ଡାଇନିଂ ହଲ୍‌ରେ ଲଞ୍ଚ୍ । ରସିଆର ହୋଟେଲ୍ ନିୟମ ବଡ଼ କଡ଼ା । ଲଞ୍ଚ ଯଦି ଇଣ୍ଡିଆନ୍ ଟିମ୍‌କୁ ଗୋଟାଏ ବେଳେ ଦିଆଯାଉଛି, ଆପଣ ଠିକ୍ ସମୟରେ ଯାଇ ରୁମ୍ ବାହାରେ ଅପେକ୍ଷା କରିବେ । ଠିକ୍ ଗୋଟାଏ ବେଳେ କବାଟ ଖୋଲାଯିବ । ଟେବୁଲ୍ ପରିଷ୍କାର । ୧୦ ମିନିଟ୍ ଭିତରେ ଖାଦ୍ୟ ପରିବେଷଣ । ମୁଁ ସେହି ସମୟାନୁବର୍ତ୍ତିତା ପାଳନ କରିଛି । କୌଣସି ଲଞ୍ଚ, ଡିନର ବା ବ୍ରେକ୍‌ଫାଷ୍ଟ ମିସ୍ କରିନାହିଁ । ମାତ୍ର ମୋର ସାଥି ପ୍ରତିଭା ଦେବୀ ସକାଳେ ବିଳମ୍ବରେ ଉଠୁଥିବାରୁ ବହୁତ ଥର ବ୍ରେକ୍‌ଫାଷ୍ଟ ହରାଇଛନ୍ତି ।

ଏହାଛଡ଼ା ଯେତେବେଳେ ରୁମ୍ ବନ୍ଦ କରି ବାହାରକୁ ଯିବେ, Reception Counter ରେ ଚାବି ଦାଖଲ କଲେ ସେ ବାହାରକୁ ଯିବାପାଇଁ ଗୋଟିଏ ପାସ୍ ଦେବେ । ତାକୁ ଯତ୍ନରେ ରଖିଥିବେ । ଫେରିଲାବେଳେ ସେହି ବାହାର ପାଶ୍‌ଟି ଦାଖଲ କଲେ ଯାଇ ରୁମ୍ ଚାବି ମିଳିବ ।

ବିନା ଭିସାରେ ଏୟାରପୋର୍ଟ ବାହାରକୁ ଆସିବା ମନା । ପୋଲିସ୍ ଆରେଷ୍ଟ କରିଦେବ । ଆମ ଭୁବନେଶ୍ୱର ବାଣୀବିହାରର ଜଣେ ପ୍ରଫେସର୍ ଲଣ୍ଡନରୁ କଲିକତା ଆସିବା କଥା । ଦୁଇଟି ଆକାଶ ମାର୍ଗ ଅଛି । ଗୋଟିଏ ଇଉରୋପ ଦେଇ ମିଡ଼ିଲ୍ ଇଷ୍ଟ ବାଟେ ଆଉ ଗୋଟିଏ ମସ୍କୋ ବାଟେ । ଭଡ଼ା ପ୍ରାୟ ସମାନ ଥିଲା । ସେ ମସ୍କୋ ବାଟେ ଆସି ସେଠାରୁ ରସିଆନ୍ ପ୍ଲେନ୍‌ରେ ଦିଲ୍ଲୀ ଯିବା କଥା । ପ୍ଲେନ ବଦଳି କରିବା ପାଇଁ ଦୁଇଘଣ୍ଟା ବିଳମ୍ବ । ସେ କୌତୁହଳବଶତଃ ବିନା ଭିସାରେ ବାହାରକୁ ବୁଲିବାକୁ ଚାଲିଗଲେ । ପୋଲିସ୍ ଭିସା ମାଗିବାରୁ ଦେଖାଇପାରିଲେ ନାହିଁ । ଆରେଷ୍ଟ ହୋଇ ଥାନାକୁ ଗଲେ । ଥାନାରେ ସବୁ କଥା କହିବାରୁ ସେମାନେ Indian Embassyକୁ ଫୋନ୍ ଗଲେ । ଜଣେ ଅଫିସର ପ୍ରଫେସରଙ୍କୁ Embassy କୁ ପଠେଇଦେବାକୁ କହିଲେ । Embassy ରେ ଅଫିସର ତାଙ୍କୁ ବହୁତ ଭର୍ତ୍ସନା କଲେ । କହିଲେ ରିପୋର୍ଟ୍ କରି Indian Government କୁ କହିଲେ ତୁମ ଚାକିରୀ ଚାଲିଯିବ । ପ୍ରଫେସର ବହୁତ କାକୁତି ମିନତି ହୋଇ କ୍ଷମା ପ୍ରାର୍ଥନା ମାଗିଲାରୁ ତାଙ୍କୁ ଖାଇବାକୁ ଦେଇ ଆଉ ଗୋଟିଏ ପ୍ଲେନ୍‌ରେ ବସାଇ ଦେଲେ । କି କଡ଼ା ନିୟମ ! ଆମ ଦେଶରେ ଏପରି ନିୟମ ପାଳିତ ହେଲେ ଆତଙ୍କବାଦୀ ବିଦେଶୀ ଆସିବା ବହୁ ପରିମାଣରେ କମି ଯାଆନ୍ତା ।

ମେ ପହିଲାଦିନ ସାରା ସୋଭିଏଟ୍ ଇଉନିୟନ୍‌ରେ ପାଳିତ ହୁଏ ଶ୍ରମିକ ଦିବସ । ସବୁ ଅଫିସ୍ ଓ ଦୋକାନ ବନ୍ଦ । ଆମର ଅଗଷ୍ଟ ୧୫ ତାରିଖ ପରି ।

ସକାଳ ୧୦ ଘଣ୍ଟା ବେଳେ ରାଷ୍ଟ୍ରପତି, ପ୍ରଧାନମନ୍ତ୍ରୀ ଆସି ଭାଷଣ ଦେବେ । Red square ରେ Kremlin Palace ସାମ୍ନାରେ ରାଷ୍ଟ୍ରପତି ଭାଷଣ ଦିଅନ୍ତି । Red Square ଅତି ବଡ଼ ନୁହେଁ । ବାରବାଟି ଷ୍ଟାଡ଼ିୟମ ସଙ୍ଗେ ଆୟତନରେ ସମାନ୍ । ପ୍ରାୟ ୧୦ ଲକ୍ଷ ଲୋକ ଆବାଳ ବୃଦ୍ଧ ବନିତା ଗୁଣ୍ଡ ହୋଇଥାନ୍ତି । ପୃଥିବୀର ସବୁ ଦେଶର ଲୋକ ଇଉରୋପୀୟ ଦେଶମାନଙ୍କରୁ ବିଶେଷତଃ ନରୱେ, ସୁଇଡେନ୍, ଜର୍ମାନ୍, ଫ୍ରାନ୍ସ, ଇଟାଲି, ପୋଲାଣ୍ଡ ପ୍ରଭୃତି ଦେଶମାନଙ୍କରୁ । ସେମାନେ ଅଳ୍ପ ଅଳ୍ପ ଇଂରାଜୀ ବୁଝୁଥାନ୍ତି । ମୁଁ ଧୀରେ ଧୀରେ ଇଂଲିଶ୍‌ରେ କେତେକ ଲୋକଙ୍କ ସଙ୍ଗେ କଥାବାର୍ତ୍ତା କଲି । ବୁଝି ନପାରିଲେ ଅଙ୍ଗ ଭଙ୍ଗୀ ବା ଇଙ୍ଗିତରେ କିଛିଟା ବୁଝାଇ ଦେଇହେବ । ବାସ୍ତବିକ୍ gesture ଦ୍ୱାରା ଆପଣ ଅତି ଆବଶ୍ୟକ ଏବଂ ଗୁରୁତ୍ୱପୂର୍ଣ୍ଣ ବିଷୟ ସଂକ୍ଷେପରେ ବୁଝାଇ ଦେଇପାରିବେ ।

ମୁଁ ଗୋଟିଏ ଅତି ଶସ୍ତା 5 Kopek ର ଗୋଟିଏ ସୋଭିଏଟ୍ ଇଉନିୟନ୍ ପତାକା ଧରିଥିଲି । ପତାକା ଅଳ୍ପ ଆସିଥିଲା । ଖୁବ୍ ଶୀଘ୍ର ସରିଗଲା ।

ଜଣେ ମହିଳା ମତେ ଅନୁରୋଧ କଲେ ସେହି ପତାକାଟି ନେବାପାଇଁ । ମୁଁ କହିଲି, ''ମୋର ମାତ୍ର ଗୋଟିଏ । ମୁଁ କିପରି ଦେବି ?'' ସେ "Please, Please" କହି ହାତରୁ ପତାକାଟି ଛଡ଼ାଇ ନେଇ ହସି ହସି ହାତ ହଲାଇ ହଲାଇ ଟା ଟା କରି ଚାଲିଗଲେ । English ରେ ଯାହା କହନ୍ତି "beg, buy, borrow, steal" । ମୁଁ ମଧ୍ୟ ଟା ଟା କଲି । ମୁଁ ସେଥିରେ ବେଶ୍ ମଜା ଅନୁଭବ କଲି ।

ଆମ୍ଭେମାନେ ୧୦ ଘଣ୍ଟା ସମୟରେ Red square ଛାଡ଼ିଲୁ । ଆମ ହୋଟେଲ୍‌ଟି ଖୁବ୍ ନିକଟରେ । ଚାଲି ଚାଲି ପ୍ରାୟ ୨ କି.ମି. ଆସି ଲଞ୍ଚ ପୂର୍ବରୁ ପହଞ୍ଚିଲୁ । ପରଦିନ ଗୋଟିଏ Primary ଓ Secondary School ଦେଖିବାକୁ ଯାଇଥିଲୁ ।

ସେ ଦେଶରେ ଶିକ୍ଷାର ସମସ୍ତ ଦାୟିତ୍ୱ ଦେଶ ବହନ କରୁଥିଲା । ପିତାମାତା ସକାଳ ୮ ଘଣ୍ଟା ସମୟରେ ପିଲାକୁ ରେଡ଼ି କରି ସାମାନ୍ୟ ଜଳଖିଆ ଦେଇ ପ୍ରାଇମେରୀ ସ୍କୁଲ୍‌ରେ ଛାଡ଼ିଦେଇ ଆସିବେ । ସ୍କୁଲ୍ ୯ ଘଣ୍ଟାରୁ ୧୨ ଘଣ୍ଟା । ମଧ୍ୟାହ୍ନ ଭୋଜନ ଦିଆଯିବ ଠିକ୍ ୧ ଘଣ୍ଟାରେ । ମଧ୍ୟାହ୍ନ ଭୋଜନ ଦିଆଯିବାରୁ ପିଲାମାନଙ୍କୁ ଭୋକରେ ରହିବାକୁ ହୁଏ ନାହିଁ । ମଝିରେ ୧ ଗ୍ଲାସ୍ କ୍ଷୀର ଦିଆହୁଏ ।

ଆମ ଦେଶରେ ପ୍ରାଇମେରୀ ସ୍କୁଲ୍‌ରେ ଯେଉଁ ମଧ୍ୟାହ୍ନ ଭୋଜନ ଯୋଜନା ଆରମ୍ଭ ହୋଇଛି ତାହା ଠିକ୍ ସୋଭିଏତ୍ ଇଉନିୟନର ଆଦର୍ଶର ଅନୁକରଣରେ ହୋଇଛି । ଉପସ୍ଥାନ ଖୁବ୍ ଭଲ ହେଉଛି । ପିଲାଙ୍କର ପାଠପଢ଼ା ପ୍ରତି ଆଗ୍ରହ । ମାତ୍ର ମଧ୍ୟାହ୍ନ ଭୋଜନ ପରେ ଆଉ ୨ ଘଣ୍ଟା ପଢ଼ା ହୁଏ । ଗୀତ ବୋଲାଯାଏ । ଋଷିଆନ ଗୀତ, ହିନ୍ଦୀ ଗୀତ, ଭାରତ ପ୍ରତି ପ୍ରଗାଢ଼ ଆନ୍ତରିକତା ଓ ସ୍ନେହ ଭାବ । ମଧ୍ୟାହ୍ନ ଭୋଜନ ପରେ ଏକ ଘଣ୍ଟା ବିଶ୍ରାମ । ତାପରେ ୨ ଘଣ୍ଟା ପାଠପଢ଼ା । ଅପରାହ୍ନରେ ସମସ୍ତଙ୍କୁ ଗ୍ଲାସେ ଲେଖାଏଁ ଗରମ କ୍ଷୀର । ସନ୍ଧ୍ୟା ୬ ବେଳକୁ ପିତାମାତା ଆସିଗଲେ ତାଙ୍କ ସଙ୍ଗେ ଗୃହକୁ ଫେରନ୍ତି ।

ତାପରେ ଯାଇଥିଲୁ ଗୋଟିଏ Secondary School । କ୍ଲାସ୍ 8th, 9th, 10th & 11th. ପାଠପଢ଼ା ଖୁବ୍ ହାଲୁକା । Math, ଋଷିଆନ୍ ଭାଷା, ଗୋଟିଏ Foreign language, English, Spanish ଏହିପରି କେତୋଟି ଭାଷାରୁ ଗୋଟିଏ ବାଛିବାକୁ ହେବ । Secondary School ରେ କେହି ଫେଲ୍ ହେବେ ନାହିଁ । ପିଲେ ଭଲ ରେଜଲ୍ଟ ନ କଲେ ଶିକ୍ଷକ ଦାୟୀ । ସ୍କୁଲ୍‌ରେ ପରୀକ୍ଷା । Board of Secondary Examination ନାହିଁ । ଗୋଟିଏ ପିଲା ଥରେ ଫେଲ୍ ହେଲେ ଆଉ ଦୁଇଟା Chanceରେ ପାଶ୍ କରିବାକୁ ହେବ । ଫେଲ୍‌ର ପ୍ରଶ୍ନ ନାହିଁ । ବର୍ତ୍ତମାନ କେନ୍ଦ୍ର ଶିକ୍ଷାମନ୍ତ୍ରୀ କପିଲ ସିବଲ ଏହିପରି ବିନା ପରୀକ୍ଷାରେ ସି.ବି.ଏସ.ଇ. ପରୀକ୍ଷା ଉତ୍ତୀର୍ଣ୍ଣ ସାର୍ଟିଫିକେଟ୍ ଦେବାକୁ ଚାହୁଁଛନ୍ତି ।

ସବୁ ଛାତ୍ର ଅନ୍ତତଃ Secondary School Standard ଯାଏ ପାଠ ପଢ଼ିବା ରାଷ୍ଟ୍ରର ଲକ୍ଷ୍ୟ । କ୍ଲାସ୍ ସକାଳ ୮ ଘଣ୍ଟା ଠାରୁ ଅପରାହ୍ନ ୫ ଘଣ୍ଟା । ସ୍କୁଲ୍ ପରେ Pioneer School କୁ ଯିବାକୁ ହୁଏ । 6 PM ରୁ 8 PM । ବିଭିନ୍ନ ରକମର Extra Curicular activity ଶିକ୍ଷା ଦିଆଯାଏ । Pioneer ସ୍କୁଲ୍‌ରେ Sports, Acrobatics, games ଇତ୍ୟାଦି, ନୃତ୍ୟ, ଗୀତ ପ୍ରଭୃତି ଶିକ୍ଷା ଦିଆଯାଏ । Russian Dance, Hindi Dance, English Dance, Italian Dance ପ୍ରଭୃତି । ପୁଣି ଭଲ ଭାଷଣ ଦେବାକୁ ଟ୍ରେନିଂ ଦିଆଯାଏ । ସେଥିଯୋଗୁ ଋଷିଆନ୍ ଖେଳାଳୀମାନେ ବିଶ୍ୱ ଅଲମ୍ପିକ୍‌ରେ ମେଡ଼ାଲ୍ ପାଇ ଆସୁଛନ୍ତି । ଦେଶ ସେଥିପାଇଁ ଟ୍ରେନିଂ, ଷ୍ଟାଇପେଣ୍ଡ ଓ ଉତ୍ସାହ ଦେଇ ଆସୁଛି । ମାତ୍ର ଆମ ଦେଶରେ ଏହା ବ୍ୟକ୍ତିଗତ ପ୍ରଚେଷ୍ଟାରେ ହୁଏ । କେବଳ ରାଜ୍ୟ ସ୍ତରରେ ଖେଳି ସୁନାମ କଲେ ଯାଇ ପ୍ରଶଂସା ମିଳେ । ମୋଟ ଉପରେ ଋଷିଆ ଦେଶରେ ବେଶି

ଧ୍ୟାନ ଦିଆଯାଏ ପିଲାମାନଙ୍କୁ । କାରଣ ସେମାନେ ଦେଶର ଭବିଷ୍ୟତ । ତେଣୁ ସେମାନଙ୍କ ଅନୁଷ୍ଠାନକୁ Pioneer Bus ବା Pioneer Institution କୁହାଯାଏ । Pioneer Bus କୁ ଟ୍ରାଫିକ୍‌ରେ ଆଗକୁ ଛାଡ଼ି ଦିଆଯାଏ । ମାତ୍ର ଆମ ଦେଶରେ ଶିଶୁମାନେ ସବୁଠାରୁ ବେଶି ଅବହେଳିତ । କିପରି ଏହାକୁ ସୁଧାରିବା । ସରକାର ଓ ପିତାମାତା ସମସ୍ତଙ୍କର ମିଳିତ ଉଦ୍ୟମ ଆବଶ୍ୟକ ।

ସେକେଣ୍ଡାରୀ ପରୀକ୍ଷାରେ ଯେଉଁମାନେ ୬୦% ବା ତଦୂର୍ଦ୍ଧ୍ୱ ମାର୍କ ରଖିଥିବେ ସେମାନେ ୟୁନିଭରସିଟିକୁ ଯିବେ । ସେଥିପାଇଁ ବିଶ୍ୱବିଦ୍ୟାଳୟରେ ଅଧିକ ଭିଡ଼ ହୁଏ ନାହିଁ । ବିଶ୍ୱବିଦ୍ୟାଳୟ ଗୁଡ଼ିକ Theory ଅପେକ୍ଷା Practical କୁ ଅଧିକ ଗୁରୁତ୍ୱ ଦିଅନ୍ତି । ସବୁ ବିଦ୍ୟା Technology Oriented । ସେଥିପାଇଁ ସବୁ କାର୍ଯ୍ୟରେ ମନୁଷ୍ୟର ଶ୍ରମ କମାଯାଇ ମେସିନ୍ ସାହାଯ୍ୟରେ କରାଯାଏ । ରାସ୍ତାରେ ଗଛ କଟାଯାଉଛି । ୨/୩ ଜଣ ଲୋକ ଯନ୍ତ୍ରଦ୍ୱାରା ଗଛକୁ କାଟି ତାଳକୁ ଛୋଟ ଛୋଟ କରି ଟ୍ରକ୍‌ରେ ଲଦିଦିଅନ୍ତି ।

ଦିଲ୍ଲୀ ପ୍ରଗତି ମଇଦାନ୍‌କୁ ଗୋଟିଏ ଋଷିଆନ୍ ଟିମ୍ ଆସିଥିଲେ । ଆମର ଖାଇବା ସିଙ୍ଗଡ଼ା (ସମୋସା) ତିଆରି ପ୍ରଣାଳୀ ଦେଖି ସେଥିପାଇଁ ଏକ ଯନ୍ତ୍ର ଉଦ୍‌ଭାବନ କରି ପଠାଇଥିଲେ । ଅତି ସହଜ ଓ ଶୀଘ୍ର ହୋଇପାରିଲା ।

Marx କହିଥିଲେ "Give me unity and electricity, I will establish Communism." ଏବଂ ଷ୍ଟାଲିନ୍ କାର୍ଯ୍ୟରେ ତାହା ଦେଖାଇଥିଲେ । ଏହାକୁ ପାଳନ କଲେ Lenin.

ମସ୍କୋ ବିଶ୍ୱବିଦ୍ୟାଳୟ ପାଖରେ ମସ୍କଭା ନଦୀ । ଅତି ଛୋଟ ନଦୀଟିଏ । ତାର ନାମ ଅନୁସାରେ ମସ୍କୋ ସହରର ନାମକରଣ ହୋଇଛି ।

ଆମେ ଗୋଟିଏ କୋଠଚାଷ ଫାର୍ମ ବା Kolkhoz କୁ ବୁଲିବାକୁ ଯାଇଥିଲୁ । ବାହାରେ ଉତ୍ତାପ ୬° । ସେଥିରେ କାକୁଡ଼ି ହୋଇପାରିବ ନାହିଁ । କାଚ ଘର ଭିତରେ ଉତ୍ତାପ ୨୦ ବା ୨୫ ଡିଗ୍ରୀ । କୃତ୍ରିମ ଉପାୟ କରି କାକୁଡ଼ି ଉତ୍ପାଦନ କରାଯାଉଛି । ଆମ୍ଭମାନଙ୍କ ଭିତରୁ କେତେକ ଲୋକ ଲୋଭ ସମ୍ଭାଳି ନପାରି କାକୁଡ଼ି ତୋଳି ଖାଇଗଲେ, ଗାଇଡ୍ ମନା କରିବା ସତ୍ତ୍ୱେ । ଆଉ ଗୋଟିଏ ମଜା କଥା । ଋଷିଆରେ କହନ୍ତି ପିଲା ପାଳିବା ପାଇଁ ମା'ର ଆବଶ୍ୟକତା ନାହିଁ । ଫସଲ ଉତ୍ପାଦନ ପାଇଁ ମାଟିର ଆବଶ୍ୟକତା ନାହିଁ । କାକୁଡ଼ି ଗଛ ମୂଳରେ ଛୋଟ ଛୋଟ ପଥର ବଜୁରି ପକାଇ ସାର ମିଶା ପାଣି ଦେଲେ ଗଛ ବଢ଼ିପାରିବ ଏବଂ ଫଳ ମଧ୍ୟ ଫଳିବ । ମାତ୍ର ଏହା କେବଳ

ଲାବରେଟୋରୀ ପରୀକ୍ଷା । ବଜାରକୁ ଫଳ ପହଞ୍ଚିଲା ବେଳକୁ ତାର ଦାମ୍ ଅତ୍ୟଧିକ । ସାଧାରଣ ଖାଉଟିର କ୍ରୟଶକ୍ତି ବହିର୍ଭୂତ । ବାସ୍ତବିକ୍ ଆମ ଦେଶ ପରି ସ୍ୱର୍ଣ୍ଣପ୍ରସୂ ସୁଜଳା ସୁଫଳା ଦେଶ ପୃଥିବୀରେ ବିରଳ । ସେଥିପାଇଁ ପୂର୍ବ କାଳରେ ଆର୍ଯ୍ୟମାନେ କାସ୍ପିଆନ୍ ହ୍ରଦ ନିକଟରୁ ବସତି ଉଠାଇ ସିନ୍ଧୁ ଉପତ୍ୟକାରେ ବସତି ସ୍ଥାପନ କରିଥିଲେ ।

ମସ୍କୋ ନଗରୀରେ ଥିଲାବେଳେ ଆମେ ଆଉ ଗୋଟିଏ ପ୍ରସିଦ୍ଧ ଜାଗାକୁ ଦର୍ଶନ କରିବାକୁ ଯାଇଥିଲୁ । ଋଷିଆର ପୃଥିବୀ ବିଖ୍ୟାତ ଆଧ୍ୟାତ୍ମିକ ଲେଖକ Tolstoyଙ୍କ ସ୍ମୃତି ସମାଧିକୁ ଦର୍ଶନ କରିବାକୁ ଯାଇଥିଲୁ । ତାଙ୍କ ବିଷୟରେ କିଛି ଉଲ୍ଲେଖ ନକଲେ ମୋର ଲକ୍ଷ୍ୟ ପୂର୍ଣ୍ଣ ହେବ ନାହିଁ ।

ତାଙ୍କର ପୂରା ନାମ ହେଉଛି Count Leo Tolstoy । ତାଙ୍କର ଜନ୍ମସ୍ଥାନ Tula ସହର ପାଖରେ ଏକ ଗ୍ରାମ Yasnaya Polyana । ସେ ଏକ ସମ୍ଭ୍ରାନ୍ତ Noble familyରେ ୧୮୨୮ ମସିହାରେ ଜନ୍ମ ଗ୍ରହଣ କରିଥିଲେ । ସେ Kazan Universityରେ ଶିକ୍ଷାପ୍ରାପ୍ତ ହୋଇଥିଲେ । ତାଙ୍କର ପ୍ରସିଦ୍ଧ ପୁସ୍ତକ ହେଉଛି War and Peace, Anna Karenina, Resurrection । ତାଙ୍କର ଆଉ ଗୋଟିଏ ପୁସ୍ତକ "The Kingdom of God is within you" ବହୁତ ଆଧ୍ୟାତ୍ମିକ ଭାବ ସମ୍ବଳିତ । ଆମର ଜାତିର ଜନକ ମହାତ୍ମାଗାନ୍ଧୀ ଏହି ପୁସ୍ତକଟି ପଢ଼ି ବହୁତ ପ୍ରଭାବିତ ହୋଇଥିଲେ ଏବଂ ଅହିଂସା ଆନ୍ଦୋଳନ ଓ ସତ୍ୟାଗ୍ରହ ଆରମ୍ଭ କରିଥିଲେ । ଶତ୍ରୁ ପ୍ରତି ହୃଦୟରେ କୌଣସି କ୍ରୋଧ ବା ପ୍ରତିହିଂସାର ଭାବ ନ ରଖି ନିର୍ମଳ ପବିତ୍ର ହୃଦୟରେ ତାଙ୍କର ସମ୍ମୁଖୀନ ହେଲେ ଶତ୍ରୁର ହୃଦୟ ପରିବର୍ତ୍ତନ ହେବ ଏବଂ ତୁମେ କାର୍ଯ୍ୟରେ ସଫଳ ହୋଇପାରିବ । ଏହାହିଁ ଭଗବାନ ବୁଦ୍ଧ ଓ ଯୀଶୁଖ୍ରୀଷ୍ଟଙ୍କ ପ୍ରଦର୍ଶିତ ମାର୍ଗ । ସେହି ନୀତିରେ ଉଦ୍‌ବୁଦ୍ଧ ହୋଇ ସମ୍ରାଟ୍ ଅଶୋକ କଳିଙ୍ଗ ଯୁଦ୍ଧ ପରେ ଚଣ୍ଡାଶୋକରୁ ଧର୍ମାଶୋକରେ ପରିଣତ ହୋଇ, ବୁଦ୍ଧ ଭଗବାନଙ୍କ ଶାନ୍ତି, ମୈତ୍ରୀ ଓ କରୁଣାର ବାଣୀ ପ୍ରାଚ୍ୟ ଭୂଖଣ୍ଡରେ ପ୍ରଚାର ଓ ପ୍ରସାର କରିଥିଲେ । ମନୁଷ୍ୟର ଐଶ୍ୱରିକ ଦିଗଟି ବିକଶିତ କରିବାପାଇଁ ଟଲଷ୍ଟୟ ବହୁତ ଉପଦେଶାତ୍ମକ ଗଳ୍ପ ଲେଖିଛନ୍ତି । ସେ ଦେଶରେ ସ୍ତ୍ରୀ ଲୋକମାନଙ୍କ ପାଇଁ ନିରାପତ୍ତା ବ୍ୟବସ୍ଥା ଉତ୍କୃଷ୍ଟ । ମଧ୍ୟ ରାତ୍ରିରେ ମସ୍କୋର ମେଟ୍ରୋ ଟ୍ରେନ୍‌ରେ ଜଣେ ସ୍ତ୍ରୀଲୋକ ଏକୁଟିଆ ନଗରୀର ସମସ୍ତ ଜାଗା ନିରାପଦରେ ଭ୍ରମଣ କରିପାରେ । ଆଇନ୍ ଶୃଙ୍ଖଳା ବ୍ୟବସ୍ଥା ଅତ୍ୟନ୍ତ କଡ଼ା ।

ଦୋକାନଗୁଡ଼ିକ ଦୁଇ ପ୍ରକାର । ଗୋଟିଏ ପ୍ରକାରର ଦୋକାନରେ କେବଳ ରସିଆନ୍ ମୁଦ୍ରା ରୁବଲ ଦେଣ ନେଣ ହୁଏ । ସେଠାରେ କେବଳ ଦେଶଜ ପଦାର୍ଥ । ବିଦେଶୀ ଲୋକ ଖୁବ୍ କମ୍ । ଆଉ ଗୋଟିଏ ପ୍ରକାର ଦୋକାନ ହେଉଛି Veroska । ସେଗୁଡ଼ିକରେ ଡଲାର କାରବାର । ସେଠାରେ ବିଦେଶୀ ପର୍ଯ୍ୟଟକଙ୍କ ବହୁତ ଭିଡ଼ । ସବୁ ଜିନିଷ କିଣି Cash Counterରେ ଟଙ୍କା ଦେଇଦେଲେ ଜିନିଷ Delivery ଦିଆଯିବ ।

ଆମେ କେତେଜଣ ଓ ମୁଁ ଗୋଟିଏ Veroska କୁ ଯାଇଥିଲୁ । ଜିନିଷ କିଣି ସାରିଲା ପରେ ଆଉ ଗୋଟିଏ ଜିନିଷ ଆଣି Cash Counter ପାଖରେ କହିଲି ମୁଁ ଆଉ ଗୋଟିଏ ଜିନିଷ କିଣିଛି । ତାକୁ ମିଶାଇ ବିଲ୍ କରନ୍ତୁ । ମାତ୍ର Collection Counter ବାଟେ ଆସି ନଥିବାରୁ ସେମାନେ ଭାବିଲେ ମୁଁ ଚୋରି କରିଛି । ମୁଁ ଯେତେ ବୁଝାଇବାକୁ ଚେଷ୍ଟା କଲି ବୁଝିଲେ ନାହିଁ । ମୁଖ୍ୟ ପ୍ରତିବନ୍ଧକ ହେଲା ଭାଷାଗତ ଅସୁବିଧା । ଇଂରାଜୀ ଭଲ ରକମ ବୁଝନ୍ତି ନାହିଁ । ଆମ ଭାରତୀୟ ସାଥିମାନେ ସେତିକିବେଳକୁ ଭାବିଲେ ଓଡ଼ିଶାର ଲୋକଟିକୁ ପୋଲିସ୍ ଆରେଷ୍ଟ କରିବ । ମୁଁ ୧୫ ମିନିଟ୍ ଅପେକ୍ଷା କଲାପରେ ଜଣେ English knowing ବଡ଼ ଅଫିସରଙ୍କୁ ଡାକିଲେ । ତାଙ୍କୁ ମୁଁ ସବୁକଥା ବୁଝାଇଦେବାରୁ ସେ କହିଲେ "You are not at fault, But you have not followed the procedure."

ହୋଟେଲ୍‌ରେ ଡିନର୍ ସମୟରେ ଜଣେ Waiting lady କଥା ଛଳରେ କହିଲେ, " ଆପଣଙ୍କ ଦେଶରେ ସମୁଦ୍ର ଓ ନଦୀ ବର୍ଷର କେତେମାସ ବରଫାବୃତ ରହେ ?" ମୁଁ କହିଲି, "ଆମ ଭାରତରେ ନଦୀ ବା ସମୁଦ୍ର କେବେ ହେଲେ ବରଫାବୃତ ହୁଏ ନାହିଁ । ସର୍ବଦା ତରଳ ଜଳପୂର୍ଣ୍ଣ ତରଙ୍ଗମାଳା । ସମୁଦ୍ରକୂଳକୁ ବର୍ଷ ସାରା ଦେଶ ବିଦେଶରୁ ଟୁରିଷ୍ଟଙ୍କ ସୁଅ ଛୁଟିଥାଏ ।" ସେ କହିଲେ, "ହେ ଭଗବାନ, ଏପରି ଦେଶ ଅଛି ଯେଉଁଠାରେ ସମୁଦ୍ର ବରଫାବୃତ ହୁଏ ନାହିଁ ! ସେହି ଦେଶ ଦେଖିବାକୁ ମୋର ବହୁତ ଆଗ୍ରହ ଓ କୌତୁହଳ ଜନ୍ମୁଛି । ମାତ୍ର ଯିବା ଓ ଦେଖିବା ସ୍ୱପ୍ନ । କେଜାଣି ଆର ଜନ୍ମରେ ସେ ସୁବିଧା ମିଳିପାରେ ।"

ମସ୍କୋରେ ରହିବା ପରେ ଆମ୍ଭେମାନେ ଇଉକ୍ରେନର ରାଜଧାନୀ Kiev ନଗରୀକୁ ପ୍ଲେନ୍‌ରେ ଗଲୁ । ସୋଭିଏଟ୍ ଇଉନିୟନ ରସିଆ ଏବଂ ଆଉ ୧୫ଟି ଷ୍ଟେଟ୍‌କୁ ନେଇ ଗଠିତ ହୋଇଥିଲା । ଶାସନ ପଦ୍ଧତି ଏବଂ ଜାତୀୟ ଭାଷା ରସିଆନ୍ । ସେଥିରୁ

ଇଉକ୍ରେନ୍ ଅନ୍ୟତମ । Dneipre ନଦୀ ଏକ ଚିର ପ୍ରବାହିତ ନଦୀ । ଏହା Black Sea ରେ Odessa ବନ୍ଦର ପାଖରେ ପଡ଼ିଛି । Kiev ସହର ପାଖରେ ଏହା ବହୁତ ଗଭୀର । Kiev ସହରରେ ସକାଳେ ମୁଁ ପ୍ରାତଃଭ୍ରମଣରେ ଯାଉଥିଲି । ସେ ଦେଶରେ ମ୍ୟୁନିସିପାଲିଟି କରପୋରେସନ୍ ମାନଙ୍କୁ ବହୁତ କ୍ଷମତା ହସ୍ତାନ୍ତର କରାଯାଇଥିଲା । ଗୁରୁତ୍ୱପୂର୍ଣ୍ଣ ସେବା, ଯଥା- ସଫେଇ, ବିଦ୍ୟୁତ୍, ପାନୀୟ ଜଳ ବ୍ୟତୀତ ଆଇନ୍‌ଶୃଙ୍ଖଳା, ଟ୍ରାଫିକ୍ ବ୍ୟବସ୍ଥା ଏବଂ ଛୋଟ ଛୋଟ ପାରିବାରିକ ମକଦ୍ଦମା ଫଇସଲା କରିବାର କ୍ଷମତା ଦିଆଯାଇଥିଲା । ସେଠାରେ ରାସ୍ତାରେ ଡାହାଣକୁ ମାଡ଼ି ଚାଲନ୍ତି । ମୁଁ ଡାହାଣ ପାଖରେ ରାସ୍ତାରେ ପ୍ରାତଃଭ୍ରମଣରେ ଯାଉଥିଲାବେଳେ ଦୁଇଟି ବିରାଟ ଟ୍ରକ ଚାଳିତ ସଫେଇ ଗାଡ଼ି ମୋ ପଛରେ ଆସୁଛନ୍ତି । ସେମାନେ ବହୁତ ଜୋରରେ ହର୍ଣ୍ଣ ଦେବାରୁ ମୁଁ ରାସ୍ତା ଛାଡ଼ି ଦେଲି । ପ୍ରଥମ ଟ୍ରକଟି ରାସ୍ତା ସଫେଇ କରି କରି କ୍ରେନ୍ ସାହାଯ୍ୟରେ ଅଟୋମେଟିକ୍ load କରୁଛି । ଦ୍ୱିତୀୟ ଟ୍ରକଟି ଗୋଟିଏ ପାଣି ଗାଡ଼ି । ରାସ୍ତାରେ ଅଟୋମେଟିକ୍ ପାଣି ଛିଞ୍ଚି ଛିଞ୍ଚି ଆସୁଛି । ରାସ୍ତା ପରିଷ୍କାର କରି ପାଣିଛିଞ୍ଚା କାର୍ଯ୍ୟ ସକାଳ ୮ ଘଣ୍ଟା ଭିତରେ ଶେଷ । ଏପରି ଅଳ୍ପ କେତୋଟି ମେସିନ୍ ରଖିଦେଲେ Kiev ପରି ୫୦ ଲକ୍ଷ ଲୋକ ସଂଖ୍ୟା ବିଶିଷ୍ଟ ସହରଟି ପାଇଁ ଯଥେଷ୍ଟ । ଆମ ଦେଶ ପରି Sweeper ବା ଝାଡୁଦାର ପ୍ରଥା ନାହିଁ । ମୋଟ ଉପରେ ନିମ୍ନ କର୍ମଚାରୀଙ୍କ ଦ୍ୱାରା ମଇଳା କାମ ଯେପରି ସର୍ବନିମ୍ନ ମାନସିକ/ ଶାରୀରିକ ଶ୍ରମ ପ୍ରୟୋଗ କରି ସମ୍ମାନଜନକ ଭାବେ ସଂପନ୍ନ କରିହେବ ସେହି ନୀତି ଏବଂ ପଦ୍ଧତି ଗୃହୀତ ହୋଇଛି ।

Kiev ସହରରେ ଦୁଇଦିନ ରହି ଆମ୍ଭେମାନେ Black Sea ସମୁଦ୍ର ଉପକୂଳରେ ଅବସ୍ଥିତ Sochi ସ୍ୱାସ୍ଥ୍ୟ ନିବାସ ସହରକୁ ଆସିଲୁ । ଅତି ରମଣୀୟ ସ୍ଥାନ । ୨ ଦିନ ରହଣି ଆମ୍ଭେମାନେ ପୂର୍ଣ୍ଣ ଉପଭୋଗ କଲୁ । ମୁଁ ସକାଳ ୭ ଘଣ୍ଟା ସମୟରେ ସମୁଦ୍ରକୂଳରେ ପ୍ରାତଃଭ୍ରମଣରେ ବାହାରିଯାଏ । Black Sea ର ଜଳ କୃଷ୍ଣବର୍ଣ୍ଣ । ଆମର ଏଠାରେ ପୁରୀ, ଗୋପାଳପୁର, ମାନ୍ଦ୍ରାଜର ମ୍ୟାରିନା beach ନିକଟରେ ବଙ୍ଗୋପସାଗର ଜଳ ଏବଂ ଦକ୍ଷିଣର ଶେଷ ପ୍ରାନ୍ତ କନ୍ୟାକୁମାରୀ ଯେଉଁଠାରେ ତିନି ସାଗର- ଭାରତ ମହାସାଗର, ବଙ୍ଗୋପ ସାଗର ଏବଂ ଆରବ ସାଗରର ଜଳ ରଙ୍ଗରେ ପ୍ରଭେଦ ହେଲେ ହେଁ ମୋଟ ଉପରେ ନୀଳ ରଙ୍ଗ । ମାତ୍ର Black Seaର ରଙ୍ଗ ବହୁତ ମାତ୍ରାରେ କଳା । ସେଥିଯୋଗୁ ଏହାର ନାମ Black Sea ହୋଇଛି । ଭୂଗୋଳରେ ପଢ଼ା ହୋଇଥିଲା, ଏହିପରି Yellow Sea (ଚୀନ୍ ଦେଶ ପାଖରେ), Red Sea

(ଭୂମଧ୍ୟ ସାଗର ପାଖରେ), White Sea (Sweden) ଏବଂ ଶେଷରେ Dead Sea (Syria ଓ Egypt) ପାଖରେ । ଶେଷୋକ୍ତ Dead Sea ର ଜଳ ଅତ୍ୟନ୍ତ ଲବଣାକ୍ତ । ତାହାର density (ଘନତ୍ୱ) ଜଳଠାରୁ ଅଧିକ । ତେଣୁ ମନୁଷ୍ୟ ସହଜରେ ବୁଡ଼ିଯିବ ନାହିଁ । ମାତ୍ର ଏହାର ଉପକାରିତା କିଛି ନାହିଁ କହିଲେ ଚଳେ ।

ହଁ, ପ୍ରାତଃଭ୍ରମଣ କଥା ଛାଡ଼ିଦେଲି । ମୁଁ ସମୁଦ୍ର କୂଳରେ ଚାଲିଲାବେଳେ ଗୋଟିଏ ୫.୫ ଫୁଟ ଉଚ୍ଚ ଓ ସାମାନ୍ୟ ମୋଟା (ଓଜନ ୭୦/୭୫ କେ.ଜି.) ହେବ ଲୋକ ଜୋର୍‌ରେ ଚାଲି ଚାଲି ବିପରୀତ ଦିଗରୁ ଆସୁଛନ୍ତି । ସେ ମୋତେ ପଚାରିଲେ, ''ଭ୍ରେମର ଭ୍ରେମର'' (time time) । ମୁଁ ବୁଝି ନ ପାରିବାରୁ ସେ ମୋ ହାତବନ୍ଧା ଘଡ଼ିକୁ ଦେଖାଇଲେ । ମୁଁ କହିଲି ୭/୩୦ ମିନିଟ୍ । ସେ ଉତ୍ତର ଦେଲେ, "Foreigner, Which Country ?" ମୁଁ କହିଲି Indian । ସେ ହସି ହସି କର ମର୍ଦ୍ଦନ କରି ଚାଲିଗଲେ । ଏହିପରି ଯଦିଚ ଭାଷାଗତ ପ୍ରତିବନ୍ଧକ ଥିଲା, ମାତ୍ର ସାମାନ୍ୟ କେତୋଟି ସାଧାରଣ ସମ୍ବୋଧନ ଓ gesture ବା ଭାବଭଙ୍ଗୀରେ କଥାକୁ ପ୍ରକାଶ କରିହେବ । Good morning କହିଲେ ରସିଆନ୍ ଭାଷାରେ "Dobrai Adra", Good evening "Dobrai Don", ବନ୍ଧୁଗଣ "Comrades", Thank you "Prassivo" ଇତ୍ୟାଦି । ଆପଣ ଚାହୁଁଛନ୍ତି ବାଥ୍‌ରୁମ୍ ଯିବାପାଇଁ । ବାହାରେ ପରିସ୍ରା କରିବା ମନା । ତେଣୁ Lift manକୁ ପ୍ୟାଣ୍ଟର ବଟନ୍ ବା Zipper ଖୋଲିବା ଅଭିନୟ କରି ଦେଖାଇଲେ ସେ ବତାଇଦେବ ଆଙ୍ଗୁଠି ଦେଖାଇ, ଦୁଇ ହେଲା ବାଁ ପାଖ ୮ ନମ୍ବର ରୁମ୍ । ଆପଣ ହୋଟେଲ୍‌ରେ ଡାଇନିଂ ରୁମ୍ ଯିବାପାଇଁ ଚାହାଁନ୍ତି । ତାକୁ ଖାଇବା ଠାଣିରେ ପାଟି ପାଖକୁ ହାତ ଦେଖାଇଦେଲେ ସେ ଠିକ୍ ବତାଇଦେବ । ଆପଣମାନେ ଶିଖନ୍ତୁ ମୂକ ବଧିର ଏବଂ ବୟସ୍କ ଅଳ୍ପ ଶୁଭୁଥିବା ବ୍ୟକ୍ତିଙ୍କ ସାଙ୍ଗରେ କିପରି କଥୋପକଥନ କରିବେ । Dr. Kishore Patnaik ସମ୍ବଲପୁର ଇଉନିଭରସିଟିର ପୂର୍ବତନ କୁଳପତି ଥରେ ଗୋଟିଏ ହାସ୍ୟରସାତ୍ମକ ଘଟଣା କହି ହାସ୍ୟରୋଳ ସୃଷ୍ଟି କରି ସମସ୍ତଙ୍କୁ ଆପ୍ୟାୟିତ କରିଥିଲେ । ଘଟଣାଟି ହେଲା ସେ ମସ୍କୋରେ ଗୋଟିଏ ହୋଟେଲ୍‌ରେ ସିଝା କୁକୁଡ଼ା ଅଣ୍ଡା ଯୋଡ଼ିଏ ଆଣିବା ପାଇଁ କହିଲେ । ହୋଟେଲ ବୟ ବଡ଼ ବଡ଼ ବତକ ଅଣ୍ଡା ଆଣିଲା । ସେ କହିଲେ କୁକୁଡ଼ା ଅଣ୍ଡା ଛୋଟ ଛୋଟ । ସେ ପାରା ଅଣ୍ଡା ଆଣିଲା । ସେ ବଡ଼ ପାଟି କରି କହିଲେ, ''କୁକୁକୁ କୁକୁ''। ହାତ ଦେଖାଇ ଛୋଟ ସାଇଜ୍ ଦେଖାଇ ଦେଲେ । ସେଠାରେ ଥିବା ଅନ୍ୟ ଉପସ୍ଥିତ ଭଦ୍ରଲୋକ ମାନେ ହସି ହସି ତାଳି ମାରିଲେ । ଟିକିଏ

ଉପସ୍ଥିତ ବୁଦ୍ଧି ଏବଂ ଧୈର୍ଯ୍ୟ ଦରକାର । ଋଷିଆନ୍ ଭାଷା Phonetic Language ଅର୍ଥାତ୍ ଗୋଟିଏ alphabet ରେ ଗୋଟିଏ ଉଚ୍ଚାରଣ । ଇଂଲିଶ୍ ଭାଷାର ଉଚ୍ଚାରଣ ବଡ଼ କଠିନ । ଯଥା But (ବଟ୍), Put (ପୁଟ୍) ଇତ୍ୟାଦି । English alphabet ସଙ୍ଗେ କେତୋଟି ସମାନ୍ , କେତେକର ଉଚ୍ଚାରଣ ଅଲଗା, ଆଉ କେତୋଟି ଅଧିକ । Plane ରେ U.S.S.R. ଜାଗାରେ ଲେଖା ହୋଇଥାଏ C.C.C.P. (Soviet Socialist States Republic) ।

Black sea କୂଳରେ ଅବସ୍ଥିତ ସୋଚି ସ୍ୱାସ୍ଥ୍ୟ ନିବାସରେ ଦୁଇ ଦିନ ରହିଲୁ । ସେଠାରେ ମଧ୍ୟାହ୍ନ ଭୋଜନରେ ଥରେ ଗୋଟିଏ ଗିନା ଲେଖାଏଁ ମାଂସ ତରକାରୀ ଦେଲେ । ମାଂସ କି ମାଂସ  ହୋଇଥିବ, କାଳେ ବିଫ୍ ହୋଇଥିବ ଭାବି ମୁଁ ମାଂସ ନଖାଇ ଟିକିଏ ଘୁଞ୍ଚାଇଦେଲି । ଆମ ଟେବୁଲ୍‌ର ଆଉ ୭ ଜଣ କହିଲେ ଆପଣ ଖାଉ ନାହାନ୍ତି କାହିଁକି ? ମୁଁ ଉତ୍ତର ଦେଲି ପରେ ଖାଇବି । ସେମାନେ ମୋତେ ଦେଖି କେହି ନ ଖାଇ ମାଂସ ଆଡ଼େଇ ଦେଲେ । ଆମ ଟେବୁଲ୍‌କୁ ଚାହିଁ ଅନ୍ୟ ଟେବୁଲ୍‌ର କେହି ମାଂସ ଖାଇଲେ ନାହିଁ । ଫଳରେ ପ୍ରାୟ ୧୦୦ ପ୍ଲେଟର ମାଂସ ତରକାରୀ ନଷ୍ଟ ହେଲା । କାରଣ ଥରେ ଡାଇନିଂ ହଲ୍‌ରୁ ଫେରିଗଲେ ଆଉ କେହି ଖାଇବେ ନାହିଁ । ଖାଇବା ଶେଷରେ ଆମ ଗାଇଡ୍ ମୋତେ  ମନ ଦୁଃଖରେ କହିଲେ, "Mr. Mishra, ଆପଣଙ୍କ ଯୋଗୁ ଏ ମାଂସ କେହି ଖାଇଲେ ନାହିଁ । ଏହା ବିଫ୍ ବା ଗୋ ମାଂସ ନୁହେଁ । କାରଣ ଆମେ ଜାଣିଛୁ ଇଣ୍ଡିଆନ୍‌ମାନେ ବିଫ୍ ଖାଆନ୍ତି ନାହିଁ । ସେଥି ଯୋଗୁ ଛେଳି ମାଂସ ଯୋଗାଡ଼ କରିଥିଲୁ । ଏହା କେବଳ Black Sea Coast ରେ ମିଳେ । ଅନ୍ୟ କେଉଁଠାରେ ମିଳେ ନାହିଁ ।'' ମୁଁ ଉତ୍ତର ଦେଲି, ''ଆମେ Indian ମାନେ ବିଫ୍ ଖାଉନା । ଯେବେ ଏହା ଛେଳି ମାଂସ, ତେବେ ଆମକୁ କହି ଦେବାର ଥିଲା । ମୁଁ ମଧ୍ୟ ନ ଖାଅ ବୋଲି କାହାକୁ କହି ନାହିଁ ।'' ତଥାପି, ମୁଁ କହିଲି "Iam very sorry. I apologise. Kindly excuse us."

Sochiରେ ଦୁଇଦିନ ରହିଲା ପରେ ଆମେ ଟାସ୍‌କେଣ୍ଟକୁ ଫେରିଆସିଲୁ ଅପରାହ୍ନରେ । ୪ ଘଣ୍ଟାର Plane journey. Delhi ଠାରୁ Taskent ର Plane journey ୨ ଘଣ୍ଟା । ଅପରାହ୍ନରେ ସ୍ୱର୍ଗତ ପ୍ରଧାନ ମନ୍ତ୍ରୀ ଲାଲ୍ ବାହାଦୁର ଶାସ୍ତ୍ରୀଙ୍କ ସ୍ମୃତି-ସ୍ତମ୍ଭ ନିକଟକୁ ଯାଇ ଭକ୍ତିପୂତ ଶ୍ରଦ୍ଧାଞ୍ଜଳି ଜ୍ଞାପନ କଲୁ । ଚକ୍ଷୁ ଲୋତକ ଭରା । ସେ କିପରି ଦେଶ ମାତୃକା ପାଇଁ ସୁଦୂର ଟାସକେଣ୍ଟରେ ବ୍ରେଜନେଭଙ୍କ ମଧ୍ୟସ୍ଥତାରେ ଭାରତ ପାକିସ୍ଥାନ ଯୁଦ୍ଧରେ ସନ୍ଧି ଚୁକ୍ତି ସ୍ୱାକ୍ଷରିତ କରାଇଲେ । ଅଶ୍ରୁତ ପୂର୍ବ ଏବଂ

ଅଦୃଷ୍ଟପୂର୍ବ ତ୍ୟାଗ ତାଙ୍କର । ମହାତ୍ମାଗାନ୍ଧିଙ୍କ ପରେ ତାଙ୍କର ଜୀବନ ଉତ୍ସର୍ଗ ଇତିହାସରେ ଅମର ରହିବ ।

ତାସ୍କେଣ୍ଟରୁ ରାତି ଗୋଟାକ ବେଳେ ବାହାରି ଦିଲ୍ଲୀରେ ୧୯୮୭ ମସିହା ମେ ୧୦ ତାରିଖରେ ପାଲାମଠାରେ ଏୟାର ଇଣ୍ଡିଆ ପ୍ଳେନ୍‌ରେ ପହଞ୍ଚିଲୁ । ଏହିପରି ଜୀବନର ଏକ ବିରଳ ଅନୁଭୂତି ଉପଭୋଗ କରି ସୋଭିଏଟ୍ ଇଉନିୟନରେ ୧୫ ଦିନ ଯାତ୍ରା ସମାପ୍ତ । ଏହି ସୁବିଧା ଓ ସୁଯୋଗ ଦେଇଥିବାରୁ ଭାରତୀୟ କମ୍ୟୁନିଷ୍ଟ ପାର୍ଟି ଓ ସ୍ୱର୍ଗତ ଗଙ୍ଗାଧର ପାଇକରାୟଙ୍କୁ ମୋର ଆନ୍ତରିକ କୃତଜ୍ଞତା ଜ୍ଞାପନ କରୁଛି ।

ସୋଭିଏଟ୍ ଇଉନିୟନ୍ ଗସ୍ତ ପରେ ସେଠାକାର ଶାସନ ପଦ୍ଧତିର କେତୋଟି ଭଲ ଗୁଣ ଓ ଦୋଷତ୍ରୁଟି ଦେଖିବାକୁ ପାଇଲୁ । ତାହାର ସଂକ୍ଷିପ୍ତ ବିବରଣୀ ନିମ୍ନରେ ଦେଲି ।

କମ୍ୟୁନିଜିମ୍‌ର ମୂଳଭିତ୍ତି ହେଲା Everybody will give to the State according to his capacity. He will get from the State according to his need.

ପ୍ରଥମ ଘୋଷଣା ରାଜ୍ୟ ଠିକ୍ ପାଳନ କରିଛି । ମାତ୍ର ନାଗରିକମାନେ ତାଙ୍କର ପାରୁ ପର୍ଯ୍ୟନ୍ତ କାମ କରି ଉତ୍ପାଦନ ଦେଉ ନାହାନ୍ତି । ସହଜେ କୃଷି ଉତ୍ପାଦନ ପାଇଁ ସେ ଦେଶ ଅନୁକୂଳ ନୁହେଁ । ବର୍ଷରେ ୮ ମାସ ଭୀଷଣ ଥଣ୍ଡା । ଦେଶର ଅର୍ଦ୍ଧେକ ଅଞ୍ଚଳ ବରଫାବୃତ । ମାତ୍ର ୪ ମାସ ଅନୁକୂଳ ଜଳବାୟୁ । ଶସ୍ୟ ଉତ୍ପାଦନ ନାହିଁ କହିଲେ ଚଳେ । ଦକ୍ଷିଣରେ ଇଉକ୍ରେନ୍ ରାଜ୍ୟରେ କିଛି ଶସ୍ୟ ଉତ୍ପାଦନ ହେଉଛି । ତାହା ସମୁଦ୍ରକୁ ଶଙ୍ଖେ ପରି । ଅନ୍ୟ କୌଣସି କୃଷିଜାତ ଦ୍ରବ୍ୟର ଉତ୍ପାଦନ ଆବଶ୍ୟକତା ଅନୁସାରେ ହେଉନଥିଲା ।

ଏଣେ ଶିଳ୍ପଜାତ ଦ୍ରବ୍ୟର ଉତ୍ପାଦନ ବହୁତ ହ୍ରାସ ପାଇଲା । କେବଳ ଶ୍ରମିକ ମାନଙ୍କ ପାଇଁ ଦେଶ ଧ୍ୟାନ ଦେବାରୁ ଉତ୍ପାଦନ ନିଶ୍ଚିତ ଭାବେ ହ୍ରାସ ପାଇଲା । ଆମେ ଦେଖିଛୁ ଦିନ ୧୧ଟା ବେଳେ କାରଖାନାର ଉତ୍ପାଦନ ପ୍ରତି ଧ୍ୟାନ ନ ଦେଇ ଶ୍ରମିକମାନେ Russian dance ଓ Acrobatic ଦେଖାଉଥିଲେ । ମୁଁ ଏହାକୁ ମୋଟେ ପସନ୍ଦ କଲି ନାହିଁ ।

ରସିଆନ୍ ମୁଦ୍ରାର ନାମ ହେଉଛି Rubble. American Dollar ତୁଳନାରେ ତାଁର ମୂଲ୍ୟ-ନିୟନ୍ତ୍ରଣ କରିବା । ବିଦେଶୀ ମୁଦ୍ରା କ୍ରୟ ଓ ବିକ୍ରୟ ବେଳେ ତାହାର Official Exchange rate ଅଛି । Rubble ର exchange rate ହେଉଛି 6 Dollar.

ମାତ୍ର ବଜାର କାରବାର ରେଟ୍ ହେଉଥିଲା ଏକ ରୁବଲ୍ ମାତ୍ର 63 cents । ଏହିପରି ରୁବଲର୍ exchange rate ଅତି ଦ୍ରୁତଗତିରେ କମିବାକୁ ଲାଗିଲା । ହୋଟେଲ୍‌ରେ ଆମକୁ ପ୍ରଲୋଭନ ଦେଖାନ୍ତି ଡଲାର ବଦଳରେ 6 Rubble ନିଅ । କାରଣ Rubbleର କ୍ରୟ ଶକ୍ତି ନଥିଲା । ସେଥିଯୋଗୁ ବିଦେଶୀ ଜିନିଷ ବିକ୍ରୀ କରୁଥିବା Veroska ରେ ପ୍ରବଳ ଭିଡ଼ । ଦେଶୀୟ ଜିନିଷ ବିକ୍ରୀ କରୁଥିବା ଦୋକାନ ଗୁଡ଼ିକ ଫାଙ୍କା । ତାଙ୍କର ଚାହିଦା ନାହିଁ । ତେଣୁ ମୁଖ୍ୟତଃ ଅର୍ଥନୈତିକ ଦୁର୍ବଳତା ଯୋଗୁଁ ସୋଭିଏଟ୍ ଇଉନିଅନ୍ ଭୁଷୁଡ଼ି ପଡ଼ିଲା । ଆମେରିକା ଚକ୍ରାନ୍ତରେ ୧୯୯୧-୯୨ରେ ଗୋର୍ବାଚେଭଙ୍କ ରାଷ୍ଟ୍ରପତିତ୍ୱ ବେଳେ ତାଙ୍କୁ ନୋବେଲ୍ ପ୍ରାଇଜ୍ ଦେଇ ଆମେରିକା ସୋଭିଏଟ୍ ଇଉନିୟନକୁ ଖଣ୍ଡଖଣ୍ଡରେ ବିଭାଜନ କରି ଦେଶର ମେରୁଦଣ୍ଡ ଭାଙ୍ଗିଦେଲେ । ତେଣୁ ଋଷିଆର ପ୍ରତିରୋଧ କରିବାର ଶକ୍ତି ସବୁଦିନ ପାଇଁ ଉଭେଇଗଲା । ଗୋର୍ବାଚେଭ Glass nost ବା କିଛି ମାତ୍ରାରେ ବ୍ୟକ୍ତିଗତ ସ୍ୱାଧୀନତା ଫେରାଇ ଆଣିଥିଲେ ବୋଲି ସମସ୍ତେ କହନ୍ତି । ସେ ବିଷୟରେ ମୁଁ କିଛି କହିପାରିବି ନାହିଁ ।

କମ୍ୟୁନିଜିମ୍‌ର ସୁଗୁଣ ହେଉଛି ଶିଶୁ ଓ ମହିଳାମାନଙ୍କର ବହୁବିଧ ଉନ୍ନତି । ଆମ ଦେଶରେ ସ୍ୱର୍ଗତଃ ଜବାହରଲାଲ୍ ନେହୁରୁ ଓ ଇନ୍ଦିରା ଗାନ୍ଧୀ ଶିଶୁ ଓ ମହିଳାମାନଙ୍କ ପାଇଁ ସ୍ୱତନ୍ତ୍ର ଧ୍ୟାନ ଦେଇଥିଲେ । ଜଣେ ବିଖ୍ୟାତ ଅର୍ଥନୀତି ବିଶାରଦ କହିଛନ୍ତି, "Communism has gone from Russia; କିନ୍ତୁ Communism ନୀତିକୁ ବହୁ ଦେଶ ନିଜ ଶାସନରେ ବହୁ ପରିମାଣରେ ଗ୍ରହଣ କରିଛନ୍ତି । Socialism ବା ଗଣତନ୍ତ୍ର ଶାସନରେ ମୁଖ୍ୟ slogan ଏବଂ ଆଦର୍ଶ ସ୍ଥାନରେ ଅଛନ୍ତି ନରୱେ ଓ ସୁଇଡେନ୍ । ତାଙ୍କର ଶାସନ ପଦ୍ଧତି ଅନୁଧେୟ । ପ୍ରତ୍ୟେକ ଦେଶ ନିଜ ନିଜର ଚାହିଦା ଏବଂ ଅର୍ଥନୈତିକ ଅବସ୍ଥାକୁ ଆଖି ଆଗରେ ରଖି ନୀତି ନିର୍ଦ୍ଧାରଣ କରନ୍ତି । ଅନ୍ୟ ଦେଶର ପନ୍ଥା ଆଖିବୁଜି ଆମେ ଅନୁସରଣ କରିପାରିବା ନାହିଁ ।

ଋଷିଆନ୍ ଶାସନର ଆଉ ଗୋଟିଏ ଭଲ ଦିଗ ହେଉଛି ପିଲାମାନଙ୍କ ରକ୍ଷଣାବେକ୍ଷଣ ପାଇଁ ଯତ୍ନ । ସେମାନଙ୍କ ଶିକ୍ଷା ଓ ସ୍ୱାସ୍ଥ୍ୟ ପୂରାପୂରି ରାଷ୍ଟ୍ରର ଦାୟିତ୍ୱ । ସ୍କୁଲ୍‌ରେ ଠିକ୍ ସମୟରେ ପହଞ୍ଚାଇ ଦେବା ପିତାମାତାଙ୍କର ଦାୟିତ୍ୱ । ପୂରା ଦିନମାନ ପିଲାମାନେ ସ୍କୁଲ୍‌ରେ କଟାନ୍ତି । ମଧ୍ୟାହ୍ନ ଭୋଜନ, ବିଶ୍ରାମ, ଖେଳକୁଦ ସବୁ କିଛି ସେଠାରେ ହୁଏ । ସେକେଣ୍ଡାରୀ ସ୍କୁଲ୍‌ରେ ପିଲାମାନଙ୍କୁ ସ୍କୁଲ୍ ଛାଡ଼ିଦେଲା ପରେ Pioneer Busରେ Pioneer Institutionରେ Outdoor activity practice କରନ୍ତି । କୌଣସି ଋଷିଆନ୍

ପିଲା ମିଳିବେ ନାହିଁ, ଯେ କୌଣସି ନା କୌଣସି Outdoor Activity ରେ ଉତ୍କର୍ଷ ଦର୍ଶାଉ ନାହାନ୍ତି । ବିଶେଷତଃ Acrobatics, Dance, Music ରେ ପ୍ରତ୍ୟେକ ପିଲା କିଛି କିଛି ଜାଣିଛନ୍ତି । ଷ୍ଟେଜ୍ ଉପରକୁ ପୁଅ ଝିଅ ଦୁହେଁ ଚାଲି ଆସିଲେ Bugle ବାଜୁଛି । ପୁଅଟି ହାତ ଦେଖାଇଦେଲା । ଝିଅଟି ତା ହାତ ଉପରେ ଉଠି ଗୋଟିଏ ହାତରେ ଠିଆ ହୋଇ ନାନା ରକମର ଖେଳ ଦେଖାଉଛି । ସେଥିଯୋଗୁ ଉଭୟଙ୍କର ବୁଝାମଣା, ଦୈହିକ ଶକ୍ତି ଏବଂ ସମନ୍ୱୟ ଅତୀବ ଆବଶ୍ୟକ । ଆପଣ ଦେଖିଲେ ଜାଣି ପାରିବେ ସେମାନଙ୍କର କିପରି ଅପୂର୍ବ ସମନ୍ୱୟ । ସେଥିଯୋଗୁଁ ଋଷିଆ World Olympics ରେ ବହୁତ ସୁନାମ କରିଛି । ଏହି ୟୁନିଟି ଏବଂ ସମନ୍ୱୟ ଶିକ୍ଷା କରି World Olympics ରେ Peoples Republic of China ମଧ୍ୟ ଗତ Olympic ଖେଳରେ ବହୁତ ମେଡାଲ୍ ଲାଭ କରିଛି ଏବଂ World Champion ଆଖ୍ୟା ହାସଲ କରିଛି । ଆମ ଦେଶରେ ଯେଉଁମାନେ ଅଲିମ୍ପିକ୍ ମେଡ଼ାଲ୍ ପାଇଛନ୍ତି ସେମାନେ ବ୍ୟକ୍ତିଗତ ଉଦ୍ୟମରେ ପାଇଛନ୍ତି ।

ସୋଭିଏତ୍ ଇଉନିୟନ୍‌ରେ ଆଉ କେତେଦିନ ରହି ଆହୁରି କେତୋଟି ଜାଗା ଦେଖିବାକୁ ମୋର ଇଚ୍ଛା ଥିଲା । ସେଗୁଡ଼ିକ ହେଲା Caspian Sea, Aral Sea ବିଶେଷତଃ Trans Siberian Railway Express Train. ଏହା ବିଷୟରେ ଭୂଗୋଳରେ ପଢିଥିଲି । ପୃଥିବୀର Longest train journey, Latia ର Riga ଠାରୁ ପୂର୍ବ ଉପକୂଳରେ Vladivostok ପର୍ଯ୍ୟନ୍ତ ଦୂରତା ପ୍ରାୟ 5000 Km. ପୂର୍ବରୁ ଜାଳେଣି କାଠରେ ଇଂଜିନ୍ ଚାଲୁଥିଲା । ଏବେ ଇଲେକ୍‌ଟ୍ରିକ୍ ଶକ୍ତିରେ ଚାଲିଛି । ଟ୍ରେନ୍‌ରେ ଖାଦ୍ୟ ଓ ଚା, କଫି ଦିଆଯାଏ । ୭ କିସମର ଜଳବାୟୁ ମଧ୍ୟରେ ଟ୍ରେନ୍ ଗତିକରେ । ମାତ୍ର ସେ ଯାତ୍ରା ବହୁତ କଷ୍ଟଦାୟକ । ଦୀର୍ଘ ୭ ଦିନ ଲାଗେ । ତେଣୁ ଏପରି ସମୟସାପେକ୍ଷ ଯାତ୍ରା ଗୋଟିଏ sponsored group ବା ଆୟୋଜକ ଭ୍ରମଣ ସଂସ୍ଥା ଦ୍ୱାରା ପରିଚାଳିତ ସୀମିତ ଯାତ୍ରା ମଧ୍ୟରେ ଅସମ୍ଭବ ।

ସୋଭିଏତ୍ ଇଉନିୟନରୁ ଫେରି ମୁଁ ଚାଇନା ଯିବାକୁ ମନସ୍ଥ କରିଥିଲି । ଚାଇନାରେ ମାତ୍ର ୭ ଦିନ ରହଣି ପାଇଁ ଚାର୍ଜ ଟ.୨୦,୦୦୦ । ପୁଣି ଅଳ୍ପ କେତୋଟି ସ୍ଥାନ, ଯଥା:- Great Wall of China, Shanghai, Beijing ପରି କେତୋଟି ବଡ଼ ସହର ଦେଖିବା ଓ ହୋଟେଲ୍‌ରେ ଦିନେ ଦୁଇଦିନ କେବଳ ବିନା କାର୍ଯ୍ୟକ୍ରମରେ ଆଳସ୍ୟରେ କଟାଇବା ଏବଂ ସର୍ବୋପରି ଚୀନ୍ ଲୋକମାନଙ୍କର ଭାରତୀୟମାନଙ୍କ ପ୍ରତି ଏତେ ସଦ୍‌ଭାବ ନଥିବାରୁ ଚୀନ୍ ଦେଶ ଯିବା ପାଇଁ ମନ ବଳାଇଲି ନାହିଁ ।

ଆଇ.ଏ. ରେ ଭୂଗୋଳ ପଢ଼ିଲାବେଳେ ପୃଥିବୀ ଭ୍ରମଣ ସକାଶେ ମୋର ବଳବତୀ ଇଚ୍ଛା ଥିଲା । ବିଶେଷତଃ ଉତ୍ତର ଆମେରିକା, ଦକ୍ଷିଣ ଆମେରିକା ଏବଂ ପୂର୍ବପ୍ରାଚ୍ୟ ଦେଶଗୁଡ଼ିକୁ ଦେଖିବାକୁ ଇଚ୍ଛା ଥିଲା । ସର୍ବୋପରି ମୋର ନାମ କୈଳାସ ଦିଆଯାଇଥିବାରୁ କୈଳାସ ମାନସରୋବର ଦେଖିବାକୁ ମୋର ପିଲାବେଳରୁ କୌତୁହଳ ଥିଲା । ସେହି ଯାତ୍ରା ପାଇଁ ଅର୍ଥ ବ୍ୟତୀତ ଶାରୀରିକ ସୁସ୍ଥତା (Physical Fitness) ଅତି ଉଚ୍ଚକୋଟୀର ହେବା ଉଚିତ । ମାତ୍ର ମୁଁ ଏଥିପାଇଁ ଚେଷ୍ଟା କରିନାହିଁ । ୪ ଧାମ ମଧ୍ୟରୁ ୩ ଧାମ; ଯଥା:- ପୁରୀ, ରାମେଶ୍ୱର, ଦ୍ୱାରକା ଦର୍ଶନ କରିବାର ସୌଭାଗ୍ୟ ଅର୍ଜନ କରିଛି । ମାତ୍ର ବଦ୍ରିନାଥ, ଅମରନାଥ, କେଦାରନାଥ ତୀର୍ଥଗୁଡ଼ିକ ଯାଇ ପାରିନାହିଁ । ହୁଏତ ଆର ଜନ୍ମରେ ସେ ସୌଭାଗ୍ୟ ଅର୍ଜନ କରିହେବ । ସେଥିଯୋଗୁଁ ଯୋଗୀ ଋଷିମାନେ ସବୁ ଧାମ ନ ଦେଖି ଗୋଟିଏ ଧାମ ନଯାଇ ପୁନର୍ଜନ୍ମ ନେଲେ ଦେଖିବାକୁ ମନ ବଳାଇଥାନ୍ତି । ତା ପରେ ସବୁ ଧାମ ବହୁ ଆୟାସରେ ଚାଲି ଚାଲି ପଦବ୍ରଜରେ ଯିବା ବହୁ ପରିଶ୍ରମ ଏବଂ ସମୟସାପେକ୍ଷ । ବଦ୍ରିନାଥ ନଯାଇଥିଲେ ସୁଦ୍ଧା ହରିଦ୍ୱାର, ଋଷିକେଶ ସସ୍ତ୍ରୀକ ଯାଇଛି । ଋଷିକେଶରେ, ସ୍ୱାମୀ ଶିବାନନ୍ଦ ଆଶ୍ରମ । ଆମ ଓଡ଼ିଶାର ଜଣେ ସ୍ୱନାମଧନ୍ୟ ଆଇ.ଏ.ଏସ୍. ଅଫିସର ଶ୍ରୀ ସୁନୀଲ ପଟ୍ଟନାୟକ ସ୍ୱାମୀ ଚିଦାନନ୍ଦଙ୍କ ଭକ୍ତ ହୋଇ ସାରା ଜୀବନ ଅବିବାହିତ ରହି ସଂସାର ତ୍ୟାଗ କରି ସନ୍ନ୍ୟାସ ଗ୍ରହଣ କରିଛନ୍ତି । ତାଙ୍କର ସନ୍ନ୍ୟାସ ନାମ ହେଉଛି ସ୍ୱାମୀ ନିର୍ଲିପ୍ତାନନ୍ଦ । ଦିବ୍ୟ ଜୀବନ ସଂଘର ବିରାଟ ମିଟିଂ ପାଇଁ କଟକକୁ ଗୁରୁଙ୍କ ସଙ୍ଗେ  ଆସିଥିବେ । ତାଙ୍କ ପିତାଙ୍କ ପେନ୍‌ସନ୍ କାମରେ ମୁଁ ସାହାଯ୍ୟ କରିଥିବାରୁ ସୁନୀଲ ବାବୁଙ୍କ ସଙ୍ଗେ ମୋର ଘନିଷ୍ଠ ବନ୍ଧୁତା । ନିକଟରେ ସ୍ୱାମୀଜୀଙ୍କ ସଙ୍ଗେ ଫୋନରେ କଥାବାର୍ତ୍ତା ହୋଇ ଆଧ୍ୟାତ୍ମିକ ମାର୍ଗ ବିଷୟରେ ଆଲୋଚନା କରିଥିଲି । ଆମର ଜଣେ ସହକର୍ମୀ ଶ୍ରୀ ବାବାଜୀ ମହାପାତ୍ର ନିକଟରେ ପ୍ରାୟ ୧୫ ଜଣ ସଙ୍ଗୀଙ୍କ ସହିତ ଗଙ୍ଗୋତ୍ରୀ, ଯମୁନୋତ୍ରୀ, କେଦାରନାଥ, ବଦ୍ରିନାଥ ପ୍ରଭୃତି ପ୍ରସିଦ୍ଧ ତୀର୍ଥସ୍ଥାନ ଦର୍ଶନ କରିସାରି ଶିବାନନ୍ଦ ଆଶ୍ରମରେ ୪ ଦିନ ଅବସ୍ଥାନ କରି ସ୍ୱାମୀଜୀଙ୍କ ଦର୍ଶନ ଲାଭ କରି କୃତକୃତ୍ୟ ହୋଇ ମୋତେ ଆନନ୍ଦର ସହିତ କହିଥିଲେ ।

# ଶ୍ରୀ ମା ଭୁବନେଶ୍ୱରୀ ମନ୍ଦିର

ଯା ଦେବୀ ସର୍ବଭୂତେଷୁ ମାତୃ ରୂପେଣ ସଂସ୍ଥିତା
ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋ ନମଃ ।
ସର୍ବ ମଙ୍ଗଳ ମାଙ୍ଗଲ୍ୟେ ଶିବେ ସର୍ବାର୍ଥ ସାଧିକେ
ଶରଣ୍ୟେ ତ୍ର୍ୟମ୍ବକେ ଗୌରୀ ନାରାୟଣି ନମସ୍ତୁତେ ।
ଶରଣାଗତ ଦୀନାର୍ତ୍ତ ପରିତ୍ରାଣ ପରାୟଣେ,
ସର୍ବସ୍ୟାର୍ତ୍ତି ହରେ ଦେବି ନାରାୟଣି ନମସ୍ତୁତେ ।

ଭୁବନେଶ୍ୱରର ଆମ ସାହି ଖାରବେଳ ନଗରରେ କୌଣସି ମନ୍ଦିର ନଥିବାରୁ ଲୋକମାନେ ଲିଙ୍ଗରାଜ ମନ୍ଦିରକୁ ଯାଇ ପୂଜାର୍ଚ୍ଚନା କରୁଥିଲେ । ତେଣୁ ଏ ପଡ଼ାର କେତେକ ପୂର୍ବସୂରୀମାନଙ୍କ ପ୍ରଚେଷ୍ଟାରେ ଡଃ ହରେକୃଷ୍ଣ ମହତାବ ମୁଖ୍ୟମନ୍ତ୍ରୀ ଥିଲାବେଳେ ଗୋଟିଏ ପ୍ଲଟ ପ୍ରାୟ ୧୦୦ ଡେସିମିଲି ଆୟତନର ଜାଗା ଲିଜ୍ ସୂତ୍ରରେ ନେଇ ତା ଉପରେ ଗୋଟିଏ ମନ୍ଦିର ନିର୍ମାଣ କରିଥିଲେ । ମାତ୍ର ସେଥିରେ ବହୁତ କାମ ବାକିଥିଲା । ଅକ୍ଳାନ୍ତ ପରିଶ୍ରମ ଦ୍ୱାରା ମନ୍ଦିରଟି ପୂର୍ଣ୍ଣାଙ୍ଗ ହେଲା । ଆଉ ମଧ୍ୟ ସାମାଜିକ କାର୍ଯ୍ୟ ପାଇଁ କୌଣସି ସ୍ଥାନ ନ ଥିଲା । ସେଥିପାଇଁ କେତେକ ବଦାନ୍ୟ ଲୋକଙ୍କ ସହାୟତାରେ ମନ୍ଦିର ପାଖରେ ଗୋଟିଏ ବଡ଼ ହଲ୍ ତିଆରି ହେଲା । ପରେ Sri S.R. Bomai ଭୁବନେଶ୍ୱରରୁ ରାଜ୍ୟସଭା ସଦସ୍ୟ ଏବଂ ଏଠାକାର ଜଣେ ସାମୟିକ ବାସିନ୍ଦା ହୋଇଥିବାରୁ ଆମର ଏଠାକାର ଜଣେ ବରିଷ୍ଠ ସଭ୍ୟ ଶ୍ରୀ ବୁଦ୍ଧିରାମ ସାହୁଙ୍କ ଅକ୍ଳାନ୍ତ ଉଦ୍ୟମ ଯୋଗେ M.P.LADରୁ ଟଙ୍କା ଆଣି ଉପର ହଲଟି ତିଆରି ହୋଇଛି । ଏହି ମନ୍ଦିର ନିର୍ମାଣରେ ଯେଉଁ ମୁଖ୍ୟ ବ୍ୟକ୍ତିମାନେ ଆଗଭର ହୋଇ କାମ କରିଛନ୍ତି ଏବଂ ନେତୃତ୍ୱ ନେଇଛନ୍ତି, ସେମାନେ ହେଲେ ସ୍ୱର୍ଗତ ଦୁଲାଳ ଚନ୍ଦ୍ର ପରମାଣିକ, ସତ୍ୟନାରାୟଣ ପଟ୍ଟନାୟକ, ବାଉରୀବନ୍ଧୁ ଦାଶ, ଭାବଗ୍ରାହୀ ଦାସ ପ୍ରଭୃତି । ମନ୍ଦିର ଆରମ୍ଭ କରିଥିଲେ ବାଉରୀବନ୍ଧୁ ଦାଶ ଏବଂ ପୂର୍ଣ୍ଣାଙ୍ଗ କରିଥିଲେ ଭାବଗ୍ରାହୀ ଦାସ । ଶେଷୋକ୍ତ ଭାବଗ୍ରାହୀ ଦାସ ମୋର ଜ୍ୟେଷ୍ଠଭ୍ରାତା ସଦୃଶ । ସେ ଏଲ୍.ଆଇ.ସି.ରେ ସାମାନ୍ୟ ଏଜେଣ୍ଟ ଭାବେ କାର୍ଯ୍ୟ ଆରମ୍ଭ କରି ଶେଷରେ ଭୁବନେଶ୍ୱର ବ୍ରାଞ୍ଚ ମ୍ୟାନେଜର ହୋଇ ଅବସର ନେଇଥିଲେ । ତାଙ୍କର ଅବସର ନେବାବେଳେ ଏଲ୍.ଆଇ.ସି. କର୍ମଚାରୀମାନେ ଭବ୍ୟ ବିଦାୟକାଳୀନ ଉତ୍ସବର ଆୟୋଜନ କରିଥିଲେ । ଯେଉଁ

ବିଦାୟକାଳୀନ ବାର୍ତ୍ତା ଏବଂ ଉପଢୌକନ ଦେଇଥିଲେ ତାହା ଭାବଗ୍ରାହୀ ବାବୁ ମୋତେ ଦେଖାଇଥିଲେ । ତାହା ପଢ଼ିଲା ପରେ ମୋର ତାଙ୍କ ପ୍ରତି ସମ୍ମାନ ଦ୍ୱିଗୁଣିତ ହୋଇଗଲା । ଗୋଟିଏ ସର୍ବସାଧାରଣ ଅନୁଷ୍ଠାନରେ ଲୋକମାନଙ୍କୁ ପ୍ରେରଣା ଦେଇ ଅର୍ଥ କିପରି ଆଦାୟ କରିବାକୁ ହୁଏ, ତାର କୌଶଳ ତାଙ୍କୁ ଭଲଭାବେ ଜଣା । ପ୍ରଥମେ ପ୍ରଥମେ ବୁଝାମଣା ଅଭାବରୁ ତାଙ୍କ ସଙ୍ଗେ ମୋର ସାମାନ୍ୟ ମନାନ୍ତର ହେଉଥିଲା । ମାତ୍ର ମୁଁ ଯେତେବେଳେ ଦେଖିଲି ଯେ ତାଙ୍କର ଓ ମୋର ଲକ୍ଷ୍ୟ ଏକ, ଅନୁଷ୍ଠାନର ଉନ୍ନତି, ତେଣୁ ସହଯୋଗର ହାତ ବଢ଼ାଇ ଦୁହେଁ ଏକ ମନ ଏକ ପ୍ରାଣରେ ପରସ୍ପରର ପୂର୍ଣ୍ଣ ସହଯୋଗ ଓ ସମର୍ଥନରେ କାମରେ ଅଗ୍ରସର ହେଲୁ । ଭାବଗ୍ରାହୀ ବାବୁ ଓଡ଼ିଆ ଓ ବଙ୍ଗାଳୀ ଉଭୟମାନଙ୍କରେ ଅତି ଧୁରନ୍ଧର । ଟଙ୍କା ଆଦାୟ କରିବାର ଦାୟିତ୍ୱ ନେଇଥିବା ନେତାମାନଙ୍କର ପଣ୍ଡା ହେବା ଉଚିତ- ଦେବ, ଦିଆଇବ, ଦେ ବୋଲି କହିବ । ତେଣୁ କେତେକ ଜାଗାରେ ଫୋନରେ କଥାବାର୍ତ୍ତା କରି ଟଙ୍କା ପାଇବା ଆଗରୁ ରସିଦ କାଟିବାକୁ ହୁଏ । ବହୁତ ଲୋକ ପ୍ରତିଶ୍ରୁତି ମୁତାବକ ଟଙ୍କା ଦେଇଦିଅନ୍ତି । ମାତ୍ର ଯଦି ଅଳ୍ପ କେତେକ ସ୍ଥାନରେ ଟଙ୍କା ଆଦାୟ ନ ହେଲା, ତାହା ହାତରୁ ଭରଣା କରି କିଂବା ମୁଣ୍ଡା ରସିଦ ସହ ଗୁଡ଼ି cancelled ବୋଲି ଲେଖି ଦାଖଲ କରି ଦେଲେ ଅଡ଼ିଟରେ ଗୃହୀତ ହେବ । ଅଡ଼ିଟ୍ କରୁଥିଲେ ଶ୍ରୀ ସୁଧାକର ସ୍ୱାଇଁ । ସେ ଆମ ଲୋକାଲ୍ ଫଣ୍ଡର ଅଡ଼ିଟର ଜଣେ ସମର୍ପିତ ଦକ୍ଷ ଅଡ଼ିଟ୍ ଅଫିସର । ସେ ପ୍ରାୟ ୧୫/୧୬ ବର୍ଷ ଅଡ଼ିଟ୍ କରିଛନ୍ତି । ତାଙ୍କ ପରି ଏତେ ପରିଶ୍ରମ କେହି କରି ପାରିବେ ନାହିଁ । ସକାଳ ୯ ଘଣ୍ଟା ବେଳକୁ ସାମାନ୍ୟ ଜଳଯୋଗ କରି ଆସି ଦିନ ୨ଟା ବେଳେ ମନ୍ଦିରରେ ଶାକାହାରୀ ସାମାନ୍ୟ ପ୍ରସାଦ ସେବନ । ଦୀର୍ଘ ୭ ଦିନ କାଳ ଲାଗେ । କେଉଁଠି ଯଦି ଭୁଲ୍ ଭଟକା ରହିଯାଇ ଥାଏ, ତାହେଲେ ସଙ୍ଗେ ସଙ୍ଗେ ସଂଶୋଧନ । ଅଡ଼ିଟ୍ ପରେ ମୁଖିଆ ମୁଖିଆ କାର୍ଯ୍ୟକାରୀ କମିଟିର ସଭ୍ୟମାନଙ୍କୁ ଡାକି ଅଡ଼ିଟର ନିର୍ଣ୍ଣୟରେ ଆଲୋଚନା କରନ୍ତି । ସମସ୍ତେ ସେହି ପ୍ରସାଦ ସେବନ କରନ୍ତି । ମୋର ମନେ ହେଲା, ଜୀବନରେ ଅର୍ଥ ଉପାର୍ଜନ ବଡ଼ ନୁହେଁ, ବଡ଼ ହେଉଛି ଭଗବଦ୍ ଭକ୍ତି, ଲୋକମାନଙ୍କ ଠାରୁ ସମ୍ମାନ ଅର୍ଜନ, ଲୋକପ୍ରିୟତା । ସେହି ଭଗବତ ଭକ୍ତିରୁ ଲୋକମାନଙ୍କ ପ୍ରତି ସ୍ନେହ ଓ ଆଦର ଜାଗ୍ରତ ହୁଏ ।

ଶ୍ରୀ ମା ଭୁବନେଶ୍ୱରୀ ମନ୍ଦିରରେ କେତେଗୁଡ଼ିଏ ପ୍ରସିଦ୍ଧ ପର୍ବ ପର୍ବାଣୀ ପାଳିତ ହୁଏ । ସେଗୁଡ଼ିକ ହେଲା ଦୁର୍ଗାପୂଜା, ଶିବ-ପାର୍ବତୀ ବିବାହ, ଶିବରାତ୍ରି, ମନ୍ଦିର ପ୍ରତିଷ୍ଠା ଉତ୍ସବ ସହିତ ସାଂସ୍କୃତିକ ସପ୍ତାହ ପାଳନ, ମେମ୍ବରମାନଙ୍କର ସାଧାରଣ ଅଧିବେଶନ

ଇତ୍ୟାଦି । ଏଥିରେ ମୁଖ୍ୟ ହେଉଛି ଦୁର୍ଗାପୂଜା । ଦୁର୍ଗାପୂଜାର ମାସକ ପୂର୍ବରୁ ଆୟୋଜନ ହୁଏ । ରସିଦ୍ ଛପାଇବା, କାର୍ଯ୍ୟକ୍ରମ ପ୍ରସ୍ତୁତ କରିବା, ଉପଯୁକ୍ତ ବ୍ରାହ୍ମଣ ପୁରୋଧା ଓ ତାଙ୍କର ସହକର୍ମୀଙ୍କୁ ଡକାଇବା, ଆମ ଦେଶୀୟ ବାଜା, ଢୋଲ, ମହୁରୀ, ତେଲିଙ୍ଗି ବାଜା ଏହିପରି ୪ ଜଣ ବାଜାବାଲା ଦୀର୍ଘ ୪ ଦିନ ରହନ୍ତି । ଆହୂତି ପାଇଁ ପ୍ରାୟ ୫ କେ.ଜି. ଘିଅ, କ୍ଷୀର, ପରିବାପତ୍ର, କଦଳୀ, ସେତେବେଳେ ମିଳୁଥିବା ଫଳ ଇତ୍ୟାଦି ପୂଜା କରାଯାଏ । ଦୁର୍ଗାପୂଜା ଦିନ ପ୍ରବଳ ଭିଡ଼ । ଦୁର୍ଗାପୂଜା ୫ ଦିନ ହୁଏ । ପୀଠେ ଦୁର୍ଗାପୂଜା ୪ ଦିନ, ମୃଣ୍ମୟୀ ଦୁର୍ଗାପୂଜା ମୂର୍ତ୍ତି ସ୍ଥାପନ ୫ ଦିନ । ଏହାହିଁ ଶାସ୍ତ୍ରୀୟ ବିଧି । କାରଣ ମୃଣ୍ମୟୀ ମୂର୍ତ୍ତି ସ୍ଥାପନରେ ଷଷ୍ଠୀ ଦିନ କଳସ ଘଟ ସ୍ଥାପନ । ଏହିପରି ଆଉ ଗୋଟିଏ ଅଧିକ କର୍ମ । ସେଥିଯୋଗୁ ଦୁର୍ଗାପୂଜା ପରି ନିଷ୍ଠା ଓ ପବିତ୍ର ପୂଜା ଅଦ୍ୱିତୀୟ । ଯେଉଁ ଘଡ଼ି ସନ୍ଧି ସଂକଟ ସମୟରେ ମା ପାର୍ବତୀ ମହୀଷାସୁର ଦାନବକୁ ବଧ କରି ଦେବକୁଳ ତଥା ସ୍ୱର୍ଗ ମର୍ତ୍ତ୍ୟ ପାତାଳକୁ ଧ୍ୱଂସମୁଖରୁ ରକ୍ଷା କରିଥିଲେ ତାହାକୁ ସନ୍ଧି କୁହାଯାଏ । ତାହା ଆଶ୍ୱିନ ଶୁକ୍ଳ ଅଷ୍ଟମୀ ଏବଂ ନବମୀ ଏହି ଦୁଇ ତିଥିର ପରିବର୍ତ୍ତନ ସମୟରେ ପଡ଼େ । ପାଞ୍ଜିରେ ସ୍ପଷ୍ଟ ଦର୍ଶା ଯାଇଥାଏ । ସନ୍ଧି ପ୍ରାୟ ରାତି ୨ ଘଣ୍ଟାରୁ ୪ ଘଣ୍ଟା ଭିତରେ ପଡ଼ିଥାଏ । ପୁରୋଧା, କର୍ତ୍ତା ଓ ତାଙ୍କ ସହଧର୍ମିଣୀ, ବାଜାବାଲା ତାଙ୍କ ସହିତ ରାତି ଅଧରେ ପ୍ରାୟ ୨୦୦ ଲୋକ ଉପସ୍ଥିତ । ହରିବୋଲ ହୁଳହୁଳିରେ ମନ୍ଦିର ମୁଖରିତ । ଉପସ୍ଥିତ ଭକ୍ତମାନଙ୍କ ମନରେ ଅବର୍ଣ୍ଣନୀୟ ଭକ୍ତି, ପ୍ରେମ, ଉତ୍ସାହ ଓ ଉନ୍ମାଦନା । ମୋତେ ଲାଗେ ସ୍ୱୟଂ ମା ଭୁବନେଶ୍ୱରୀ କୈଳାସପୁରୀରୁ ଅବତରଣ କରି ଆସିଛନ୍ତି । ସନ୍ଧିପୂଜାରେ ମାତ୍ର ୨/୪ ଜଣଙ୍କ ବ୍ୟତୀତ ସମସ୍ତେ ବାହାରି ଆସନ୍ତି । ୧୫/ ୨୦ ମିନିଟ୍ ପରେ କୁଷ୍ମାଣ୍ଡ (ପାଣିକଖାରୁ) ବଳି ପଡ଼େ । ଆମ ଓଡ଼ିଶାରେ କେବଳ ମୋର ପରିଚିତ ଯାଜପୁରର ମା ବିରଜାଙ୍କ ପାଖରେ ମହିଷ ବଳି ପଡୁଥିଲା । ଏବେ ଚାରିଆଡ଼େ ବଳି ବନ୍ଦ ହେଲାପରେ ସେଠାରେ କ'ଣ ହେଉଛି କହିପାରିବି ନାହିଁ । ବଳିପ୍ରଥାର ବିରୋଧୀମାନେ କହନ୍ତି ସ୍ୱୟଂ ମା ଜଗଦମ୍ବା କଅଣ ଗୋଟିଏ ଜୀବର ବଳିରେ ସନ୍ତୋଷ ଜାତ ହେବା ଚାହାନ୍ତି । ସମର୍ଥକମାନେ ଯୁକ୍ତି ଦେଖାନ୍ତି କାହିଁକି କଂସେଇଖାନା ବା କିଲଖାନାରେ ପ୍ରତିଦିନ ଶହ ଶହ ନିରୀହ ପଶୁ ବଳି ପଡ଼ି ହୋଟେଲ୍ ଓ ଘରକୁ ଲୋକେ ବୋହି ନେଉଛନ୍ତି । ମୋଟ ଉପରେ ଜୀବ ବଧ ଗର୍ହିତ କାର୍ଯ୍ୟ । ମାତ୍ର ଧର୍ମ୍ ଓ ଯଜ୍ଞ ନାମରେ ପଶୁବଳି ଅତି ଗର୍ହିତ ।

ବାସ୍ତବିକ ଦୁର୍ଗାପୂଜାରେ ଆମମାନଙ୍କର ଏତେ ତନ୍ମୟତା ଆସେ ତାହା ଅବର୍ଣ୍ଣନୀୟ । ଆମର କାର୍ଯ୍ୟକାରୀ କମିଟିର ସମସ୍ତ ସଭ୍ୟ, ଆମର ବଦାନ୍ୟ ଲୋକେ

ଏବଂ ଏହି ପଡ଼ାର ବିଶିଷ୍ଟ ଡାକ୍ତର ଏବଂ ଅନ୍ୟାନ୍ୟ ଆଗନ୍ତୁକମାନଙ୍କୁ ଏକ ଭବ୍ୟ ପ୍ରସାଦ ଭୋଜିକୁ ନିମନ୍ତ୍ରଣ କରାଯାଇଥାଏ । ଆମର ଏ ମନ୍ଦିରର ପ୍ରସାଦ ଅତି ମୂଲ୍ୟବାନ ବା ଉଚ୍ଚକୋଟୀର ନ ହେଲେ ମଧ୍ୟ ସୁସ୍ୱାଦୁ । ନବମୀ ଦିନ ପ୍ରାୟ ୫୦୦ / ୬୦୦ ଭଦ୍ରବ୍ୟକ୍ତି ଆସନ୍ତି । ଅପରାହ୍ନ ଗୋଟାକଠାରୁ ୩ଟା ପର୍ଯ୍ୟନ୍ତ ପ୍ରସାଦ ସେବନ ଚାଲେ । ଦୁର୍ଗାପୂଜାରେ କେହି ପ୍ରସାଦ ନପାଇ ଅଖିଆ ଫେରନ୍ତି ନାହିଁ । କାରଣ ଏହା ମା ଜଗଦମ୍ବାଙ୍କ ଶାରଦୀୟ ଦୁର୍ଗାପୂଜାର ସମୟ । ଜଗତ ଉତ୍ସବମୁଖର । ଧାନ୍ୟ କ୍ଷେତ୍ରରେ ଶସ୍ୟ ପରିପୂର୍ଣ୍ଣ । ସାରାପୃଥିବୀ ମହାଆନନ୍ଦରେ ଉଚ୍ଛୁଳି ଉଠୁଛି । ଏପରି ଶୁଭ ସମୟରେ କାହାକୁ ଅଖିଆ ଫେରାଇ ଦେବା ଆମ ସଂସ୍କୃତି ବିରୁଦ୍ଧ ।

ଥରେ ଏକ ଅସୁବିଧା ପରିସ୍ଥିତି ଉପୁଜିଲା । ଗୋଟିଏ ଲେଡିଜ୍ ହଷ୍ଟେଲ୍‌ରେ ରହିଥିବା ପ୍ରାୟ ୬୦ ଜଣ ଓଡ଼ିଶା ଓ ଅନ୍ୟ ରାଜ୍ୟର ଝିଅ ବିଭିନ୍ନ ପ୍ରାନ୍ତରୁ ଅନିମନ୍ତ୍ରିତ ଆସି ଦିନ ୧୨ଟା ବେଳେ ହାଜର । ଆମ୍ଭମାନଙ୍କୁ ଅନୁରୋଧ କଲେ, ''ମଉସାମାନେ, ଆମେ ସମସ୍ତେ ଆଜି ଦୁର୍ଗାଷ୍ଟମୀ ବ୍ରତ ପାଳିଛୁ । ଆମ୍ଭମାନଙ୍କର ବହୁତ ଇଚ୍ଛା ଆଜି କେଉଁଠି ସାମାନ୍ୟ ଦେବୀ ପ୍ରସାଦ ଖାଇବୁ ବୋଲି । ଆପଣମାନେ ଆମ୍ଭଙ୍କୁ ସାହାଯ୍ୟ କରି ଆଶା ପୂରଣ କରିପାରିଲେ ଆମେ କୃତାର୍ଥ ହେବୁ ।'' ଆମେ ପରଷିବା ଲୋକଙ୍କୁ ପଚାରିବାରୁ ସେମାନେ କହିଲେ, ''ଆମେ ୫୦୦ ଲୋକଙ୍କ ପାଇଁ ପ୍ରସାଦ କରିଛୁ, ଆହୁରି ୬୦ ଜଣ ଝିଅ ପୁଣି ଉପାସିଆ ଖାଇଲେ, ନିଅଣ୍ଟ ହେବ । ମାତ୍ର ଗୋଟିଏ କାମ କଲେ ଏହାର ସମାଧାନ ହୋଇପାରିବ । ଡାଲି, ଶାଗ, ଖଟା, କ୍ଷୀରୀ ପ୍ରଭୃତି କଣ୍ଟ୍ରୋଲ୍ କରି ମୂଳରୁ ପରଷିଲେ ଯଥା ତଥା ହୋଇଯିବ । ମାତ୍ର ଅନ୍ନ ନିଅଣ୍ଟ ହେବ । ଆଉ ୧୦ କେ.ଜି. ଚାଉଳ ରାନ୍ଧିବାକୁ ପ୍ରସ୍ତୁତ ହୋଇଯିବା କଥା । ଚାଉଳ ଅଛି, ପାଣି ଫୁଟୁଥାଉ, ଆମର ଲୋକେ ଓ ପ୍ରସାଦ ଟିଫିନ୍ ସରିଗଲା ପୂର୍ବରୁ ଅନ୍ନର ପରିମାଣ ଦେଖି ଆଉ କିଛି ଭାତ ରାନ୍ଧିଦେଲେ ପିଲାମାନେ ପ୍ରସାଦ ପାଇ ସନ୍ତୁଷ୍ଟ ହୋଇଯିବେ । ଆମେ ସେଇଆ କଲୁ । ଝିଅମାନେ ଅପରାହ୍ନ ୨ଟା ବେଳେ ଆସିଲେ । ଆମେ କହିଲୁ, ମା ମାନେ ଆସ । ବହୁ କଷ୍ଟରେ ଅନ୍ୟମାନଙ୍କୁ କମ୍ କମ୍ ଦେଇ ତୁମମାନଙ୍କ ପାଇଁ ସାମାନ୍ୟ ପ୍ରସାଦ ରଖିଛୁ । ଆମ ଓଡ଼ିଆରେ ପ୍ରବାଦ ଅଛି, ''ପ୍ରସାଦ ଆନନ୍ଦେ ଖାଇବ, ଅଳ୍ପ ବହୁତ ନ କହିବ ।'' ସେମାନେ ମହାଆନନ୍ଦରେ ଦିବ୍ୟ ପ୍ରସାଦ ଖାଇ ଆମକୁ ବହୁତ ଧନ୍ୟବାଦ ଦେଲେ ଏବଂ ମନା କରିବା ସତ୍ତ୍ୱେ କିଛି ଟଙ୍କା ଆମକୁ ବଳେଇ ଦେଇଗଲେ । ଏହା ହେଉଛି ଜଗନ୍ନାଥ ସଂସ୍କୃତି । ପଂକ୍ତି ଭୋଜନ । ଆମେ

ନିଜ ପରିବାର ମଧ୍ୟରେ ଯେତେ ସୁସ୍ୱାଦୁ ଦ୍ରବ୍ୟ ଭୋଜନ କଲେ ମଧ୍ୟ ଏହିପରି ଉତ୍ସବ ସମୟରେ ମନ୍ଦିର ପରିସରରେ ସାଙ୍ଗସାଥୀଙ୍କ ସଙ୍ଗେ ପଙ୍ଗତରେ ସାମାନ୍ୟ ଅନ୍ନ ଡାଲମାର ସ୍ୱାଦ ଓ ଆନନ୍ଦ ସ୍ୱତନ୍ତ୍ର । ଏହାଠାରୁ ଆଉ ଅଧିକ ଆନନ୍ଦମୟ ଅନୁଭୂତି କଅଣ ହୋଇପାରେ ?

ଦୁର୍ଗାପୂଜାର ଉତ୍ସବ ମଧ୍ୟରେ ନିଜର ସ୍ୱାର୍ଥପରତାକୁ ଜଳାଞ୍ଜଳି ଦେଇ ଆମେ ଯେଉଁ କର୍ମୀମାନଙ୍କର ଅଦମ୍ୟ ଉତ୍ସାହ ଓ କାର୍ଯ୍ୟ ଦକ୍ଷତା ଅତି ଉଚ୍ଚ ସ୍ତରର ହୋଇଥାଏ ସେମାନଙ୍କୁ ବିଜୟା ଦଶମୀ ବା ଦଶହରାରେ ସାମାନ୍ୟ ପ୍ରସାଦ ଦେଇ ସମସ୍ତେ ପରସ୍ପରର ଶୁଭ ମନାସି ଦୁର୍ଗାପୂଜା ଉଦ୍‌ଯାପନ କରୁ ।

ଏହି ପ୍ରସଙ୍ଗରେ ଶ୍ରୀ ଶ୍ରୀ ରାମକୃଷ୍ଣ ପରମହଂସଙ୍କର କେତୋଟି ବାଣୀ ଓ କାହାଣୀ ଉଲ୍ଲେଖ ନକରି ରହି ପାରୁନାହିଁ । ସେ କହିଥିଲେ, ''ବିଶ୍ୱାସେ ମିଳଇ ପ୍ରଭୁ, ତର୍କେ ବହୁ ଦୂର ।'' ତାଙ୍କର ପଟ୍ଟଶିଷ୍ୟ ନରେନ୍ଦ୍ର, ପରିବର୍ତ୍ତିତ ନାମ ସ୍ୱାମୀ ବିବେକାନନ୍ଦ, ତାଙ୍କୁ ଆସି ପ୍ରଶ୍ନ କଲେ,''ଆପଣ ତ ସବୁବେଳେ ମା କାଳୀ, ମା କାଳୀ ବୋଲି ପାଗଳ ପରି ହେଉଛନ୍ତି, ତାଙ୍କୁ ମୋତେ ଦେଖାଇ ଦେଇପାରିବେ ?'' ସେ କହିଲେ, ''ନିଶ୍ଚୟ । ତୁ ଆଜି ରାତିରେ ଦକ୍ଷିଣେଶ୍ୱର ମନ୍ଦିରରେ ଏହି ସ୍ଥାନରେ ରହ । ମୁଁ ଯାହା କହିବି କରିବୁ ।'' ସେହି ଅନୁସାରେ ନରେନ୍ ନିଜ ଗୁରୁଙ୍କ ସହ ରାତି ୧୨ଟା ବେଳେ ଧ୍ୟାନରେ ବସିଲେ । ଝରକା କବାଟ ବନ୍ଦ କରି ଲାଇଟ୍ ଲିଭାଇ ଦେଲେ । ମା କାଳୀ ସ୍ୱୟଂ ସ୍ୱଶରୀରେ ଆବିର୍ଭୂତା ହୋଇଗଲେ । ନରେନ୍ ପିଲା ଲୋକ । ତଟସ୍ଥ ହୋଇଗଲେ । ଛିଡ଼ା ହେବାକୁ ଉଦ୍ୟମ କରିବାରୁ ଶ୍ରୀ ରାମକୃଷ୍ଣ ତାଙ୍କୁ ଇଙ୍ଗିତରେ ବସାଇ ଦେଲେ । ରାମକୃଷ୍ଣ ମା କାଳୀଙ୍କୁ ପ୍ରାର୍ଥନା କଲେ । ଅଳ୍ପ ସମୟ ପରେ ମା କାଳୀ ଅନ୍ତର୍ଦ୍ଧାନ ହୋଇଗଲେ । ସେହିପରି ଆମେ ବିଶ୍ୱାସ କଲେ ଏହି ପ୍ରସ୍ତର ମୂର୍ତ୍ତିରୁ ସ୍ୱୟଂ ମହିଷମର୍ଦ୍ଦିନୀ ଦୁର୍ଗାଙ୍କର ରୂପ ଦର୍ଶନ କରିପାରିବା । ଏହି ଦୁର୍ଗାପୂଜା ମଧ୍ୟରେ ବହୁତ ଲୋକଙ୍କର ସେହି ଭାବନା ଜାଗ୍ରତ ହୁଏ ।

ଏହିସବୁ ଉତ୍ସବ ବ୍ୟତୀତ ଆମ ସମିତି ମାଧ୍ୟମରେ ପ୍ରାକୃତିକ ବିପର୍ଯ୍ୟୟ ବେଳେ ଆମେ ରନ୍ଧାଖାଦ୍ୟ, ବିଶୁଦ୍ଧପାଣି, ଔଷଧ, ବିସ୍କୁଟ୍ ପ୍ରଭୃତି ଶିଶୁଖାଦ୍ୟ ବିତରଣ କରିଛୁ । ଯେଉଁ କର୍ମୀମାନେ ଯାଇ ସ୍ୱେଚ୍ଛାସେବକ ଭାବେ ବାତ୍ୟାଞ୍ଚଳରେ ଓ ବନ୍ୟାଞ୍ଚଳରେ ପୁଣ୍ୟାତ୍ମା ଉତ୍କଳମଣି ଗୋପବନ୍ଧୁଙ୍କ ପରି ରିଲିଫ ବଣ୍ଟନ କାର୍ଯ୍ୟ କରିଛନ୍ତି, ସେମାନେ ମଧ୍ୟ ଭଗବାନଙ୍କ ଆଶୀର୍ବାଦ ଓ ମା'ଙ୍କ କରୁଣା ଲାଭ କରିଛନ୍ତି ଓ କରିବେ ।

ଏହିପରି ଅବସରରେ ମୋର ଏକମାତ୍ର ପୁତ୍ରର ଅକାଳ ବିୟୋଗରେ ମୁଁ ଓ ମୋର ସ୍ତ୍ରୀ ଦୁଃଖ ଶୋକ କଥା ପଛରେ ପକାଇ ଧର୍ମ ଏବଂ ସାମାଜିକ କର୍ମରେ ଲାଗିଗଲୁ । ତେଣୁ ଅନେକାଂଶରେ ସେହି ଦାରୁଣ ପୁତ୍ର ବିୟୋଗ ଜନିତ ଶୋକ ଭୁଲିବାକୁ ସମର୍ଥ ହେଲୁ । ସେହି ପୁତ୍ରକୁ ଯଥାସାଧ୍ୟ ଚେଷ୍ଟା ସତ୍ତ୍ୱେ ଭଲ କରି ନ ପାରି ଯମ ମୁଖରୁ ଛଡ଼ାଇ ଆଣି ପାରିଲୁ ନାହିଁ । ସେଥିଯୋଗୁ ଭାଗବତରେ ଅଛି, ''ବିଧିର ବିଧାନ, କେ କରିବ ଆନ ।'' ଆମର ଭାଗ୍ୟ ପୂର୍ବ ଜନ୍ମର କର୍ମ ଫଳ ଓ ଭଗବତ ପ୍ରେରିତ  ବୋଲି ଗ୍ରହଣ କରି ନେଇଛୁ ।

ଭୁବନେଶ୍ୱରୀ ମନ୍ଦିରରେ ମୁଁ ସଭାପତି ଭାବେ ୨୫ ବର୍ଷ କାମ କରିଛି । ମୋର ଶକ୍ତିମତେ ପରିଶ୍ରମ, ଦାନ ଏବଂ ଅର୍ଥ ଯୋଗାଡ଼ କରିଛି । ମୋର ବହୁତ ଲୋକଙ୍କ ସଙ୍ଗେ ପରିଚୟ ଏବଂ ବନ୍ଧୁତା । କେବେ କେମିତି ଭୁଲ୍ ଭଟକା ହୋଇଯାଏ । ସେଥିପାଇଁ କ୍ଷମା ପ୍ରାର୍ଥନା ମାଗି ଏବଂ ଅନୁତାପ କରି ମୁଁ ଲକ୍ଷ୍ୟ ଦିଗରେ ଆଗେଇଯାଇଛି । ଭାବଗ୍ରାହୀ ଦାସ ପ୍ରାୟ ୧୫/୧୬ ବର୍ଷ ଅଦମ୍ୟ ଉତ୍ସାହର ସହିତ ସଂପାଦକ କାର୍ଯ୍ୟ ତୁଲାଇ ଇହଧାମ ପରିତ୍ୟାଗ କଲେ । ତା ପୂର୍ବରୁ ତାଙ୍କ ବଡ଼ ପୁଅଟି ତାଙ୍କୁ ଛାଡ଼ି ପରପାରିକୁ ଚାଲିଯାଇଥିଲା । ସେଥିଯୋଗୁଁ ସେ ଓ ତାଙ୍କ ସ୍ତ୍ରୀ ଦୁଃଖରେ ଭାଙ୍ଗିପଡ଼ିଲେ । ତାଙ୍କର ସହଯୋଗ ଓ ସାହାଯ୍ୟ ନପାଇଥିଲେ ମନ୍ଦିର ସାଂସ୍କୃତିକ ଭବନର ତଳମହଲା ହୋଇପାରି ନଥାନ୍ତା । କୌଣସି ଅନୁଷ୍ଠାନ ନିମନ୍ତେ ଉଭୟ ସଭାପତି ଏବଂ ସଂପାଦକ ଏକ ମନ ଏକପ୍ରାଣ ହୋଇ କାମ ନ କଲେ କାର୍ଯ୍ୟ ସଫଳ ହୁଏ ନାହିଁ । ଆଉ ମଧ୍ୟ ନିଜେ ଆଗଭର ନ ହେଲେ ଅନ୍ୟ ଲୋକଙ୍କଠାରୁ ସାହାଯ୍ୟ ଓ ସମର୍ଥନ ପାଇବ ନାହିଁ । ତାଙ୍କ ପରେ ସଂପାଦକ ହେଲେ ଶ୍ରୀ ପଦ୍ମଚରଣ ମହାନ୍ତି । ସେ ଯାଜପୁର ବିଂଝାରପୁରର ଲୋକ ଏବଂ ତାଙ୍କ ପୁଅମାନେ ମୋତେ ବହୁତ ସମ୍ମାନ କରନ୍ତି । ସେମାନଙ୍କୁ ମୋର ଅଶେଷ ଆଶୀର୍ବାଦ ଓ ଶୁଭେଚ୍ଛା ।

୨୫ ବର୍ଷ ପରେ ରୌପ୍ୟ ଜୁବୁଲି ପାଳନ କରି ମୁଁ ହାତ ଯୋଡ଼ି ସମସ୍ତଙ୍କୁ କୃତଜ୍ଞତା ଜଣାଇ ୨/୩ ବର୍ଷ ହେଲା ସେଠାରୁ ବିଦାୟ ନେଲି । ବର୍ତ୍ତମାନର ସଭାପତି ବରିଷ୍ଠ ସାମ୍ବାଦିକ ଶ୍ରୀ ପ୍ରଦୋଷ ପଟ୍ଟନାୟକ । ସଂପାଦକ ହେଉଛନ୍ତି ଶ୍ରୀ ଅଯୋଧ୍ୟା ନାରାୟଣ ମହାନ୍ତି । ସେ ୦୪॥ରେ ପଡ଼ୋଶୀ ଶ୍ରୀ ଗୌରଚନ୍ଦ୍ର ମହାନ୍ତିଙ୍କର ପୁତ୍ର ଓ ମୋର ପୁତ୍ର ସମାନ । ତାଙ୍କର ଅଦମ୍ୟ ଉତ୍ସାହ ଓ ପରିଶ୍ରମ ଫଳରେ ମନ୍ଦିରର ଅନେକ ଉନ୍ନତି ହୋଇଛି ଏବଂ ସୁଚାରୁରୂପେ ଚାଲିଛି । ଏହାହିଁ ଆମର ଜୀବନବ୍ୟାପୀ କାର୍ଯ୍ୟର ସଫଳତା ଏବଂ ଗର୍ବ । ଯେଉଁ ଅନୁଷ୍ଠାନ ଆମେ ଆରମ୍ଭ କରିଛୁ, ଆମେ ଚାଲି ଆସିଲାପରେ ମଧ୍ୟ ଉପଯୁକ୍ତ ଲୋକ ହାତରେ ପଡ଼ିଲେ ତାହା ଉତ୍ତରୋତ୍ତର ଉନ୍ନତି କରିବା ନିଃସନ୍ଦେହ ।

# ମୋର ଏକମାତ୍ର ପୁତ୍ର ରୋଗଗ୍ରସ୍ତ ଏବଂ ଇହଧାମ ପରିତ୍ୟାଗ

ଇଂରାଜୀରେ ଗୋଟିଏ କଥା ଅଛି "If you laugh, the world will laugh with you. If you cry, you will cry alone."

ସେହିପରି ମୋର ଦୁଃଖଦ ଘଟଣାଗୁଡ଼ିକ ବିଶଦ ବର୍ଣ୍ଣନା କରି ପାଠକମାନଙ୍କୁ ଭାରାକ୍ରାନ୍ତ କରିବା ବା ମନରେ ଦୁଃଖ ଦେବା ଅନାବଶ୍ୟକ । ମାତ୍ର ସେଥିରେ ଯେଉଁ ଭଦ୍ରଲୋକମାନେ ମୋତେ ସଂକଟ ସମୟରେ ସାହାଯ୍ୟ କରିଥିଲେ ସେମାନଙ୍କ ନାମ ଉଲ୍ଲେଖ ନ କଲେ କୃତଘ୍ନତା ହେବ । ରାଉରକେଲା ରିଜିଓନାଲ୍ ଇଂଜିନିୟରିଂ କଲେଜରେ ନାମ ଲେଖାଇଲାବେଳେ ରାଗିଂରେ ତାର ଡାହଣ ଗୋଡ଼ର ଜଂଘହାଡ଼ ଭାଙ୍ଗି ଯାଇଥିଲା । ୬ ମାସ ଶଯ୍ୟାଶାୟୀ ହୋଇଗଲା । ବହୁ ଆୟାସ ଏବଂ ଔଷଧ ସେବନ ପରେ ତାକୁ ଭାରତର କେତେକ ସ୍ୱନାମଧନ୍ୟ Orthopaedic doctor ଙ୍କ ପାଖକୁ ନେଇ ପରାମର୍ଶ କରିଥିଲି । ପ୍ରଥମେ ଯାଇଥିଲି ପାଟନା କଦମକୁଆର ସ୍ୱନାମଧନ୍ୟ Orthopaedic doctor ଶ୍ରୀଯୁକ୍ତ ଜୟ ପ୍ରକାଶ ନାରାୟଣଙ୍କ ଘର ପାଖରେ ଅବସ୍ଥିତ Dr. Bishnu Mukhopadhyaଙ୍କ ପାଖକୁ, ପୂର୍ବରୁ appointment ନେଇ । ସେଠାରେ ପ୍ରାୟ ୧୦୦୦ ରୋଗୀ । ଦେଖାଇବା ବଡ଼ ଗହନ ବ୍ୟାପାର । ମାତ୍ର ପୂର୍ବରୁ ଆମର appointment ନିର୍ଦ୍ଧାରିତ ହୋଇଥିବାରୁ ଆମକୁ ଠିକ୍ ପୂର୍ବାହ୍ଣ ୧୧ଟାରେ ଡକାଗଲା । ଡାକ୍ତରଙ୍କ ପାଖକୁ ଯିବାକୁ ହେଲେ ଚାରିଗୋଟି ଜାଗାରେ ଦେଖାଇବାକୁ ପଡ଼ିଲା । ସେମାନେ ସବୁ କାଗଜ ଚେକ୍ କରି ମତାମତ ଦେଲେ । ତାଙ୍କ ଜୁନିୟର ୪ ଜଣ ଡାକ୍ତରଙ୍କୁ ଦେଖାଇଲେ । Diagnosis ବା ରୋଗ ନିର୍ଦ୍ଧାରିତ ହେଲା । ଏହା ରେଗିଂ ଯୋଗୁ ହୋଇଛି । ମାତ୍ର ପୂର୍ବରୁ Arthritis ରୋଗ ଥିଲା । ତେଣୁ କେବଳ ଅତି ସୁଲଭ ମେଡ଼ିସିନ୍ ଖାଇବାକୁ କହିଲେ । Regular exercise ବା Physiotherapy କରିବାକୁ କହିଲେ । ପୁଣି ୩ ମାସ ପରେ ଆସ । Dr Bishnu Mukhopadhya ଙ୍କ ପରି ଡାକ୍ତର ରୋଗୀକୁ ଆରୋଗ୍ୟ କରିବା, ଡାକ୍ତରୀ ସେବାରେ ନିଜର ଜୀବନ ଉତ୍ସର୍ଗ କରିବା, ନିଜର ଜୁନିଅର ଡାକ୍ତରମାନଙ୍କୁ ଟ୍ରେନିଂ ଦେବାରେ ସେ ବିଂଶ ଶତାବ୍ଦୀରେ ସର୍ବୋତ୍କୃଷ୍ଟ । ସେ Patna Medical Collegeରେ ୩୫ ବର୍ଷ ଧରି

ପ୍ରଫେସର ହୋଇଥିବା ସ୍ୱନାମଧନ୍ୟ Orthopaedics ଡକ୍ଟର । ତାଙ୍କ କଥା ମନେ ପଡ଼ିଲେ ଆଜିକାଲି ଡକ୍ଟରମାନେ କେତେ ନିମ୍ନ ସ୍ତରର ଅଛନ୍ତି, ଆଶ୍ଚର୍ଯ୍ୟ ଲାଗେ ।

ମୁଁ ଦ୍ୱିତୀୟ ଥର ମୋର ପୁତ୍ର ଜ୍ୟୋତିରଂଜନକୁ ନେଇ ପାଟନା ଯାଇଥିଲି । ସେ ପଚାରିବାରୁ ରଂଜୁ କହିଲା କିଛି ବିଶେଷ ଉପକାର ହେଉନାହିଁ । ଅବଶ୍ୟ ମୋ ପୁତ୍ରର ଆଳସ୍ୟପରାୟଣତା ଓ exercise ଅଭାବରୁ ହେଲା ଭାବି ଡକ୍ଟର ତାକୁ କହିଲେ, ''ତୁମେ Dr. Dholakia, Bombayଙ୍କ ପାଖକୁ ଯାଅ । ସେଠାରେ ତାଙ୍କୁ ପରାମର୍ଶ କର । ମୁଁ ତାଙ୍କୁ ଫୋନ୍ କରିବି ।'' ଆମେ ବମ୍ବେ ଯାଇ Dr. Dholakia କୁ ପରାମର୍ଶ କଲୁ । Dr. Dholakia କହିଲେ, ''ତୁମେ ୫ ଲକ୍ଷ ଟଙ୍କା ଯୋଗାଡ଼ କରି ଆସ, ଅପରେସନ୍ କରିଦେବି । ମାତ୍ର ଫଳାଫଳ ଗ୍ୟାରେଣ୍ଟି ନାହିଁ । We doctors only treat, God cures." ମୋର ଜଣେ ଅତି ଅନ୍ତରଂଗ ବନ୍ଧୁ Mr Prafulla Pattanaik ମୋତେ ବାରଣ କଲେ । ଆପଣ All India Institue of Medical Sciences, ଦିଲ୍ଲୀରେ ଦେଖାନ୍ତୁ । ସେଠାକାର diagnosis ସର୍ବୋତ୍କୃଷ୍ଟ । ମୁଁ ସେହି ଅନୁସାରେ AIIMs, New Delhi କୁ ୬ ଥର ନେଇଛି । କେବଳ Outdoorରେ ଦେଖାଇବା ମଧ୍ୟ ମହା ଗହନ ବ୍ୟାପାର । ସେମାନେ କହିଲେ, Head of Deptt, Dr Daveଙ୍କୁ ଦେଖାନ୍ତୁ । Dr. Dave ଙ୍କୁ ୩/୪ ଥର ଦୌଡ଼ିଲା ପରେ ଦେଖା କଲି । ସେ କହିଲେ, ଏହି କେସ୍‌ରେ hip joint operation ଆବଶ୍ୟକ । ମାତ୍ର ଆଗ indoor admission ହେବ । ସେଥିପାଇଁ ୩/୪ ମାସ ଅପେକ୍ଷା କରିବାକୁ ହେବ । ପ୍ରାୟ ଏକ ମାସ ଅପେକ୍ଷା କରିବା ପରେ ମୁଁ ହତୋତ୍ସାହ ହୋଇ ଆମ ଓଡ଼ିଶାର ସମ୍ବଲପୁର ବରଗଡ଼ର ଏମ୍.ପି. ଡକ୍ଟର କୃପାସିନ୍ଧୁ ଭୋଇଙ୍କୁ ଦେଖା କରିବାକୁ ତାଙ୍କ ଏମ୍.ପି. କ୍ୱାଟର୍‌କୁ ଗଲି ।

ଡଃ କୃପାସିନ୍ଧୁ ଭୋଇଙ୍କ ପରି ପରୋପକାରୀ ସାହାଯ୍ୟକାରୀ ଏମ୍.ପି. ବାସ୍ତବିକ ବିରଳ । ତାଙ୍କ ବୈଠକଖାନାରେ ପ୍ରାୟ ୫୦/୬୦ ଜଣ ଲୋକ । ମୁହୁର୍ମୁହୁ ଟେଲିଫୋନ୍ । ଓଡ଼ିଶାର ସବୁ ପ୍ରାନ୍ତରୁ ଲୋକ । ତାଙ୍କର ଅଞ୍ଚଳ, ଜାତି, ଧର୍ମ କୌଣସି ବାଛ ବିଚାର ନାହିଁ । କେଉଁ ଫରେଷ୍ଟ ଅଫିସରଙ୍କର ଡେରାଡୁନ୍‌ରେ ପୋଷ୍ଟିଂ । ସେ ଚାହୁଁଛନ୍ତି ଓଡ଼ିଶା ଆସିବାକୁ । ସଙ୍ଗେ ସଙ୍ଗେ ସଂପୃକ୍ତ ମନ୍ତ୍ରୀ ବା ଅଫିସରଙ୍କୁ ଫୋନ୍ କରି ଅତି ଭଦ୍ର ଭାବରେ ଅନୁରୋଧ । ପ୍ରତି ଘଣ୍ଟାକ ପରେ ୫୦ କପ୍ ଚା ଆସୁଛି । ସେ ନିଜେ ମଧ ବହୁତ ଚା ପିଅନ୍ତି । ମାତ୍ର ସମସ୍ତଙ୍କୁ ଚା ବିସ୍କୁଟ୍‌ରେ ଆପ୍ୟାୟିତ କରନ୍ତି । ତାଙ୍କ କ୍ୱାର୍ଟର୍ସରେ ପ୍ରାୟ ୫/୬ ଜଣ କ୍ୟାନ୍ସର ରୋଗୀ ନିଜ ନିଜର ଜଣେ

ଜଣେ ଲୋକ ଆଣି ମାସ ମାସ ଡେରା ପକାଇଥାନ୍ତି । ତାଙ୍କର ଜନସେବା ଦେଖି ମୁଁ ଆଶ୍ଚର୍ଯ୍ୟାନ୍ୱିତ ହେଲି । ସେ AIIMSର Director Boardରେ ସଭ୍ୟ । ବହୁତ ପ୍ରତିପତ୍ତି । ତାଙ୍କ ଠାରୁ ଲେଖା ଆଣି Dr Dave ଙ୍କୁ ଦେଖାଇବାରୁ ସେ ପ୍ରଥମେ ବିରକ୍ତି ପ୍ରକାଶ କଲେ । ତୁମେ କାହିଁକି ଡଃ କୃପାସିନ୍ଧୁ ଭୋଇଙ୍କ ପାଖକୁ ଯାଇ ଲେଖା ଆଣିଲ ? ମୁଁ ଅତି ଅନୁନୟ ବିନୟ ହୋଇ କହିଲି, ''ମୁଁ ଜଣେ ଓଡ଼ିଶା ସରକାରଙ୍କର ରିଟାୟାର୍ଡ଼ ଅଫିସର । ସମ୍ବଲପୁର ଅଞ୍ଚଳରେ ବହୁତ ଦିନ ରହିଛି ଏବଂ ତାଙ୍କ ସଙ୍ଗରେ ପରିଚୟ ଅଛି । ତେଣୁ ଏଠାରେ ବହୁତ ଡେରି ହେବାର ଜାଣି ମୁଁ ତାଙ୍କୁ ଆପ୍ରୋଚ୍ କରିଛି । ମୋର ଦୋଷ ମାର୍ଜନା କରନ୍ତୁ ।'' ଯାହାହେଉ ମୋର ଦୁଃଖ କହିଲାରୁ ସେ ହୃଦୟଙ୍ଗମ କରି ୨/୩ ଦିନ ଭିତରେ ପୁତ୍ରର ଆଡ଼ମିଶନ କରିଦେଲେ । ମାତ୍ର ଅପରେସନ୍ ପୂର୍ବରୁ ଡାକ୍ତରମାନେ ଷ୍ଟ୍ରାଇକ୍‌ରେ ଗଲେ । ତେଣୁ ଅଳ୍ପ କେତେଜଣ ସିରିୟସ୍ ପେସେଣ୍ଟଙ୍କ ବ୍ୟତୀତ ଅନ୍ୟ ସମସ୍ତଙ୍କୁ ବିଦାୟ କରିଦେଲେ । ଏହିପରି ୩/୪ ଥର ଦିଲ୍ଲୀ ଦୌଡ଼ିବା ପରେ ଅପରେସନ୍ ହେଲା । ଡକ୍ଟରମାନେ ଅକ୍ଳାନ୍ତ ପରିଶ୍ରମ କରନ୍ତି । ସକାଳ ୮ ଘଣ୍ଟାରେ ଆସନ୍ତି । ଦିନକୁ ୩ଟା ଅପରେସନ୍ । ପ୍ରଥମେ ଛୋଟ ଛୋଟ କେସ୍ ୨ ଘଣ୍ଟା ଭିତରେ ଶେଷ କରି ମୋର ପୁତ୍ରର ଅପରେସନ୍ କଲେ । Prosthesis ବା Artificial Part ଲାଗିଲା । 10 ଦିନ ପରେ Stitch ଖୋଲିଲେ । ପୁଣି ୮ ଦିନ ପରେ Plaster ଖୋଲିଲେ । ସେତେବେଳେ ଯେଉଁ ମେଥଡ୍ ଚାଲିଥିଲା ସେଥିରେ Dr. Dave ଆପ୍ରାଣ ଉଦ୍ୟମ କରିଛନ୍ତି । ତାଙ୍କୁ ମୋର ଅଶେଷ ଧନ୍ୟବାଦ । ପୁତ୍ର ଗଂଙ୍କୁର ଅଧାଅଧି ଭଲ ହେଲା । Walker ଧରି ସାମାନ୍ୟ ଚାଲିଲା । ମାତ୍ର ସେ ନିଜେ ଉଦ୍ୟମ କଲା ନାହିଁ । ଯାହା ହେଉ ଏତେ ପରିଶ୍ରମ ବୃଥା ହେଲା । ଶେଷକୁ ୧୯୮୭ ନଭେମ୍ବର ବଡ଼ଓଷା ଦିନ ଆମ୍ଭମାନଙ୍କୁ ଶୋକ ସାଗରରେ ଭସାଇ ସ୍ୱର୍ଗାରୋହଣ କଲା । ଶେଷ ପର୍ଯ୍ୟନ୍ତ କାନ୍ଦି କାନ୍ଦି କହୁଥାଏ, ''ବାପା, ତୁମେ ମୋତେ ଭଲ କରିଦିଅ ।'' ମୁଁ କହୁଥାଏ, ''ଆରେ ବାପା, ମୋ ହାତରେ ନାହିଁ । ପରାତ୍ପର ପରମେଶ୍ୱରଙ୍କୁ ପ୍ରାର୍ଥନା କର । ସେ ଭଲକଲେ କରିଦେବେ । ତୋର ଆରୋଗ୍ୟ ହେବା ମୋର ଶକ୍ତିର ବାହାରେ ।''

ଛାଡ଼ନ୍ତୁ ସେ ଦୁଃଖର କଥା । ସେଠାରେ ଗୋଟିଏ ଅଭିନବ ଘଟଣା ଘଟିଲା । ମୋ ପୁଅ ଅପରେସନ୍ ହେବାକୁ ଅପେକ୍ଷା କରିଥିବା ସମୟରେ ଜଣେ ଆଫଗାନିସ୍ଥାନର ଓକିଲ କାବୁଲରୁ ବାସ୍ତୁହରା ହୋଇ ଆସିଥାନ୍ତି । ପ୍ରାୟ ୨୦ ହଜାର ଲୋକଙ୍କ ପାଇଁ ଭାରତ ସରକାର ତମ୍ବୁ ପକାଇ ମାସକୁ ଟ.୩୦୦୦/- ଲେଖାଏଁ ଭତ୍ତା ଗୋଟିଏ

ପରିବାରକୁ ଦେଉଥାନ୍ତି । ତାହା ଭାରତ ଆଫଗାନିସ୍ଥାନର ଚିରନ୍ତନ ମୈତ୍ରୀର ନିଦର୍ଶନ । ସେ ଗୋଟିଏ ଖାନଦାନ ପରିବାରର ଲୋକ । ଘର ଛାଡ଼ି ବାସ୍ତୁହରା ହୋଇ ଆସିଥାନ୍ତି । ଅତି ଦୟନୀୟ ଭାବେ ଜୀବନ ନିର୍ବାହ କରୁଥାନ୍ତି । ତାଙ୍କର ଗୋଟିଏ କନ୍ୟା ୧୫ ବର୍ଷର ଓ ଗୋଟିଏ ପୁତ୍ର ୭/୮ ବର୍ଷର । ପୁତ୍ରର ମେରୁଦଣ୍ଡ ଅପରେସନ ଆବଶ୍ୟକ ହେଲା । ଡାକ୍ତର କହିଲେ ଟ.୫୦୦୦/- ୩ ଦିନ ଭିତରେ ଯୋଗାଡ଼ କଲେ ଅପରେସନ ହେବ । ସେ କେଉଁଠାରୁ ଏତେ ଗୁଡ଼ିଏ ଟଙ୍କା ଏକାବେଳକେ ଆଣିବେ ? ମୋତେ ତାଙ୍କ ଦୁଃଖ କହିଲେ । ମୁଁ ଦେଖିଲି ଏହା ବଡ଼ ଦୁରୂହ ବ୍ୟାପାର । ତଥାପି ଚେଷ୍ଟା କରିବି ବୋଲି କହିଲି । ଆମ ୱାର୍ଡ଼ରେ ପ୍ରାୟ ୧୫୦ ରୋଗୀ । ସେଥିରେ ବହୁ ଖାନ୍‌ଦାନ୍ ବ୍ୟକ୍ତି ଥିଲେ । ମୁଁ ଗୋଟିଏ କାଗଜରେ ସବୁ ଘଟଣା ଏବଂ ଗୋଟିଏ ପ୍ରାର୍ଥନା ଲେଖି ଆଣିଲି । ବଦାନ୍ୟ ବ୍ୟକ୍ତିମାନେ ସାମାନ୍ୟ ସାହାଯ୍ୟ କରି ଟଙ୍କା ଯୋଗାଡ଼ ହୋଇପାରିଲେ ଦୁଃଖୀ ଲୋକଟିର ପୁତ୍ରର ଅପରେସନ ହୋଇଯିବ । ମୁଁ ନିଜେ ପ୍ରଥମେ ଟ୫୦୦/- ଦାନ ଦେଲି । ସେହି ଲୋକଟିକୁ ସଙ୍ଗରେ ନେଇ ଉତ୍ତମ ବ୍ୟକ୍ତିମାନଙ୍କୁ ନେଇ ଅନୁରୋଧ କଲି । ଏକ ଘଣ୍ଟା ପରେ ଟ.୫୦୦୦/- ର Promise ମିଳିଗଲା । ତା'ପରଦିନ ପ୍ରତ୍ୟେକ ଲୋକ Promise ଅନୁଯାୟୀ ଟଙ୍କା ଦେଇଦେଲେ । ମୁଁ ସେହି ଲୋକଙ୍କୁ ସାଙ୍ଗରେ ନେଇ ଟଙ୍କା ଦେଲି । ଅପରେସନ୍ ଯଥା ସମୟରେ ହୋଇଗଲା । ସେହି କାବୁଲ୍ ଲୋକ ଓ ତାଙ୍କ ସ୍ତ୍ରୀ ମୋତେ ଆସି କହିଲେ । ଏହାର ୩ ଦିନ ପରେ ଆମକୁ କୁହାଗଲା, ତୁମେ ମାସକ ପରେ ଆସ । ଅପରେସନ ହେବ । ମୁଁ ଆମ ୱାର୍ଡ଼ର ସବୁ ବେଡ଼ ପାଖକୁ ଯାଇ କହିକରି ତା ପରଦିନ ଆସିଲି । ସେହିଦିନ ଅପରାହ୍ନରେ ସେହି କାବୁଲ୍ ଓ୍ୱକିଲଙ୍କର ସ୍ତ୍ରୀ ମୋ ସ୍ତ୍ରୀଙ୍କ ପାଖକୁ ଆସିଲେ । ଭାଷା ପୁସ୍ତୁ । ସେମାନେ ଉର୍ଦ୍ଦୁ ମଧ ବୁଝନ୍ତି ନାହିଁ । ମଧ୍ୟ ପ୍ରାଚ୍ୟରେ ତିନୋଟି ଭାଷା- ଆରବିକ, ପାରସୀ ଏବଂ ପୁସ୍ତୁ । ମୋ ସ୍ତ୍ରୀ ଓଡ଼ିଆ, ବଙ୍ଗଳା ଏବଂ ହିନ୍ଦୀ ଜାଣନ୍ତି । ସେ ଆସିଥିଲେ କୃତଜ୍ଞତା ଜ୍ଞାପନ କରିବା ପାଇଁ । ଭାଷାଗତ ପ୍ରତିବନ୍ଧକ । ମାତ୍ର ମୁଖମଣ୍ଡଳର ଭାବ ହିଁ ସର୍ବୋତ୍କୃଷ୍ଟ ଭାଷା । ମୋ ସ୍ତ୍ରୀ ଙ୍କ ହାତ ଧରି ପ୍ରବଳ କାନ୍ଦିଲେ । ମୋ ସ୍ତ୍ରୀ ମଧ କାନ୍ଦି ପକାଇଲେ । ହାତ ଠାରି କହୁଥାନ୍ତି ପୁଅର ଅପରେସନ ହୋଇଗଲା । ଭଲ ଅଛି । ଆଉ ଏକ ସପ୍ତାହ ପରେ ଡାକ୍ତରଖାନାରୁ ଡିସଚାର୍ଯ ହେବ । ଆମ ପୁଅ ଭଲ ହୋଇଯାଉ ବୋଲି ଉପରକୁ ଚାହିଁ ଭଗବାନ; ଆଲ୍ଲାଙ୍କୁ ସଲାମ କଲେ । ତେଣୁ ହୃଦୟର ଭାବ ପରିପ୍ରକାଶ ପାଇଁ ଭାଷା ପ୍ରତିବନ୍ଧକ ନୁହେଁ । ମୁଖମଣ୍ଡଳ, ଚକ୍ଷୁ, ଅଙ୍ଗଭଙ୍ଗୀ ଓ ଇସାରାରେ ଭାବ ପ୍ରକାଶ କରିହେବ । ଏହିପରି ଆହୁରି ଅନେକ ଉଚ୍ଚତର ଅଭିଜ୍ଞତା ହାସଲ କରି ଡାକ୍ତରଖାନାରୁ ଆସିଲି ।

ଦିଲ୍ଲୀରେ ପୁତ୍ରର ଚିକିତ୍ସା ସମୟରେ ଦୁଇଟି ଅନୁଷ୍ଠାନ ଆମକୁ ବହୁତ ସାହାଯ୍ୟ କରିଥିଲେ । ପ୍ରଥମଟି ହେଲା ହାଉସ୍ ଖସ୍‌ର ଓଡ଼ିଆ ଜଗନ୍ନାଥ ମନ୍ଦିର ଯାହା କଳାହାଣ୍ଡି ମହାରାଜା ପ୍ରତାପକେଶରୀ ଦେଓ ଏମ୍.ପି. ଥିଲାବେଳେ ତାଙ୍କ ପ୍ରଚେଷ୍ଟାରେ ଜାଗା ଖଣ୍ଡିକ ମିଳିଥିଲା । ଓଡ଼ିଶାର କେତେକ କଣ୍ଟ୍ରାକ୍‌ଟରଙ୍କ ଦାନ ଆକାରରେ ଟଙ୍କା ସଂଗ୍ରହ କରି ମନ୍ଦିରର ସେବାପୂଜା ନୀତି ଯଥାରୀତି କରାଉଥିଲେ । ସଭାପତି ଥିଲେ ଦୁର୍ଯ୍ୟୋଧନ ପ୍ରଧାନ । କନିକା ଅଞ୍ଚଳର ଜଣେ ପି.ଏଚ୍.ଡି. କଣ୍ଟ୍ରାକ୍‌ଟର । ସେଠାର ରଥଯାତ୍ରା, ଝୁଲଣ ନୀତି, ସବୁ ପର୍ବ ଯଥା ରୀତି ପାଳିତ ହୁଏ । ଓଡ଼ିଶାର ଏମ୍.ପି. ମାନେ ଆସି ଏମ୍.ପି. ପାଣ୍ଠିରୁ ଦାନ ଦେଇଥିଲେ । ସେମାନେ ଆମକୁ ବହୁତ ସାହାଯ୍ୟ କରିଛନ୍ତି ।

ଦ୍ୱିତୀୟରେ AIIMS ର Campus ସାମନାରେ ରାସ୍ତାର ଅପର ପାର୍ଶ୍ୱରେ ଗୋଟିଏ ଅତି ଶସ୍ତା ରହଣି ଏବଂ ନିରାମିଷ ଭୋଜନ ଭାତ, ରୁଟି, ଡାଲି, ତରକାରୀ, ଖଟା ଓ କ୍ଷୀରୀ (ମଙ୍ଗଳବାର ଦିନ କେବଳ) ମାତ୍ର ଟ.୧୨/- ରେ ପରିବେଷଣ କରନ୍ତି । ଦିନ ୧୨ ଘଣ୍ଟା ଠାରୁ ୨ ଘଣ୍ଟା ପର୍ଯ୍ୟନ୍ତ । ଲୋକ ବହୁତ ଭିଡ଼ । ରହିବାପାଇଁ ସିଙ୍ଗଲ୍ ରୁମ୍ ଏବଂ hall ଖଟ ସହିତ । ୫/୬ ଦିନ ହଲ୍‌ରେ ରହି ଅପେକ୍ଷା କଲେ ସିଙ୍ଗଲ୍ ରୁମ୍ ମିଳିବ । ବାଥ୍‌ରୁମ୍ / ଗାଧୁଆଘର ସର୍ବସାଧାରଣ । ରାଜସ୍ଥାନର ଜଣେ ମହୀୟସୀ ମହିଳା କ୍ୟାନସର ରୋଗରେ ଆକ୍ରାନ୍ତ ହୋଇ ପ୍ରାୟ ୧ ବର୍ଷ ଚିକିତ୍ସିତ ହୋଇଥିଲେ । ଆରୋଗ୍ୟ ହୋଇପାରିଲେ ନାହିଁ । ତାଙ୍କର ଅନ୍ତିମ ଇଚ୍ଛା, ତାଙ୍କର ଗଚ୍ଛିତ ଟଙ୍କା ଓ ଅଳଙ୍କାର ବିକ୍ରୀ କରି ପ୍ରାୟ ୧୦ ଲକ୍ଷ ଟଙ୍କା ଥିଲା । ଦିଲ୍ଲୀ ସରକାର ଜମି ମାଗଣାରେ ଯୋଗାଇଦେଲେ । ତାଙ୍କ ପୁତ୍ରମାନଙ୍କୁ ଇଚ୍ଛା ପ୍ରକାଶ କରି ଅନୁରୋଧ କରିଥିଲେ ଏଠାରେ ଦରିଦ୍ର ଓ ବାହାରର ରୋଗୀ ଏବଂ ତାଙ୍କର ସହାୟକମାନଙ୍କ ପାଇଁ ଶସ୍ତା ରହିବା ଓ ଖାଇବାର ବନ୍ଦୋବସ୍ତ କରିଦେବା ପାଇଁ । କେବଳ AIIMSର କାର୍ଡ଼ ଦେଖାଇଲେ ସେଠାରେ ଆଶ୍ରୟ ମିଳିପାରିବ । ଖାଦ୍ୟ ଅତି ସୁସ୍ୱାଦୁ, ବହୁତ ଭିଡ଼ । ଗୋଟାକ ଭିତରେ ସରିଯାଏ । କେହି ଫେରନ୍ତି ନାହିଁ ।

ସେହି ରାଜା ଗଡ଼ିଆ ଧର୍ମଶାଳା ଅନୁକରଣରେ ଆମ ଓଡ଼ିଶାରେ କଅଣ ରୋଗୀଙ୍କ ସେବାକାରୀ ମାନଙ୍କ ରହଣି ପାଇଁ କଟକ ଓ ଭୁବନେଶ୍ୱର ହସ୍‌ପିଟାଲରେ ଗୋଟିଏ ଲେଖାଏଁ ବଡ଼ ବଡ଼ ଘର ତିଆରି ହୋଇ ପାରନ୍ତା ନାହିଁ । ଦାନ ଦେବାପାଇଁ ଲୋକ ପ୍ରସ୍ତୁତ । ମାତ୍ର ଉଦ୍‌ଯୋଗ ଓ ଉଦ୍ୟମ କାହାରି ନାହିଁ । ଏହି ଦୁଇ ଡାକ୍ତରଖାନାର ପରିଷ୍କାର ପରିଚ୍ଛନ୍ନତା ଅତି ନିମ୍ନ ସ୍ତରର । କଅଣ କିଛି କରି ହେବ ନାହିଁ ? ଆମ ମୁଖ୍ୟମନ୍ତ୍ରୀ, ସ୍ୱାସ୍ଥ୍ୟମନ୍ତ୍ରୀ ଏଥିପ୍ରତି ଦୃଷ୍ଟି ଦେବେ କି ?

ମୋର ପୁତ୍ର ଜ୍ୟୋତିରଂଜନ ଅତି ଉଚ୍ଚ ସ୍ତରର ମେଧାବୀ ଛାତ୍ର । ଗଣିତ ଏବଂ ଫିଜିକ୍ସରେ ଅତି ବିଚକ୍ଷଣ । IIT Kanpur ରେ ରିସର୍ଚ୍ଚ କରୁଥିଲା । ଅତି ଅଳ୍ପ ବୟସରେ ମାତ୍ର ୩୨ ବର୍ଷରେ ଇହଧାମରୁ ବିଦାୟ ନେଇ ଆମକୁ ବହୁତ ଦୁଃଖ ଦେଇଗଲା । ମାତ୍ର ବିଧିର ବିଧାନ, କେ କରିବ ଆନ ।

ଜୀଇବୁ ଆଣ୍ଟେ ମନ କରିଛୁ ଅବା । ଯମ ଯେ ନ ଜାଣଇ ବାଳୁତ ଯୁବା ।

ଦୁଃଖ ଓ ଦୁର୍ଦ୍ଦିନକୁ ଭୁଲି ଯିବାର ପ୍ରଧାନ ଉପାୟ ହେଉଛି ଦୁଃଖରୁ ଶିକ୍ଷା । ସେହି ଶିକ୍ଷା ଲାଭ କରି ମନ ଦୃଢ଼ କରି ଦୁଃଖୀ ଦରିଦ୍ର ଲୋକଙ୍କୁ ସାହାଯ୍ୟ ଓ ସେବା କରି ପାରିଲେ ଦିବଂଗତ ପୁତ୍ରର ଉପଯୁକ୍ତ ସ୍ମୃତି ରକ୍ଷା ହୋଇପାରିବ । ସେ ଏତେ ଲୋକପ୍ରିୟ ଥିଲା ଯେ ତାର କ୍ୟାପିଟାଲ୍ ହାଇସ୍କୁଲର କେତେକ ସହପାଠୀ ଏବଂ ମୁଁ ନିଜେ କିଛି କିଛି ଟଙ୍କା ସଂଗ୍ରହ କରି ବ୍ୟାଙ୍କରେ ଜମା କରି ସେହି ସୁଧରେ ଜଣେ ଅଷ୍ଟମ ଶ୍ରେଣୀ ଓ ଆଉ ଜଣେ ନବମ ଶ୍ରେଣୀର ଛାତ୍ର ଏପରି ୨ ଜଣ ମେଧାବୀ ଏବଂ ଦରିଦ୍ର ଛାତ୍ରଙ୍କୁ ବର୍ଷକୁ ଥରେ ଏକକାଳୀନ କିଛି ଟଙ୍କା ଦାନ କରି ମନରେ ସନ୍ତୋଷ ଲାଭ କରୁ । ଦରିଦ୍ର ଓ ମେଧାବୀ ଯୋଗ୍ୟ ଛାତ୍ରଙ୍କୁ ବୃତ୍ତି ବା ବ୍ୟକ୍ତିଗତ ସାହାଯ୍ୟ କରି ପାରିଲେ ଆମର ଉଦ୍ଦେଶ୍ୟ ପୂରଣ ହେବ ।

ମୋର ପୁତ୍ର ଜ୍ୟୋତିରଂଜନ ନାମରେ ଆମ ଗ୍ରାମ ଜେମାଦେଈପୁର ଶାସନରେ ଗୋଟିଏ ହୋମିଓପାଥି ଡାକ୍ତରଖାନା ଖୋଲିଛି । ଦାତବ୍ୟ ଚିକିତ୍ସାଳୟ । ଯାହାର ଇଚ୍ଛା ଥରେ ଔଷଧ ନେଲେ ଦୁଇଟଙ୍କା ମାତ୍ର ଦିଏ । ସେପରି କିଛି ବାଧ୍ୟତାମୂଳକ ନୁହେଁ । ଜଣେ ହୋମିଓପାଥି ପାଶ୍ କଲାବାଲା ଅଭିଜ୍ଞ ଡାକ୍ତର ଅଛନ୍ତି । କେତୋଟି ରୋଗ, ଯଥା- ପେଟ ଗୋଳମାଳ, କୋଷ୍ଠକାଠିନ୍ୟ, ଆଣ୍ଠୁଗଣ୍ଠି ଦରଜ ଏବଂ ଆଉ ରୋଗ ପାଇଁ ହୋମିଓପାଥି ପ୍ରକୃଷ୍ଟ ଔଷଧ । ଏହାଛଡ଼ା ମୁଁ ସେହି ଡାକ୍ତରଖାନାରେ ତିନିଥର ଦାନ୍ତ ଚିକିତ୍ସାପାଇଁ ଚିକିତ୍ସା ଶିବିର ମାନ କରାଇ ଭୁବନେଶ୍ୱରର ଜଣେ ଅଭିଜ୍ଞ ଡାକ୍ତର ଡଃ ସଂଜିତ କୁମାର ପଣ୍ଡା, ତାଙ୍କ ସ୍ତ୍ରୀ ଏବଂ ଜଣେ କଂପାଉଣ୍ଡର ନେଇ କରାଇଛୁ । ଲୋକ ୮/୧୦ ମାଇଲ ବାଟରୁ ଆସନ୍ତି । ସକାଳ ୭ ଘଣ୍ଟାରେ ଭୁବନେଶ୍ୱରରୁ ବାହାରି କାର୍‌ରେ ଗଲେ ଦିନ ୧୦ ଟା ବେଳେ ପହଞ୍ଚୁ । ପରେ ଟିକିଏ ଚା ଖାଇ କାମ ଆରମ୍ଭ ହୋଇଯାଏ ଦିନ ୨ ଘଣ୍ଟା ପର୍ଯ୍ୟନ୍ତ । ଦୂରରୁ ଆସିଥିବା ରୋଗୀଙ୍କୁ ପ୍ରଥମେ ଚିକିତ୍ସା କରି ସେମାନଙ୍କୁ ବିଦାୟ କରିଦେଉ । ଯେଉଁମାନଙ୍କର ଜଟିଳ କେଶ୍ ତାଙ୍କୁ ଆଉ

ଗୋଟିଏ ତାରିଖ ଦିଆଯାଏ କିମ୍ୱା ନିକଟତମ ଦାନ୍ତ ଡାକ୍ତର ଭୁବନ ବା ଯାଜପୁରରୋଡ୍‌ରେ ଦେଖାଅ ବୋଲି ପରାମର୍ଶ ଦିଆଯାଏ । ଏହି ଦାନ୍ତ ଚିକିତ୍ସା ଶିବିର ବେଶ୍ ଲୋକପ୍ରିୟ ହୋଇଥିଲା । ୩ ଥର କଲାପରେ ମୁଁ ନଯାଇପାରି ବନ୍ଦ ହୋଇଯାଇଛି । ବାସ୍ତବିକ ରୋଗୀଙ୍କ ସେବାରେ ମୁଁ ଅର୍ଥ ବା ଶ୍ରମ ନିୟୋଜିତ କରିପାରିଲେ ମୋର ମନରେ ବହୁତ ଆନନ୍ଦ ।

ସନ୍ଧ୍ୟା ୪ଟା ବେଳେ ସବୁ ରୋଗୀଙ୍କୁ ବିଦାୟ କରି ସାମାନ୍ୟ ଚା ପାନ କରି କାର୍‌ରେ ଆସିଲେ ଭୁବନେଶ୍ୱର ପହଞ୍ଚୁ ରାତି ୮ ଘଣ୍ଟା । ଡାକ୍ତର ସଂଜିତ ପଣ୍ଡା, ଆର୍.ଏସ୍.ଏସ୍. ର ସ୍ୱାସ୍ଥ୍ୟ ଦିଗଟିର ଦାୟିତ୍ୱରେ ଥିଲେ । ବର୍ତ୍ତମାନ କଟକର ସ୍ୱନାମଧନ୍ୟ ଡାକ୍ତର ଅରିଜିତ୍ ବୋଷ୍, ଆର୍. ଏସ୍.ଏସ୍.ର ପୁରୁଖା କର୍ମୀ ଭୂପେନ୍ ବୋଷଙ୍କ ପୁତ୍ର ସେ ଦାୟିତ୍ୱରେ ଅଛନ୍ତି । ସର୍ବଦା ସାହାଯ୍ୟ ଓ ସହଯୋଗର ହାତ ବଢ଼ାଇଥାନ୍ତି ।

ଏହି ଦାତବ୍ୟ କାମ ପାଇଁ ଆର.ଏସ୍.ଏସ୍. କୁ ମୋର ଆନ୍ତରିକ କୃତଜ୍ଞତା ଜଣାଉଛି ।

# ବୁଦ୍ଧ ବିହାର

ଓଁ ନମୋ ତସ୍ୟ ଭଗବତୋ ଅରହତୋ ସମ୍ମସମ୍ମ ବୁଦ୍ଧସ୍ୟ ।

ଓଁ ବୁଦ୍ଧଂ ସରଣଂ ଗଛାମି

ଧର୍ମ୍ମଂ ସରଣଂ ଗଛାମି

ସଂଘଂ ସରଣଂ ଗଛାମି ।

ଏହିପରି ଆହୁରି ୨ ବାର ।

ମୋର ଅବସର ନେବାର ୨ ବର୍ଷ ପୂର୍ବରୁ ମୁଁ ଥରେ ସକାଳେ ପ୍ରାତଃ ଭ୍ରମଣରେ କୌତୁହଳବଶତଃ ବୁଦ୍ଧ ବିହାର ଭିତରକୁ ପ୍ରବେଶ କଲି । ଦେଖିଲି ଜଣେ ବୁଦ୍ଧ ସନ୍ନ୍ୟାସୀ ଧ୍ୟାନରେ ବସିଛନ୍ତି । ମୁଁ ଦେଖା କରିବାକୁ ଖବର ଦେଲି । ଟିକିଏ ଅପେକ୍ଷା କରନ୍ତୁ । ମୁଁ ୧୫ ମିନିଟ୍ ଅପେକ୍ଷା କରିବା ପରେ ସନ୍ନ୍ୟାସୀ ମୋତେ ଡାକିଲେ । ତାଙ୍କର ବୌଦ୍ଧନାମ ସଦାନନ୍ଦ ଥେରୋ । ତାଙ୍କର ପୂର୍ବ ନାମ ଥିଲା ଲୋକନାଥ ସାହୁ । ଗଂଜାମ ବରହମପୁର ବାସିନ୍ଦା । ସେ ପୂର୍ବରୁ ଚିଫ୍ ଏମ.ଭି. ଆଇ. ଥାଇ ବହୁତ ସୁନାମ ଅର୍ଜନ କରିଥିଲେ । ପାରାଦୀପ ବନ୍ଦର ତିଆରି ବେଳେ ବହୁତ ନୂତନ ମାଲବାହୀ ଟ୍ରକକୁ ଲାଇସେନ୍ସ ଦେଇ ପାରଦୀପ ଠାରେ Way Bridge ନିର୍ମାଣ କରାଇ ତାର ସୁବନ୍ଦୋବସ୍ତ କରିଥିଲେ । ସେଥିପାଇଁ ଆଉ ୨ ବର୍ଷ ବନ୍ଦର ଶେଷ ହେବା ପର୍ଯ୍ୟନ୍ତ ସରକାରୀ କାର୍ଯ୍ୟ କରିଥିଲେ । ବହୁତ ବର୍ଷ ଚାକିରୀ କରିବା ପରେ ଗାର୍ହସ୍ଥ୍ୟ ଜୀବନରେ ବୀତସ୍ପୃହ ହୋଇ ଭଗବାନ ବୁଦ୍ଧଙ୍କ କରୁଣାରେ ଆକୃଷ୍ଟ ହେଲେ । ସଂସାର ପ୍ରତି ତାଙ୍କର ବିତୃଷ୍ଣା ଜାତ ହେଲା । ସେ ବରହମପୁରରୁ ଆସି ଭିକ୍ଷୁ ଲଙ୍କାଲନ୍ଦ ବୋଲି ଜଣେ ସିଂହଳୀ ଥେରୋ ବା ସନ୍ନ୍ୟାସୀଙ୍କ ଠାରୁ ଦୀକ୍ଷା ଗ୍ରହଣ କରିଥିଲେ । ଦୀକ୍ଷା ଗ୍ରହଣ ପୂର୍ବରୁ କଲିକତାର ମହାବୋଧି ସୋସାଇଟିକୁ ଦରଖାସ୍ତ କଲେ । ସେ କହିଥିଲେ ତାଙ୍କର ଘରେ ସ୍ତ୍ରୀ ଓ ତିନିପୁତ୍ର ପ୍ରତିଷ୍ଠିତ ଏବଂ ବରହମପୁରରେ ଘର ଅଛି । କାହିଁକି ବୌଦ୍ଧ ଧର୍ମରେ ଦୀକ୍ଷିତ ହେବାକୁ ଚାହାଁନ୍ତି ବୋଲି ପଚାରିବାରୁ ସେ କହିଥିଲେ ସଂସାର ପ୍ରତି ବୈରାଗ୍ୟ । ପୁତ୍ରମାନେ ପିତାଙ୍କର ବୟସାଧିକ୍ୟ ଯୋଗୁ ମନା କରିଥିଲେ । ମାତ୍ର ପିତା ଯଦି ବୌଦ୍ଧ ସନ୍ନ୍ୟାସୀ ହେବେ ଏବଂ ଗୃହ ତ୍ୟାଗ କରିବେ ତେବେ ସେମାନେ ପ୍ରତ୍ୟେକ ବୃଦ୍ଧା ମାତାଙ୍କର ପୂର୍ଣ୍ଣ ତତ୍ତ୍ୱାବଧାନ କରିବେ । ସ୍ତ୍ରୀ କହିଲେ ସ୍ୱାମୀଙ୍କର ଧର୍ମ କାର୍ଯ୍ୟରେ ସେ ପ୍ରତିବନ୍ଧକ ହେବେ ନାହିଁ ।

କଲିକତା ମହାବୋଧି ସୋସାଇଟିର ଜଣେ ଜେନେରାଲ୍ ସେକ୍ରେଟେରୀ ଭୁବନେଶ୍ୱର ଆସିଥିଲେ । ସେ କହିଲେ ଆମେ ତାହୁଁକୁ ଜଣେ ଉତ୍କଳୀୟ ବ୍ୟକ୍ତି ବୌଦ୍ଧଧର୍ମ ଗ୍ରହଣ କରିପାରିଲେ ଏହାର ଉତ୍ତରୋତ୍ତର ଉନ୍ନତି କରାନ୍ତେ । ବହୁତ ଗଛ ପତ୍ର ଲଗାଇ ଏହାର ଶୋଭା ବୃଦ୍ଧି କରନ୍ତେ । ଉପସ୍ଥିତ ବ୍ୟକ୍ତିମାନଙ୍କ ମଧ୍ୟରୁ ଲୋକନାଥ ସାହୁ ଅବସରପ୍ରାପ୍ତ ସରକାରୀ ଅଫିସର ଆଗଭର ହୋଇ ବାହାରିଲେ । ତାପରେ ନିଜ ଗୃହ ଓ ପରିବାରର ତୁଳୀତଳ୍ପ ଶେଯ ଓ ସୁସ୍ୱାଦୁ ଖାଦ୍ୟ ଓ ସମସ୍ତ ସୁଖ ସ୍ୱାଚ୍ଛନ୍ଦ୍ୟକୁ ଜଳାଞ୍ଜଳି ଦେଇ ଦୀର୍ଘ ୧୫ ବର୍ଷରୁ ଊର୍ଦ୍ଧ୍ୱ ସର୍ପ ସଂକୁଳ ଭଗ୍ନ ଆଜବେଷ୍ଟସ୍‌ର ଗୋଟିଏ ଗୃହରେ ରହି ନିଜ ହାତରେ ରନ୍ଧନ କରି ଗୋଟିଏ ଓଳି ମଧ୍ୟାହ୍ନରେ ଭୋଜନ କରି ସନ୍ନ୍ୟାସୀ ଜୀବନ ବିତାଇଲେ । ମୋତେ ପ୍ରତିଦିନ ସକାଳେ ବା ସନ୍ଧ୍ୟାରେ ଆସି ତାଙ୍କ ସାଙ୍ଗରେ ବୌଦ୍ଧଧର୍ମ ବିଷୟରେ ଆଲୋଚନା କରିବାକୁ ଅନୁରୋଧ କଲେ । ତାଙ୍କର ଆଦର୍ଶ ହେଲା ସ୍ୱୟଂ ଭଗବାନ ବୁଦ୍ଧ କପିଳବାସ୍ତୁର ରାଜା ଶୁଦ୍ଧୋଦନଙ୍କ ଏକମାତ୍ର ପୁତ୍ର ତାଙ୍କର ସିଂହାସନ, ଯୁବରାଣୀ ଯଶୋଧାରା ଓ ସଦ୍ୟଜାତ ପୁତ୍ର ରାହୁଲଙ୍କୁ ପରିତ୍ୟାଗ କରି କଣ୍ଟକ ନାମକ ଅଶ୍ୱର ବ୍ୟକ୍ତିଗତ ସଇସକୁ ରାତି ଅର୍ଦ୍ଧରେ ପ୍ରାୟ ୩୦ ମାଇଲ ଦୂର ଜଙ୍ଗଲ ମଝିରେ ଛାଡ଼ି ଦେଇଆସିଲା । ଫେରିଲାବେଳେ ଅଶ୍ୱଚାଳକ ଖୁବ୍ ଜୋରରେ କ୍ରନ୍ଦନ କରି ଯେତେ ଅନୁନୟ ବିନୟ କଲା ଫେରିଆସିବାକୁ, ରାଜପୁତ୍ର ସିଦ୍ଧାର୍ଥ ତାକୁ ପ୍ରତ୍ୟାଖ୍ୟାନ କରି ଆଶ୍ୱାସନା ଏବଂ ଆଶୀର୍ବାଦ କରି ଅଳଙ୍କାର ଓ ପୋଷାକ ସବୁ ଓହ୍ଲାଇ ସଇସ ହାତରେ ପଠାଇଦେଲେ ଓ ପିତାମାତାଙ୍କୁ ପ୍ରଣାମ ଜଣାଇ ଜଙ୍ଗଲ ଭିତରକୁ ସନ୍ନ୍ୟାସୀ ବେଶରେ ଚାଲିଗଲେ ।

ଭଗବାନ ବୁଦ୍ଧ ଏହିପରି ନେପାଳ, ବିହାର ଏବଂ ଉତ୍ତର ଭାରତର ବହୁତ ଜାଗା ଭ୍ରମଣ କରି ସୁଦୀର୍ଘ ୫୦ ବର୍ଷ ବିତାଇଥିଲେ । ବୈଶାଖ ପୂର୍ଣ୍ଣିମା ହେଉଛି ବୌଦ୍ଧମାନଙ୍କର ସବୁଠାରୁ ବଡ଼ ପର୍ବ । କାରଣ ଏହିଦିନ ଭଗବାନ ବୁଦ୍ଧଙ୍କର ଜନ୍ମ ଦିବସ, ତାଙ୍କ ବୁଦ୍ଧତ୍ୱ ପ୍ରାପ୍ତି ଏବଂ ତାଙ୍କର ମହାନିର୍ବାଣ ଦିବସ । ଏପରି ଗୋଟିଏ ଦିନରେ ଜନ୍ମ, ମହାପ୍ରୟାଣ ଏବଂ ଜ୍ଞାନ ଲାଭ କରିଥିବା ଏକମାତ୍ର ମହାପୁରୁଷ ହେଉଛନ୍ତି ଭଗବାନ ବୁଦ୍ଧ ।

ଏହି ବୁଦ୍ଧ ପୂର୍ଣ୍ଣିମା ମଧ୍ୟ ରାଜଧାନୀର ବୌଦ୍ଧ ମନ୍ଦିରରେ ଅତି ନିଷ୍ଠାର ସହିତ ପାଳନ କରାଯାଏ । ତା ପୂର୍ବରୁ ଏହି ମନ୍ଦିରର ସଂକ୍ଷିପ୍ତ ଇତିହାସ ପ୍ରଦତ୍ତ ହେଲା ।

ସ୍ୱନାମଧନ୍ୟ  କବି ଡ. ମାୟାଧର ମାନସିଂ ଏବଂ ପ୍ରସିଦ୍ଧ ଐତିହାସିକ ଡଃ ପ୍ରଭାତ ମୁଖାର୍ଜୀଙ୍କ ଅକ୍ଳାନ୍ତ ପ୍ରଚେଷ୍ଟାରେ ଭୁବନେଶ୍ୱରର ଆଠ ନମ୍ବରରେ ପ୍ରାୟ ଅଢ଼େଇ ଏକର ଜମି ଡ. ହରେକୃଷ୍ଣ ମହତାବ ମୁଖ୍ୟମନ୍ତ୍ରୀ ଥିଲାବେଳେ ବିନା ମୂଲ୍ୟରେ ଦାନ କରିଅଛନ୍ତି । ୧୯୫୩ ମସିହାରେ ବର୍ମା (ଆଜିକାଲିର ନାମ ମ୍ୟାନ୍‌ମାର୍) ର ପ୍ରଧାନମନ୍ତ୍ରୀ ସମ୍ମାନନୀୟ U.N.U ଙ୍କ ଦ୍ୱାରା ଶ୍ରୀଲଙ୍କାର ଅନୁରାଧାପୁର ସହରଠାରୁ ପ୍ରସିଦ୍ଧ ବୋଧିଦ୍ରୁମର ଏକ ଶାଖା ଆଣି ରୋପଣ କରିଥିଲେ । ସେଠାକାର ବୋଧିଦ୍ରୁମ ହେଉଛି ମହାନ୍ ସମ୍ରାଟ୍ ଅଶୋକଙ୍କ ପୁତ୍ର ମହେନ୍ଦ୍ର ରୋପଣ କରିଥିଲେ ବୋଲି ଐତିହାସିକ ମାନେ କହନ୍ତି ।

ଆମ ଭୁବନେଶ୍ୱରରେ ଥିବା ବୋଧିଦ୍ରୁମ ବେଶ୍ ବଡ଼ ହୋଇଗଲାଣି । ଅଶ୍ୱତ୍ଥ ଗଛଟିରୁ ଠିକ୍ ମାର୍ଚ୍ଚ ମାସରେ ସବୁ ପତ୍ର ଝଡ଼ିଯାଏ । ମାତ୍ର ୮/୧୦ ଦିନ ଭିତରେ ନବପଲ୍ଲବ ଅଙ୍କୁରିତ ହୋଇ ଗଛଟି ଅପୂର୍ବ ଶୋଭା ଧାରଣ କରେ ।

ଏ ସମସ୍ତଙ୍କର ଯୋଗାଯୋଗ ହୁଏ ବୈଶାଖ ପୂର୍ଣ୍ଣିମାରେ । ଏହି ମନ୍ଦିରଟି ଯେପରି ଗୋଟିଏ କ୍ଷୁଦ୍ର ଜଙ୍ଗଲ ପରି ପଥିକର ଭ୍ରମ ଜନ୍ମାଏ, ଆଉ ଗୋଟିଏ ଏପରି ସବୁଜ ବୃକ୍ଷଲତା ଭରା ଘଞ୍ଚ ପାର୍କ ବା ଉଦ୍ୟାନ ରାଜଧାନୀରେ କୌଣସି ଜାଗାରେ ନାହିଁ ।

ବୁଦ୍ଧବିହାରରେ ପ୍ରଥମ ଭିକ୍ଷୁ ଥିଲେ ଲଙ୍କାନନ୍ଦ ଥେରୋ । ସେ ଶ୍ରୀଲଙ୍କାରେ ଜନ୍ମ ନେଇଥିଲେ । ଅସୁସ୍ଥତା କାରଣରୁ ଅତି ଅଳ୍ପ ବୟସରେ ସ୍ୱର୍ଗାରୋହଣ କଲେ । ତାଙ୍କ ପରେ ରହିଲେ ଆମର ଓଡ଼ିଶାର ଅଧିବାସୀ ଶ୍ରୀ ସଦାନନ୍ଦ ଥେରୋ । ତାଙ୍କ ସଙ୍ଗେ ସାକ୍ଷାତ ହେଲାପରେ ସେ ମୋତେ ଆକୃଷ୍ଟ କଲେ । ତାଙ୍କର କାର୍ଯ୍ୟ କରିବାର ଉତ୍ସାହ ଓ ଶୃଙ୍ଖଳତା ଶିକ୍ଷଣୀୟ । ମହାବୋଧି ସୋସାଇଟି ଠାରୁ କିଛି ନ ନେଇ ଗୋଟିଏ ସେବକର ଦରମା ଓ ଖୋରାକ ବାବଦ ମାସିକ ମାତ୍ର ଟ.୬୦୦/- ପାଉଥିଲେ । ନିଜର ଖାଦ୍ୟପେୟ ଖର୍ଚ୍ଚ ନିଜ ପେନ୍‌ସନରୁ ବହନ କରନ୍ତି ।

ବୌଦ୍ଧବିହାରର ଆର୍ଥିକ ଅବସ୍ଥା ଶୋଚନୀୟ । ସେଥିରେ ଗୋଟିଏ ବଡ଼ ହଲ ଅର୍ଦ୍ଧ ତିଆରି ଅବସ୍ଥାରେ ଲିଣ୍ଟେଲ୍ ଲେଭଲ୍‌ରେ ଅଛି । ଆନୁମାନିକ ଅଟକଳ ହେଲା ୬ ଲକ୍ଷ ଟଙ୍କା । ବଡ଼ ଦୁରୂହ ବ୍ୟାପାର । ଯାହାହେଉ ଭିକ୍ଷୁ ବାବାଙ୍କର ଅଦମ୍ୟ ଉତ୍ସାହରୁ ମାନନୀୟ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ ଓଡ଼ିଶା ସରକାରଠାରୁ ଦାନ କଲେ ଦୁଇ ଲକ୍ଷ ଟଙ୍କା । ମାନନୀୟ ଜାନକୀ ପଟ୍ଟନାୟକ ଦେଲେ ଏକ ଲକ୍ଷ ଟଙ୍କା । କେନ୍ଦ୍ର ସରକାର ଦେଲେ ଦୁଇଲକ୍ଷ ଟଙ୍କା ଓ ଅବଶିଷ୍ଟ ଟଙ୍କା ସର୍ବସାଧାରଣଙ୍କ ଠାରୁ ଆଦାୟ ହୋଇଗଲା ।

ଆଇ.ଡି.ସି.ରୁ ସଦ୍ୟ ଅବସର ନେଇଥିବା ମୋର ଜଣେ ଅନ୍ତରଙ୍ଗ ବନ୍ଧୁ ଶ୍ରୀ ଲକ୍ଷ୍ମୀନାରାୟଣ ବାରିକ ଆମକୁ ବହୁତ ସାହାଯ୍ୟ କରିଛନ୍ତି । ସେ ଆମର ଧନ୍ୟବାଦାର୍ହ । ବହୁ ଶ୍ରମ ଓ ଅର୍ଥ ସଂଗ୍ରହ କରି ଭିକ୍ଷୁ ସଦାନନ୍ଦ ଏବଂ ମୁଁ ଦୁହେଁ ଏକ ମନ ଏକ ପ୍ରାଣ ହେଲାରୁ ଛାତ Casting ହୋଇଗଲା । ଛାତ ଢଳେଇ ଦିନ ମୁଁ ରାତି ୧୧ଟା ବେଳେ ଆସିଲି । ମାତ୍ର ଭିକ୍ଷୁ ବାବା ମୋଟେ ଶୋଇନାହାନ୍ତି । ଭୋର ୪ଟା ବେଳକୁ କାମ ସରିଲା । ଚାରିଆଡ଼େ ସିମେଣ୍ଟ ଓ ଚିପ୍ସ୍ ଗୁଣ୍ଡରେ ପରିପୂର୍ଣ୍ଣ । ଯାହାହେଉ କାର୍ଯ୍ୟଟି ସୁରୁଖୁରୁରେ ହୋଇଯିବାରୁ ମନରେ ଆନନ୍ଦ ଏବଂ ଆଶ୍ୱସ୍ତି ଜାଗ୍ରତ ହେଲା । ଭଗବାନ ବୁଦ୍ଧଙ୍କୁ କୃତଜ୍ଞତାପୂର୍ଣ୍ଣ ପ୍ରଣାମ ଜଣାଇ ହଲ୍ ଘରଟି ସଂପୂର୍ଣ୍ଣ ହୋଇଗଲା । କଣ୍ଟ୍ରାକ୍ଟରମାନେ ବିନା ଲାଭରେ ଓ କିଛିଟା ଦାନ ଆକାରରେ ଦେଇ ଏହି ଧର୍ମ କାର୍ଯ୍ୟରେ ସାମିଲ୍ ହେବାକୁ ପରମ ଭାଗ୍ୟ ମନେକଲେ ।

ବୌଦ୍ଧ ଧର୍ମର ଆଦର୍ଶ ଓ ଲକ୍ଷ୍ୟ ଅନୁଧ୍ୟାନ କଲେ ମନ ପବିତ୍ର ଦିବ୍ୟ ଆନନ୍ଦରେ ଭରିଯାଏ । ଆଦର୍ଶ ହେଲା ବେଦାନ୍ତ ପ୍ରଣାଳୀରେ ନିଷ୍କଳଙ୍କ ଯାଗଯଜ୍ଞ ବିହୀନ ପରଂବ୍ରହ୍ମ ବା ଭଗବାନ ବୁଦ୍ଧଙ୍କୁ ପୂଜା କରିବା ।

ପ୍ରାର୍ଥନା ହେଲା-

ତ୍ରିଶରଣଂ

ଯାହା ପ୍ରଥମେ ବର୍ଣ୍ଣିତ ହୋଇଛି ।

ତାହାପରେ ପଞ୍ଚଶୀଳ ନୀତି । ତାହା ହେଉଛି-

୧) ପାନାତି ପାତା ବେରମଣୀ ଶିକଖାପଦ ସମାଦିୟାମି ।

୨) ଅଦିନ୍ନାଦାନା ବେରମଣୀ ସିକ୍ଖାପଦଂ ସମାଦିୟାମି ।

୩) କାମେସୁ ମିକଛ ମିଥ୍ୟାଚାରୀ ବେରମଣୀ ସିକ୍ଖାପଦଂ ସମାଦିୟାମି ।

୪) ମୁସାବାଦାଂ ବେରମଣୀ ସିକ୍ଖାପଦଂ ସମାଦିୟାମି ।

୫) ସୁରା ମେରୟ ମଜ୍ଜ ପମାଦନ୍ନୋ ବେରମଣୀ ସିକ୍ଖାପଦଂ ସମାଦିୟାମି ।

ଅର୍ଥ:

୧) ପ୍ରାଣୀ ହତ୍ୟାରୁ ବିରତ ହେବାର ନୀତିଶିକ୍ଷା ମୁଁ ଗ୍ରହଣ କରୁଛି ।

୨) ଅଣଦତ୍ତ ଦ୍ରବ୍ୟ ଘେନିଯିବାରୁ ବିରତ ହେବାର ନୀତିଶିକ୍ଷା ମୁଁ ଗ୍ରହଣ କରୁଛି ।

୩) ପରଦାରା ଗମନାଦି ଯୌନ ବ୍ୟଭିଚାରରୁ ବିରତ ହେବାର ନୀତିଶିକ୍ଷା ମୁଁ ଗ୍ରହଣ କରୁଛି ।

୪) ମିଥ୍ୟାଭାଷ (ମିଛ କହିବା, ଚୁଗୁଲି କରିବା) ଓ ଅସଂଯତ ଆଳାପ କରିବାରୁ ବିରତ ହେବାର ନୀତିଶିକ୍ଷା ମୁଁ ଗ୍ରହଣ କରୁଛି ।

୫) ମଦ୍ୟପାନ ଆଦି ପ୍ରମତ୍ତକ ନିଶାଦ୍ରବ୍ୟ ସେବନରୁ ବିରତ ହେବାର ନୀତିଶିକ୍ଷା ମୁଁ ଗ୍ରହଣ କରୁଛି ।

ବୁଦ୍ଧବାବାଙ୍କ ମାଧମରେ ବହୁ ଗୁଣୀ ସାଧୁଜନମାନଙ୍କ ସଂସ୍ପର୍ଶରେ ଆସି ଅପାର ଆନନ୍ଦ ଲାଭ କରିଅଛି ।

ସେଠାକାର ବୈଶାଖ ପୂର୍ଣ୍ଣିମା ବା ବୁଦ୍ଧ ପୂର୍ଣ୍ଣିମା ଉତ୍ସବ ରାଜଧାନୀରେ ପ୍ରସିଦ୍ଧ । ଆମର ସେଥିରେ ପ୍ରାୟ ୨୦/୩୦ ହଜାର ଟଙ୍କା ଖର୍ଚ୍ଚ ହୁଏ । ଆମେ ସମସ୍ତେ କିଛି କିଛି ଦାନ ଆକାରରେ ଦେଇ ସାମାନ୍ୟ ପ୍ରସାଦ ଦିନ ୧୨ ଘଣ୍ଟା ବେଳକୁ ଆୟୋଜନ କରିଥାଉ । ନିୟମ ହେଲା କେହି ଅଖିଆ ଫେରିବେ ନାହିଁ । ସମସ୍ତେ କିଛି ନା କିଛି ପ୍ରସାଦ ପାଇବେ । ମୋର ନିଜେ ଖାଇବା ଅପେକ୍ଷା ଆଗନ୍ତୁକଙ୍କୁ ଖୋଇବାରେ ବେଶୀ ଆନନ୍ଦ । ତାହା ମୁଁ ଭୁବନେଶ୍ୱରୀ ମା'ଙ୍କ ମନ୍ଦିରରୁ ଶିଖିଛି । ତେଣୁ ସେହି ଅଭିଜ୍ଞତାକୁ ପାଥେୟ କରି ଭଗବାନ ବୁଦ୍ଧଙ୍କ ନାମ ସ୍ମରଣ କରି ସବୁ ବର୍ଷ ଏଥିରେ ସଫଳ ହୋଇଛୁ । ମୁଁ ସେଠାରେ ପ୍ରାୟ ୨୫ ବର୍ଷ କାମ କଲିଣି । କେବେହେଲେ ଅସୁବିଧା ହୋଇନାହିଁ ।

ଏଠାରେ ଗୋଟିଏ ଗୁରୁତ୍ୱପୂର୍ଣ୍ଣ ବିଷୟ ଉଲ୍ଲେଖ ନ କରି ରହିପାରୁ ନାହିଁ । ଭଗବାନ ବୁଦ୍ଧ ଓ ମହାପ୍ରଭୁ ଜଗନ୍ନାଥ ଏକ ଏବଂ ଅଭେଦ ଏବଂ ଭଗବାନ ବୁଦ୍ଧ ମହାପ୍ରଭୁ ବିଷ୍ଣୁଙ୍କର ନବମ ଅବତାର ବୋଲି ଓଡ଼ିଶାର ବିଖ୍ୟାତ କବି ଜୟଦେବ ତାଙ୍କ ଦଶାବତାର ନାମକ ସଂଗୀତରେ ରଚନା କରିଛନ୍ତି:-

ନିନ୍ଦସି ଯଜ୍ଞବିଧେରହହ ଶ୍ରୁତିଜାତଂ
ସଦୟ ହୃଦୟ ଦର୍ଶିତ ପଶୁଘାତଂ
କେଶବ ଧୃତ
ବୁଦ୍ଧ ଶରୀର
ଜୟ ଜଗଦୀଶ ହରେ ।

ଏହାଛଡ଼ା ମହାପ୍ରଭୁ ଶ୍ରୀଜୀଉଙ୍କ ପ୍ରସିଦ୍ଧ ରଥଯାତ୍ରା ଉତ୍ସବ ବୁଦ୍ଧ ଧର୍ମର ପରଂପରା । ବୁଦ୍ଧଙ୍କ ପରେ ତାଙ୍କର ଦନ୍ତ ଓ ଅସ୍ଥି ବିଶେଷ ଉପଯୁକ୍ତ ଫରୁଆରେ ପୁରାଇ ସୁସଜ୍ଜିତ ରଥରେ ସହର ପରିକ୍ରମା କରିବାର ବିଧି ରହିଛି । ଏହା ପ୍ରସିଦ୍ଧ ବୌଦ୍ଧ ଦର୍ଶନ ବିଶାରଦ ବୋଧିପ୍ରିୟ ଡ. ରାଧାକୃଷ୍ଣ ସାହୁ ପୁରୀର ତାଙ୍କ ବୁଦ୍ଧ ଜଗନ୍ନାଥ ବହିରେ ଲିପିବଦ୍ଧ

କରିଛନ୍ତି । ଏହାଛଡ଼ା ଶ୍ରୀଜୀଉଙ୍କୁ ଫୁଲମାଳ ହାତରେ ପିନ୍ଧାଯାଏ, ବେକରେ ନୁହେଁ । ଏହା ଠିକ୍ ବୌଦ୍ଧ ପରଂପରା । ଏହିପରି ବହୁତ ଶ୍ରୀଜଗନ୍ନାଥଙ୍କ ନୀତି ବୁଦ୍ଧ ଧର୍ମରୁ ଗୃହୀତ । ମନ୍ଦିର ବେଢ଼ାରେ ଆନନ୍ଦ ବଜାରରେ ଜାତି ଧର୍ମ ନିର୍ବିଚାରରେ ମହାପ୍ରସାଦ ଖାଇବା ବୌଦ୍ଧଧର୍ମରୁ ଜାତିପ୍ରଥା ଲୋପର ଏକ ପ୍ରମାଣ ।

ଓଡ଼ିଶା ଏକ ଐତିହାସିକ ବୌଦ୍ଧଧର୍ମ ପ୍ରଚାରିତ ରାଜ୍ୟ । ଏପରିକି ମଗଧ ସମ୍ରାଟ ଅଶୋକଙ୍କ କଳିଙ୍ଗ ଅଭିଯାନ ପୂର୍ବରୁ ଓଡ଼ିଶାରେ ବୌଦ୍ଧ ଧର୍ମ ଥିଲା ବୋଲି ଐତିହାସିକମାନେ ମତ ଦିଅନ୍ତି । ଆମ ବଉଦ ଜିଲ୍ଲାର ନାମକରଣ ବୌଦ୍ଧରୁ ହୋଇଛି । କେଉଁ ଐତିହାସିକ ଘଟଣାରୁ ଏହି ନାମକରଣ ହୋଇଛି ତାହା ଗବେଷଣାସାପେକ୍ଷ ।

ବର୍ତ୍ତମାନ ସୁଦ୍ଧା କେତୋଟି ସ୍ଥାନ ଅଛି ଯେଉଁ ଗୁଡ଼ିକରେ ଲୋକେ ବୌଦ୍ଧଧର୍ମ ପାଳନ କରନ୍ତି:- ଯଥା ଆଠଗଡ଼ ନିକଟବର୍ତ୍ତୀ ମାଣିଆବନ୍ଦୀ । ଗତ ୨୫ ବର୍ଷ ହେଲା ସେହି ଗ୍ରାମର ମୁଖିଆ ଲୋକେ ଭୁବନେଶ୍ୱରର ବୌଦ୍ଧ ଜୟନ୍ତୀ ଉତ୍ସବରେ ଯୋଗଦାନ କରୁଛନ୍ତି । ମୁଖ୍ୟ ହେଉଛନ୍ତି ବୟୋଜ୍ୟେଷ୍ଠ ଶ୍ରୀ କେଶବ ପାତ୍ର ।

ଆଉ ତିନୋଟି ପ୍ରସିଦ୍ଧ ବୌଦ୍ଧତୀର୍ଥ ହେଉଛି କେନ୍ଦ୍ରାପଡ଼ା ଜିଲ୍ଲାର ଲଳିତଗିରି, ରତ୍ନଗିରି ଏବଂ ଯାଜପୁର ଜିଲ୍ଲାର ଉଦୟଗିରି । ଲଳିତଗିରିରେ ଏକ ବୌଦ୍ଧ ମିଉଜିୟମ ସ୍ଥାପିତ ହୋଇଛି । ସେଠାକୁ ଶହ ଶହ ପର୍ଯ୍ୟଟକ ପ୍ରତିବର୍ଷ ପରିଦର୍ଶନ କରିବାକୁ ଯାଆନ୍ତି । ଉଦୟଗିରି ଓ ରତ୍ନଗିରି ଠାରେ ବର୍ତ୍ତମାନ ପ୍ରତ୍ନତତ୍ତ୍ୱ ବିଭାଗ ଖନନ କରି କେତେକ ଗୁରୁତ୍ୱପୂର୍ଣ୍ଣ ମନ୍ଦିର ଏବଂ ଲୁକ୍‌କାୟିତ ଅଟ୍ଟାଳିକା ଏବଂ ବୌଦ୍ଧ ବିହାରର ସନ୍ଧାନ ପାଇଛନ୍ତି । ମାତ୍ର କୌଣସି ସିଦ୍ଧାନ୍ତରେ ଉପନୀତ ହୋଇନାହାନ୍ତି । ଗୋଟିଏ ବିଷୟ ସ୍ପଷ୍ଟ ପ୍ରତୀୟମାନ ଯେ ଅପେକ୍ଷାକୃତ ଦଳିତ ଓ ହରିଜନ ସଂପ୍ରଦାୟର ଲୋକେ ବହୁବର୍ଷ ଧରି ବୌଦ୍ଧଧର୍ମ ପାଳନ କରି ଆସୁଛନ୍ତି । ମାତ୍ର ସେମାନଙ୍କୁ ରକ୍ଷଣଶୀଳ ହିନ୍ଦୁ ସମାଜ ଆଦର ନ କରିବାରୁ ସେମାନେ ଗ୍ରାମ ବାହାରେ ବୌଦ୍ଧବିହାର ସ୍ଥାପନ କରି ବୌଦ୍ଧଧର୍ମର ଅସ୍ତିତ୍ୱ ବଜାୟ ରଖିଥିଲେ । ଏହା କ୍ରମେ ହିନ୍ଦୁ ଧର୍ମର ମନ୍ତ୍ର ତନ୍ତ୍ର ପଶୁବଳି ପରମ୍ପରାରେ ପ୍ରଭାବିତ ହୋଇ ବହୁ ବର୍ଷ ଧରି ମଳିନ ଲୁପ୍ତ ହୋଇ ଲୋକଲୋଚନ ଅଗୋଚରକୁ ଚାଲିଯାଇଛି ।

# ରେଡ଼କ୍ରସ୍

ଯଦି ମୁଁ କୌଣସି ଅନୁଷ୍ଠାନକୁ ଆନ୍ତରିକ ଶ୍ରଦ୍ଧା କରେ ତାହା ହେଉଛି Indian Red Cross Society, Orissa Branch. ଅନ୍ୟାନ୍ୟ ରେଡ଼କ୍ରସ୍ ତୁଳନାରେ ଓଡ଼ିଶାରେ ରେଡ଼କ୍ରସ ବହୁତ ଉଲ୍ଲେଖନୀୟ ଦାତବ୍ୟ କାର୍ଯ୍ୟ କରିଛି । ସେଗୁଡ଼ିକୁ ସଂକ୍ଷେପରେ ବର୍ଣ୍ଣନା କରିବା ମୋହର ଲକ୍ଷ୍ୟ ।

ରେଡ଼କ୍ରସର ଇତିହାସ

୧୮୫୯ ଖ୍ରୀଷ୍ଟାବ୍ଦରେ ଅଷ୍ଟ୍ରିୟା ଏବଂ ଇଟାଲି ମଧ୍ୟରେ ଭୀଷଣ ଯୁଦ୍ଧ ଲାଗିଥାଏ । ସଲ୍‌ଫରିନୋ ନାମକ ଯୁଦ୍ଧ କ୍ଷେତ୍ରରେ ମୃତାହତ ସଂଖ୍ୟା କିଏ ଗଣନା କରିବ ? ଯେଉଁମାନେ ମରିଗଲେ ସେମାନେ ତ ତରିଗଲେ । ମାତ୍ର ଯେଉଁମାନେ ଆହତ ହୋଇ ଛଟପଟ ହେଉଥାନ୍ତି ସେମାନଙ୍କୁ ପଚାରେ କିଏ ? ସେମାନେ ଯେଉଁ ଆର୍ତ୍ତନାଦ କରୁଥାନ୍ତି କେହି ଶୁଣିବାକୁ ନାହାନ୍ତି ।

ମାତ୍ର କୁରୁକ୍ଷେତ୍ରରେ ପାଣ୍ଡବ ବୀର ଅର୍ଜ୍ଜୁନଙ୍କ ସାରଥୀ ହେଲେ ଭଗବାନ ଶ୍ରୀକୃଷ୍ଣ । ଠିକ୍ ଏହି ଯୁଦ୍ଧ କ୍ଷେତ୍ରରେ ଆହତମାନଙ୍କ ଚିକିତ୍ସା କରିବା ସକାଶେ ସଲଫରିନୋ ଯୁଦ୍ଧ କ୍ଷେତ୍ରରେ ଜିନ୍ ହେନେରୀ ଡୁନାଣ୍ଟ ନାମକ ଜଣେ ଚିତ୍ତବାନ ଲୋକ ଦୟାରେ ବିଗଳିତ ହୋଇ ଗଢ଼ିଲେ ଏକ ଅନୁଷ୍ଠାନ । ନାମ ଦେଲେ ରେଡ଼କ୍ରସ୍ । କ୍ରମେ ଯୁଦ୍ଧକ୍ଷେତ୍ର ବ୍ୟତୀତ ପ୍ରାକୃତିକ ବିପର୍ଯ୍ୟୟ ଓ ଅନ୍ୟାନ୍ୟ ଦୁର୍ବିପାକ ସମୟରେ ରେଡ଼କ୍ରସ୍ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କଲା ।

୧୮୬୨ ରେ ହେନେରୀ ଡୁନାଣ୍ଟ ତାଙ୍କ ସଲଫରିନୋ ଯୁଦ୍ଧ କ୍ଷେତ୍ରରେ ଆହତଙ୍କ ସେବା ବିଷୟରେ ଏକ ପୁସ୍ତିକା ପ୍ରକାଶନ କଲେ । ୧୮୬୩ ରେ ଡୁନାଣ୍ଟଙ୍କ ସଙ୍ଗେ ଜେନେଭାର ଆଉ ଜଣେ ଚିନ୍ତାବାନ ବ୍ୟକ୍ତି ଗୋଟିଏ କମିଟି ଗଠନ କଲେ –"International Committee for Relief to the Wounded."

ସେହିବର୍ଷ ବେସରକାରୀ ସ୍ତରରେ ରେଡ଼କ୍ରସର ଚିତ୍ର ବା ସିମ୍ବଲ ଗୃହୀତ ହେଲା । ମାତ୍ର ୧୮୭୬ରେ ପୃଥିବୀ ବ୍ୟାପୀ International Committee of the Red Cross." ନାମ ଗୃହୀତ ହେଲା ।

୧୯୬୫ ରେ ରେଡ଼କ୍ରସର ୬ ଗୋଟି ମୁଖ୍ୟ ନୀତି ଗୃହୀତ ହେଲା ।

୧୯୯୧ ରେ ଏହାର ନାମ ପୁଣି ପୃଥିବୀ ବ୍ୟାପୀ ବଦଳାଯାଇ Federation of Red Cross and Red Crescent Societies (FRC).

ଏହାର ପରିସର କ୍ରମେ ବହୁତ ବ୍ୟାପ୍ତ ହେବାକୁ ଲାଗିଲା । ଆଉ ଯୁଦ୍ଧ କ୍ଷେତ୍ରରେ ସୀମିତ ନ ହୋଇ ପ୍ରାକୃତିକ ବିପର୍ଯ୍ୟୟ, ଶାନ୍ତି ସମୟରେ ମଧ୍ୟ ଲୋକଙ୍କର ଉତ୍‌ଥାନ ଏବଂ ସ୍ୱାସ୍ଥ୍ୟଶିକ୍ଷା କ୍ଷେତ୍ରରେ ଉନ୍ନତିରେ ବହୁତ କାର୍ଯ୍ୟକ୍ରମ ହାତକୁ ନିଆଗଲା ।

ଇରାକ୍ ଇରାନ୍ ଯୁଦ୍ଧ, ଆଫଗାନୀ ସ୍ଥାନରେ ତାଲିବାନ୍‌ଙ୍କ ଆକ୍ରମଣ, ଶ୍ରୀଲଙ୍କାର ଉତ୍ତର ଭାଗରେ ତାମିଲ୍‌ମାନଙ୍କ ଯୁଦ୍ଧରେ ରେଡ଼୍‌କ୍ରସ ବହୁ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଛି ଯାହା ପୃଥିବୀ ବ୍ୟାପୀ ସର୍ବତ୍ର ପ୍ରଶଂସା ପାଇଛି ।

## ରେଡ଼୍‌କ୍ରସ୍‌ର ମୌଳିକ ନୀତି

**୧) ମାନବିକତା (Humanity)-**

 କୌଣସି ବିଭେଦ ନ ରଖି ଯୁଦ୍ଧକ୍ଷେତ୍ରରେ ଆହତମାନଙ୍କ ସମେତ ଯେକୌଣସି ସ୍ଥାନରେ ମାନବିକ ଦୁଃଖ ଦୂର କରିବା ତଥା ତାହାର ନିରାକରଣ ପାଇଁ ଆନ୍ତର୍ଜାତିକ ତଥା ଜାତୀୟ ସ୍ତରରେ ଉଦ୍ୟମ କରିବା; ଜୀବନ ଏବଂ ସ୍ୱାସ୍ଥ୍ୟ ସହ ପ୍ରତ୍ୟେକ ବ୍ୟକ୍ତିର ସମ୍ମାନ ବଜାୟ ରଖିବା । ପାରସ୍ପରିକ ବନ୍ଧୁତା, ବୁଝାମଣା, ସହଯୋଗ ତଥା ଜନସାଧାରଣଙ୍କ ମଧ୍ୟରେ ଶାନ୍ତି ରକ୍ଷା କରିବାକୁ ପ୍ରୋତ୍ସାହିତ କରିବା ।

**୨) ସମଦର୍ଶିତା (Equality)-**

ଜାତୀୟତା, ଜାତି, ଧର୍ମ, ଧର୍ମବିଶ୍ୱାସ, ଧନୀ, ଦରିଦ୍ର ତଥା ରାଜନୈତିକ ମତବାଦ ନିର୍ବିଶେଷରେ ଦୁଃଖଭୋଗ କରୁଥିବା ଲୋକଙ୍କର ଦୁଃଖ ଲାଘବ କରିବା ପାଇଁ ଯଥାସାଧ୍ୟ ଚେଷ୍ଟା କରିବା ।

**୩) ନିରପେକ୍ଷତା(Neutrality)-**

ସମସ୍ତଙ୍କର ବିଶ୍ୱାସଭାଜନ ହେବାପାଇଁ ସର୍ବ ମତବାଦ ଊର୍ଦ୍ଧ୍ୱରେ ରହି ସାହାଯ୍ୟ କରିବା ।

**୪) ସ୍ୱାଧୀନତା (Independence)**

ଜାତୀୟ ସ୍ତରରେ କାର୍ଯ୍ୟ କରୁଥିବା କର୍ମୀମାନେ, ସେମାନେ ନିଜର ସ୍ୱାତନ୍ତ୍ର୍ୟ ବଜାୟ ରଖିବା ।

**୫) ସ୍ୱେଚ୍ଛାକୃତ କର୍ମ (Voluntary Work)-**

ଏହା ଏକ ସ୍ୱେଚ୍ଛାକୃତ ସେବା ଆନ୍ଦୋଳନ; କୌଣସି ଲାଭ ବା ସ୍ୱାର୍ଥ ପ୍ରଣୋଦିତ ନୁହେଁ ।

୬) ଏକତା (Unity)-

କୌଣସି ଦେଶରେ ଗୋଟିଏ ମାତ୍ର ରେଡ଼କ୍ରସ ବା ରେଡ଼କ୍ରିସେଣ୍ଟ ରହିପାରିବ । ଦେଶର ସୀମା ଭିତରେ ଯେକୌଣସି ସ୍ଥାନରେ ରେଡ଼କ୍ରସ୍ ମାନବିକ କାର୍ଯ୍ୟକ୍ରମ କରିପାରିବ ।

୭.ବିଶ୍ୱଜନୀନତା-

ଆନ୍ତର୍ଜାତିକ ରେଡ଼କ୍ରସ ବା କ୍ରିସେଣ୍ଟ ଏପରି ଏକ ଅନୁଷ୍ଠାନ ଯେଉଁଥିରେ ବିଶ୍ୱସ୍ତରରେ ପରସ୍ପରକୁ ସାହାଯ୍ୟ କରିବାକୁ ସବୁ ସମାଜ / ଗୋଷ୍ଠୀର ସମାନ ମାନ୍ୟତା ତଥା ସମ୍ମାନ, ସମାନ ଦାୟିତ୍ୱ ଓ କର୍ତ୍ତବ୍ୟ ରହିଛି ।

ଏହି ନୀତିଗୁଡ଼ିକ ଏପରି ଉଦାର ଏବଂ ସର୍ବ ସ୍ଥାନ, ଦେଶ, କାଳ, ବର୍ଣ୍ଣ ନିର୍ବିଶେଷରେ ଉଚ୍ଚତମ ଆଦର୍ଶ ପ୍ରଣୋଦିତ ।

କାର୍ଯ୍ୟକ୍ରମ -

ନୀତିଗୁଡ଼ିକ ଯେପରି ଉଦାର, କାର୍ଯ୍ୟକ୍ରମ ମଧ୍ୟ ସେହିପରି । ସେହି କାର୍ଯ୍ୟକ୍ରମର ସଂକ୍ଷିପ୍ତ ସୂଚନା ଦିଆଗଲା ।

୧) ପ୍ରାକୃତିକ ଓ ମନୁଷ୍ୟକୃତ ଦୁର୍ବିପାକ, ଯଥା - ବନ୍ୟା, ବାତ୍ୟା, ମରୁଡ଼ି, ଘରପୋଡ଼ି, ଦଙ୍ଗା ଆଦି ସମୟରେ ଦୁର୍ବଳ ଲୋକଙ୍କୁ ସାହାଯ୍ୟ । ମହାବାତ୍ୟାବେଳେ କଅଣ କାର୍ଯ୍ୟ ହୋଇଛି, ତାର ଏକ ଚିତ୍ର ଏହାପରେ ଦିଆଯିବ ।

୨) ବାତ୍ୟା ଏବଂ ବନ୍ୟା ପ୍ରବଣ ଉପକୂଳବର୍ତ୍ତୀ ଅଞ୍ଚଳରେ ବାତ୍ୟା ଆଶ୍ରୟସ୍ଥଳୀ ନିର୍ମାଣ କରିବା ।

୩) ରକ୍ତ ଭଣ୍ଡାର ପାଇଁ ରକ୍ତଦାନ ସଂଗ୍ରହ ଶିବିର ମାନଙ୍କର ଆୟୋଜନ କରିବା । ୪୫ଟି ରକ୍ତ ଭଣ୍ଡାରର ସୁପରିଚାଳନା ।

୪) ଶାରୀରିକ ଓ ମାନସିକ ଅକ୍ଷମ ବ୍ୟକ୍ତିମାନଙ୍କୁ ମେଡ଼ିକାଲ ସାହାଯ୍ୟ, ଉପକରଣ ଯୋଗାଣ ଇତ୍ୟାଦି

୫) ଦିବାରାତ୍ରି ଆମ୍ବୁଲାନ୍ସ ସେବା, ମୃତ ଶରୀରକୁ ଅଳ୍ପ ମୂଲ୍ୟରେ ସମ୍ମାନର ସହ ଶ୍ମଶାନରେ ପହଞ୍ଚାଇବା ।

୬) ଦୁର୍ଘଟଣାଗ୍ରସ୍ତ ଲୋକମାନଙ୍କୁ ଡାକ୍ତରଖାନା ବା ଘରେ ପହଞ୍ଚାଇବା ।

୭) ଜରାନିବାସ ପ୍ରତିଷ୍ଠା ।

୮) ଡାକ୍ତରଖାନାମାନଙ୍କରେ ନୂତନ ୱାର୍ଡ଼ ପ୍ରତିଷ୍ଠା । ଅଳ୍ପ ମୂଲ୍ୟରେ ରୋଗୀଙ୍କୁ ଔଷଧ ବିତରଣ କରିବା ।

୯)　ପରିବେଶ ସୁରକ୍ଷା ବିଷୟରେ ଜନସଚେତନତା ବୃଦ୍ଧି କରିବା ।

୧୦) କଲେଜ ଏବଂ ସ୍କୁଲମାନଙ୍କରେ ଯୁବ ରେଡ଼କ୍ରସ, ଜୁନିଅର ରେଡ଼୍‌କ୍ରସ ସଂସ୍ଥା ଗଠନ କରି ଛାତ୍ରମାନଙ୍କୁ ସାମାଜିକ କାର୍ଯ୍ୟରେ ଉତ୍ସାହିତ କରିବା;

ଏହିପରି ବହୁତ କିଛି ।

ଏହିସବୁ କାର୍ଯ୍ୟକ୍ରମ କେବଳ ପୋଥି ବାଇଗଣ ବା ପୁସ୍ତକ ବିଦ୍ୟା ନା ବାରି ବାଇଗଣ ବା ବାସ୍ତବ କ୍ଷେତ୍ରରେ କାର୍ଯ୍ୟକରୁଛି ଦେଖିବା ।

ଏହାର ପ୍ରତ୍ୟକ୍ଷ ପ୍ରମାଣ ଓଡ଼ିଶାବାସୀ ପାଇଛନ୍ତି ୧୯୯୯ର ମହାବାତ୍ୟା ସମୟରେ । ସେହି ସମୟର ହୃଦୟ ବିଦାରକ ଦୃଶ୍ୟ ସଂକ୍ଷେପରେ ବର୍ଣ୍ଣିତ ହେଲା । ବର୍ତ୍ତମାନ ମହାବାତ୍ୟାର ଦଶବର୍ଷ ପାଳନ କରାଯାଉଛି । ପ୍ରତ୍ୟକ୍ଷଦର୍ଶୀ ଭାବେ ମୁଁ ଯାହା ଅଙ୍ଗେ ନିଭାଇଛି ତାହା ବର୍ଣ୍ଣନା କରୁଛି ।

୧୯୯୯ ଅକ୍ଟୋବର ୨୯ ତାରିଖ । ତାହା ନଅଙ୍କ ଦୁର୍ଭିକ୍ଷ ୧୮୬୬ ପରି ଏକ ଭୟାବହ ଦିବସ । କହିଲେ ବା ଭାବିଲେ ଛାତି ଫାଟିଯାଉଛି ।

ଅକ୍ଟୋବର ୨୯ ତାରିଖ ରାତି ୧୦ଟା ବେଳେ ଟି.ଭି. ଓ ରେଡ଼ିଓ ଘୋଷଣା କଲେ ଯେ ଭୟାବହ ବାତ୍ୟା ଓଡ଼ିଶା ଉପକୂଳକୁ ଆସୁଥିଲା । ମାତ୍ର ପାରାଦୀପର କିଛି ମାଇଲ୍ ପୂର୍ବରେ ତାହା ବାଙ୍ଗଲାଦେଶ ଅଭିମୁଖେ ମୁହାଁଇଛି । ମାତ୍ର ୩୦ ତାରିଖ ସକାଳେ ଏହା ଭୁଲ୍ ପ୍ରମାଣିତ ହେଲା । ରାତ୍ରିର ଶେଷ ପ୍ରହରକୁ ବାତ୍ୟାର ଗତିପଥ ବଦଳିଗଲା । ଘଣ୍ଟାକୁ ୮୦/୧୦୦ କି.ମି. ଗତିରେ ବାତ୍ୟା ବହିବାକୁ ଲାଗିଲା । ୩୦ ତାରିଖ ସକାଳୁ ସେଦିନ ତମାମ ଓଡ଼ିଶାର ଉପକୂଳ ଜିଲ୍ଲାଗୁଡ଼ିକ; ଯଥା:- କେନ୍ଦ୍ରାପଡ଼ା, କଟକ, ପୁରୀ, ଜଗତସିଂହପୁର ଅଞ୍ଚଳର କେତେ କ୍ଷୟ କ୍ଷତି ହୋଇଛି ତାର କୌଣସି ଖବର ଅନ୍ତର ନାହିଁ । ଖୋଦ ରାଜଧାନୀ ଭୁବନେଶ୍ୱରର ଅବସ୍ଥା ଗାଆଣି ନ ଗାଏ । ନିଜେ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ଗିରିଧାରୀ ଗମାଙ୍ଗ ବିନା ବିଦ୍ୟୁତ୍, ଫୋନ୍ ସଂଯୋଗ ନଥାଇ ନିଜ ବାସଭବନରେ ନିରାଶ୍ରୟ ଭାବେ ବସିଥାନ୍ତି । ୩୧ ତାରିଖ ଦିନଯାକ ଏହିପରି ଚାଲିଲା । ରାଜଧାନୀର ମୁଖ୍ୟ ଅଞ୍ଚଳରେ ନା ଅଛି ଇଲେକଟ୍ରିକ୍, ନା ପାଣି ନା ଟେଲିଫୋନ୍ । ଖାଦ୍ୟ କଥା କିଏ ପଚାରେ । କେହି କାହାରି ଘରକୁ ଯାଇ ପାରୁନାହାନ୍ତି । ପଡ଼ିଶା ଘରେ କଅଣ ହେଲା ଜଣାନାହିଁ । ଡକା ଡକି ହେଉଥାଉ । କେବଳ ଦେଖୁଥାଉ । ରାସ୍ତା ଉପରେ ଗଛ ପଡ଼ିଛି । ଗାଡ଼ି ଯାଇପାରିବ ନାହିଁ । ଇଲେକଟ୍ରିକ୍ ଖୁଣ୍ଟ ଉପୁଡ଼ି ପଡ଼ିଛି । ଟ୍ରାନସଫର୍ମର ପୋଡ଼ିଯାଇଛି । ବଡ଼ ହତାଶ ଭାବ । ଓଡ଼ିଶାରେ କଅଣ ପ୍ରଳୟ ହେଲା ?

ସବୁଠାରୁ ବେଶି ଦୁର୍ଦ୍ଦଶାଗ୍ରସ୍ତ ହୋଇଥିଲା ପାରଦ୍ୱୀପ ପାଖ କୁଜଙ୍ଗ ଓ ଏରସମା ଅଞ୍ଚଳ । ସମୁଦ୍ର ମାଡ଼ିଆସିଲା । ଲୋକେ ଚାଳ ଉପରେ ବସିଥାନ୍ତି । ଚାଳ ପାଣିରେ ବୁଡ଼ିଗଲା । ୭/୮ ପ୍ରାଣୀ ବିଶିଷ୍ଟ ବହୁତ ପରିବାର ଜୁଆରରେ ଭାସିଗଲେ ।

ଗୋଟିଏ ଦୁଃଖଦ ଘଟଣା ଶୁଣନ୍ତୁ । ଏରସମା ଅଞ୍ଚଳରେ ଗୋଟିଏ ଛୋଟ ହରିଜନ ପରିବାର । ବାପ, ମା, ତିନୋଟି ପିଲା । ସମୁଦ୍ର ମାଡ଼ି ଆସିବା ଦେଖି ଗୋଟିଏ ଉଚ୍ଚ ଗଛ ଡାଳରେ ଆଶ୍ରୟ ନେଲେ । ସମୁଦ୍ର ଜୁଆର ଗଛ ମୂଳରେ ଥିଲା । କ୍ରମେ ଗଛର ଗଣ୍ଡିକୁ ପାଣି ଛୁଇଁଲା । ପିଲାଙ୍କୁ ଧରି ସ୍ତ୍ରୀ ଲୋକଟି ମଝିରେ ଥିଲା । ପାଣି ବଢ଼ି ବଢ଼ି ଆସି ଗଛର ଅଧାକୁ ସ୍ପର୍ଶକରି ସେମାନଙ୍କୁ ବୁଡ଼ାଇଦେଲା । ପୁରୁଷ ଲୋକଟି ଗଛର ବହୁ ଉପରେ ଥିଲା । ସେ ରକ୍ଷା ପାଇଗଲା । ମାତ୍ର ସାରା ପରିବାର ସମୁଦ୍ର ଜୁଆରରେ ଭାସିଗଲେ । ପାଣି ଛାଡ଼ିଗଲା । ପରେ ଗଛ ତଳକୁ ଆସି ସ୍ତ୍ରୀ ଓ ପିଲାମାନଙ୍କୁ ଖୋଜାଖୋଜି କଲା । କେତେ ନାମ ଧରି ଡାକିଲା । ମାତ୍ର ସେମାନେ ଯେ ସମୁଦ୍ର ଜୁଆରରେ ନିଶ୍ଚିହ୍ନ । ଲୋକଟି ସେହି କଥା ସମସ୍ତଙ୍କୁ କହୁଥାଏ ଏବଂ କାନ୍ଦୁଥାଏ । ଏହିପରି କ୍ରନ୍ଦନର ରୋଳ ସବୁଆଡ଼େ ଛୁଟିଥାଏ ।

ଏହିପରି ୨ ଦିନ ଚାଲିଲା । କି ଦୟନୀୟ ଅବସ୍ଥା ? ତାହା ବର୍ଣ୍ଣନାତୀତ । ଖୋଦ ରାଜଧାନୀରେ ୧୫ ଦିନ ଧରି ବିନା ଇଲେକଟ୍ରିକ, ପାଣି ଓ ଟେଲିଫୋନ ଲାଇନ ବିନା ରହିଲୁ ।

ଯାହାହେଉ ଓଡ଼ିଶାର ମହାବାତ୍ୟା ରେଡ଼ିଓ ଓ ଟି.ଭି. ରେ ୩୧ ତାରିଖ ରାତିରେ ପ୍ରଚାରିତ ହେଲା । କେବଳ ଭାରତ ନୁହେଁ, ପୃଥିବୀର ସମସ୍ତ ଦେଶ ଶୁଣି ମର୍ମାହତ ହେଲେ । ଏହି ଦୁର୍ଦ୍ଦିନ ସମୟରେ ରେଡ଼କ୍ରସ୍‌ର କର୍ତ୍ତବ୍ୟ କଅଣ ? ସେତେବେଳେ ସଂପାଦକ ଥିଲେ ଶ୍ରୀ ଈଶ୍ୱରଚନ୍ଦ୍ର ଦାଶ, ଆଇ.ଏ.ଏସ୍. (ରିଟାୟାର୍ଡ଼) । ଆମେ ସ୍ଥିର କଲୁ ଟେଲିଫୋନ୍ ମିଳିଲାପରେ ଅନ୍ୟାନ୍ୟ ଷ୍ଟେଟ୍ ବ୍ରାଞ୍ଚ୍ ଗୁଡ଼ିକୁ ଦୁଃସମ୍ବାଦ ଦେବା । ବାସ୍ତବିକ ଅରକ୍ଷିତକୁ ଦଇବ ସାହା । ଆମର ପଡ଼ୋଶୀ ରାଜ୍ୟ ଆନ୍ଧ୍ରପ୍ରଦେଶର ମୁଖ୍ୟମନ୍ତ୍ରୀ ଥିଲେ ଏନ.ଡି.ଏ. ର ଶ୍ରୀଯୁକ୍ତ ଚନ୍ଦ୍ରବାବୁ ନାଇଡୁ । ତାଙ୍କର ସମୟୋଚିତ ଅଯାଚିତ ଅକୁଣ୍ଠ ସାହାଯ୍ୟ ଓଡ଼ିଶା କସ୍ମିନ୍ କାଳେ ଭୁଲିପାରିବ ନାହିଁ ।

ତାଙ୍କ ନିର୍ଦ୍ଦେଶରେ ଭାଇଜାଗରୁ (ବିଶାଖପାଟନମ୍)ର ୨/୩ ଟି ଟ୍ରକ ଆସି ପହଞ୍ଚିଲା । ଗୋଟିକର କାମ ହେଲା ରାସ୍ତା ସଫା କରି ଗଛ କାଟି ଇଲେକ୍‌ଟ୍ରିକ୍ ଲାଇନ ମରାମତି କରିବା । ମାଷ୍ଟର କ୍ୟାଣ୍ଟିନ୍ ପାଖରେ ଜଣେ ଜୁନିୟର ଇଂଜିନିୟର ଗାଡ଼ି

ସହିତ କାମ କରୁଥିଲେ । ଆମ ଇଂଜିନିୟରମାନେ ଲାଇନ୍ ମରାମତି କରିବାକୁ ଡରିଲେ । ମାତ୍ର ଆନ୍ଧ୍ର ଇଂଜିନିୟରମାନଙ୍କ ମଧ୍ୟରୁ ଜଣେ ଦକ୍ଷ ସାହସୀ ଇଂଜିନିୟର ଉପରକୁ ଉଠିଲେ । ଲାଇନ୍ ସବୁ ମିଶି ଯାଇଥିଲା । ସେ ବାଦୁଡ଼ି ପରି ଉପରୁ ଖସିପଡ଼ି ମୃତ୍ୟୁବରଣ କଲେ । ଅନ୍ୟ ଜଣକ ମୃତ୍ୟୁକୁ ନ ଡ଼ରି ଲାଇନ୍‌କୁ କୌଣସିମତେ ମରାମତି କଲେ । ବଡ଼ବଡ଼ ମେନ୍ ଲାଇନ୍‌ଗୁଡ଼ିକ ନଭେମ୍ବର ପହିଲା ଦିନ ମରାମତି ହୋଇଗଲା । ଅନ୍ତତଃ ପାୱାର ହାଉସ୍, ପାଣି ଲାଇନ୍, ପମ୍ପ, ସବ୍-ଷ୍ଟେସନ ପ୍ରଭୃତି । ମନ୍ତ୍ରୀମାନଙ୍କ କ୍ୱାର୍ଟର୍ସ, ସେକ୍ରେଟେରିଏଟ୍, ଡାକ୍ତରଖାନା, ରେଡ଼କ୍ରସ ପରି ଅତି ଆବଶ୍ୟକ ଲାଇନ୍ ଗୁଡ଼ିକ ମରାମତି ହୋଇଗଲା । ବ୍ୟକ୍ତିଗତ ଘର ଲାଇନ୍ ଗୁଡ଼ିକ ମରାମତି କରି ଠିକ୍ କରିବା ପାଇଁ ୧୫ ଦିନ ଲାଗିଲା ।

ଆଉ ଯେଉଁ ଦୁଇଗୋଟି ଗାଡ଼ି ଆସିଥିଲା, ସେମାନେ ଜଗତସିଂହପୁର ଲାଇନ୍‌ରେ ଗଛ କାଟି ରାସ୍ତା ସଫା କରି ପାରାଦୀପ ଲାଇନ ରାସ୍ତା ଚାଲୁ କରି ଦେଲେ । ଆନ୍ଧ୍ରପ୍ରଦେଶ ରାଜ୍ୟ ଆମ ପଡ଼ିଶା ହୋଇ ଆମକୁ ଯେଉଁ ଅସମୟରେ ସାହାଯ୍ୟ କରିଛନ୍ତି ସେମାନଙ୍କର ସହଯୋଗ ଏବଂ ସାହାଯ୍ୟ ଚିରସ୍ମରଣୀୟ ।

ଏବେ ଏହି ଦୁର୍ଦ୍ଦିନ ସମୟରେ ରେଡ଼କ୍ରସ ସୋସାଇଟି କିପରି ଭାବରେ ସାହାଯ୍ୟ କରି ପାରିବେ ?

ସେକ୍ରେଟେରୀ ଶ୍ରୀ ଈଶ୍ୱରଚନ୍ଦ୍ର ଦାଶଙ୍କ ଅଧ୍ୟକ୍ଷତାରେ ଏକ ଉଚ୍ଚସ୍ତରୀୟ ରିଲିଫ୍ କମିଟି ଗଠନ କଲେ । ସେଥିରେ ଶ୍ରୀ କେ.ବିଶ୍ୱନାଥନ, ମୁଁ, ଶ୍ରୀମତୀ ପ୍ରମିଳା ପତି, ଶ୍ରୀମତୀ ବାସନ୍ତୀ ପାଣି ଏହିପରି କେତେଜଣଙ୍କୁ ନେଇ ଉଚ୍ଚସ୍ତରୀୟ କମିଟି କାର୍ଯ୍ୟକାରୀ ହେଲା । ଆମେମାନେ ସାଇ ସାଇରେ ବ୍ୟକ୍ତିଗତ ଉଦ୍ୟମରେ ଦାନ ସଂଗ୍ରହ କଲୁ । ରନ୍ଧା ଖାଦ୍ୟ, ଔଷଧ, ବିସ୍କୁଟ, ଅମୂଲ୍ ସ୍ପ୍ରେ, ଶୁଖିଲା ଖାଦ୍ୟ ଇତ୍ୟାଦି । ଏଥିରେ ଶ୍ରୀ ବିଶ୍ୱନାଥନ୍‌ଙ୍କ ଅକାତର ଦାନ ଅତୁଳନୀୟ । ତାଙ୍କ ବଡ଼ପୁଅ ଭାଇଜାଗ୍‌ରେ ଷ୍ଟେଟ୍ ବ୍ୟାଙ୍କର ମେନେଜର ଥିଲେ । ୨ ତାରିଖରେ ୪ ଖଣ୍ଡ ଟ୍ରକରେ ଜିନିଷ ଭର୍ତ୍ତି ହୋଇ ଆସିଲା । ଗୋଟିଏ କାର୍‌ରେ ଜଣେ ଡାକ୍ତର, କଂପାଉଣ୍ଡର, ମେଡ଼ିସିନ୍, ହାଲୋଜିନ୍ ବଟିକା (ପାଣି ବିଶୋଧନ କରିବା ପାଇଁ) ଆଉ ଚାରିଗୋଟି ଟ୍ରକରେ ରିଲିଫ୍ ସାମଗ୍ରୀ ବୁହା ହୋଇ ଭୁବନେଶ୍ୱରରେ ସକାଳ ୭ ଘଣ୍ଟା ବେଳେ ପହଞ୍ଚିଲା । ଆମ୍ଭେମାନେ ବହୁତ ଲୋକ ରେଡ଼କ୍ରସ ଅଫିସ୍‌କୁ ଗଲୁ ।

ଗୋଟିଏ ଟ୍ରକରେ ପ୍ରାୟ ୫୦୦ ପ୍ଲାଷ୍ଟିକ୍ ଅଖାରେ ପ୍ୟାକ୍ । ଗୋଟିଏ ଅଖାରେ ନିମ୍ନଲିଖିତ ଜିନିଷ ରହିଛି- ଉଷୁନା ବା ଅରୁଆ ଚାଉଳ ୫ କେ.ଜି., ଡାଲି ୧ କେ.ଜି., ଆଳୁ ୨ କେ.ଜି., ପିଆଜ ୧/୨ କେ.ଜି., ମସଲାଗୁଣ୍ଡ, ଲଙ୍କା, ଧନିଆ, ଜିରା ୧୦୦ ଗ୍ରାମ୍, ଅମୂଲ୍ କ୍ଷୀରଗୁଣ୍ଡ ୧/୨ କେ.ଜି., ବିସ୍କୁଟ୍ ୫୦୦ ଗ୍ରାମ୍, କ୍ୟାଣ୍ଡେଲ୍ ଦିଆସିଲି ୬ଟା ଲେଖାଏଁ ଗୋଟିଏ ପୁଡ଼ିଆ । ଚୁଡ଼ା ୧ କେ.ଜି., ତେନ୍ତୁଳି ୧/୨ କେ.ଜି. ପ୍ରଭୃତି । ୫୦୦ ଅଖା ଗୋଟିଏ ଟ୍ରକ୍‌ରେ ରହିଛି । ଏହିପରି ୪ ଟ୍ରକ୍ ଜିନିଷ । ଯେଉଁ ଅଞ୍ଚଳରେ ଡାଏରିଆ ବା ପେଟ ଖରାପ, ଜ୍ୱର ପ୍ରବଣ ଜାଗା, ସେଠାକୁ ଡାକ୍ତର ଓ ଔଷଧ ପଠାଗଲା । ମୁଁ ସେହି ୨୦ ଜଣ ଲୋକଙ୍କୁ ନେଇ ପ୍ରିୟା ହୋଟେଲ୍‌ରେ ସାଉଥ୍ ଇଣ୍ଡିଆନ୍ ଟିଫିନ୍ ଏବଂ କଫି ଦେବାରୁ ସେମାନେ ସନ୍ତୁଷ୍ଟ । ଗୋଟିଏ ଟ୍ରକ୍ ପୁରୀ ଜିଲ୍ଲା ଅସ୍ତରଂଗ ଦିଗରେ ଗଲା । ସଙ୍ଗରେ ଆମର ୨ ଜଣ ପଥପ୍ରଦର୍ଶକ ଏବଂ ସ୍ୱେଚ୍ଛାସେବୀ । ଏହିପରି ଜଗତସିଂହପୁରକୁ ୨ ଗୋଟି । ଗୋଟିଏ ଏରସମା ଅଞ୍ଚଳରେ ଏବଂ ଆଉ ଗୋଟିଏ ନାଉଗାଁ । ଚତୁର୍ଥଟି କେନ୍ଦ୍ରାପଡ଼ା ଅଞ୍ଚଳକୁ ପଠାଗଲା । ପିଇବାପାଇଁ ପାଣି ଗୋଟିଏ ବଡ଼ ଜରିକିନ୍‌ରେ ଦିଆଗଲା । ଆସିବା ପାଇଁ ଡିଜେଲ୍ ଦିଆଯାଇଥିଲା । ଗଲାବେଳକୁ ସେମାନେ ତେଲ ଖର୍ଚ୍ଚ ଦେଇଥିଲେ । ସେମାନେ ସମସ୍ତେ ରାତି ୧୨ଟା ବେଳକୁ ଫେରି ସଙ୍ଗେ ସଙ୍ଗେ ରେଡ଼କ୍ରସ୍ ସେକ୍ରେଟେରୀଙ୍କୁ ଜଣାଇ ଭାଇଜାଗ୍ ଫେରିଗଲେ । ବାସ୍ତବିକ୍ ରିଲିଫ୍ ବା ଅନ୍ୟାନ୍ୟ କାର୍ଯ୍ୟରେ ଆନ୍ଧ୍ର ଲୋକମାନଙ୍କ କାର୍ଯ୍ୟ ଦକ୍ଷତା ଅତି ଉଚ୍ଚକୋଟୀର । ସେମାନଙ୍କର କାର୍ଯ୍ୟଦକ୍ଷତା ଦେଖିଲେ ଆମକୁ ମୁଣ୍ଡ ନୁଆଇଁ ଦେବାକୁ ହେବ ।

ରିଲିଫ୍ କାର୍ଯ୍ୟ ଚାଲିଲା ପ୍ରାୟ ୧ ମାସ । ଏହା ଭିତରେ ଆମେ ବିଭିନ୍ନ ବାତ୍ୟା ପ୍ରପୀଡ଼ିତ ଅଞ୍ଚଳକୁ ଯାଇଛୁ । ମୁଁ ପୁରୀ ଜିଲ୍ଲାର ଅସ୍ତରଙ୍ଗ, କାକଟପୁର, ଗୋପ, ନିମାପଡ଼ା ପ୍ରଭୃତି ଅଞ୍ଚଳକୁ ଯାଇଛି । ମୋର ଶଶୁର ଘର ଗାଁ କାକଟପୁରର ଗଙ୍ଗା-ନାରାୟଣପୁର ଶାସନ । ମୁଁ ସେହି ଅଞ୍ଚଳର ଦୁରବସ୍ଥା ଦେଖି କାନ୍ଦ କାନ୍ଦ ହୋଇଗଲି । ଔଷଧ, ବିସ୍କୁଟ୍, ମୁଢ଼ି, ଉଖୁଡ଼ା, ହୁଡୁମ୍ବ ଏହିପରି ଶୁଖିଲା ଖାଦ୍ୟଦ୍ରବ୍ୟ ଉତ୍ତର ପ୍ରଦେଶରୁ ଆସିଥିଲା ।

ମୁଁ ୨/୩ ଥର ଏରୋଡ୍ରମରେ ପ୍ଲେନ୍‌ରେ ଯେଉଁ ରିଲିଫ୍ ଆସୁଥାଏ, ଦେଖିବାକୁ ଯାଇଥିଲି । ଗୋଟିଏ ବଡ଼ ଗୋଦାମ୍ ଜିନିଷରେ ଭର୍ତ୍ତି । ଟ୍ରକରେ ଜିନିଷ ଲୋଡ଼ ହୋଇ ଷ୍ଟାଡ଼ିୟମ୍‌ରେ ଜମା ହେଉଥିଲା । ଭାରତର ବିଭିନ୍ନ ପ୍ରାନ୍ତରୁ ପ୍ଲେନ୍‌ରେ ଜିନିଷ ଆସି

ଅନ୍‌ଲୋଡ଼ କରି ଟ୍ରକ୍‌ରେ ଜିନିଷ ବୁହା ଚାଲିଥାଏ । ଟ୍ରକ୍‌ଗୁଡ଼ିକ ଏରୋଡ୍ରମଠାରୁ ଲାଇନ୍ ଲାଗିଥାଏ, ପଛକୁ ପଛ । ଗୋଟିଏ ଟ୍ରକ୍ ଯାଇ ଷ୍ଟାଡ଼ିୟମରେ ଜିନିଷ ଦାଖଲ କରି ନେବାକୁ ୪ ଘଣ୍ଟା ଅପେକ୍ଷା । ଟ୍ରକ୍‌ଚାଳକମାନେ ନାକେଦମ୍ । ପୁଣି ଯେଉଁମାନେ ଷ୍ଟାଡିୟମ୍ ଭିତରେ ଜିନିଷ ରଖି ରସିଦ୍ ଦେଉଥିଲେ ସେମାନେ ମଧ୍ୟ ଧୀରେ ସୁସ୍ଥେ ହଲି ଡଲି ଟ୍ରକ୍‌ମାନଙ୍କୁ ବିଦା କରୁଥିଲେ । ପୁଣି ଯେତେବେଳେ ଜିନିଷ ପଠା ଯାଉଥିଲା ସେତେବେଳେ ମଧ୍ୟ ଘୋର ବିଭ୍ରାଟ । କେଉଁ ଯାଗାକୁ ଚୁଡ଼ା ବସ୍ତେକୁ ଗୁଡ଼ ବସ୍ତେ । ଆଉ କେଉଁ ଯାଗାକୁ ଖାଲି ଚୁଡ଼ା, ଗୁଡ଼ର ନାମ ଗନ୍ଧ ନାହିଁ । ସେଥିରେ ପୁଣି ବଡ଼ ବଡ଼ ହାକିମଙ୍କ ଯୋଗସାଜସରେ ରାଜନୈତିକ ଦଲାଲ୍‌ମାନେ ମିଶି କମ୍ବଳ ବଦଳ କରିଛନ୍ତି । କେଉଁଠାରୁ ଭଲ ବିଦେଶୀ କମ୍ବଳ ଟ.୮୦୦/- ମୂଲ୍ୟର ୧୦୦୦ଟା ଆସିଛି । ଶୁଣାଯାଏ ଯେ ପ୍ରାୟ ୧୦୦ ଖଣ୍ଡେ କମ୍ବଳ ବଦଳ କରି ନେଇ ଟ.୧୦୦/- ଦରର ଶସ୍ତା କମ୍ବଳ ଭର୍ତ୍ତି କରିଦେଲେ । କଥାଟା ପ୍ରଘଟ ହେଲା । ମାତ୍ର ଏହି ଦୁର୍ନୀତି ଚପାଇ ଦିଆଗଲା । ବାସ୍ତବିକ୍ ଯେଉଁମାନେ ଦାୟିତ୍ୱରେ ଶୀର୍ଷ ସ୍ଥାନରେ ଅଛନ୍ତି, ସେମାନେ ଯଦି ଏପରି ଅପକର୍ମ କରିବେ, ''କାହାକୁ କହିବା, କପାଳରେ ସିନା କର ମାରିବା'' । ଦରିଦ୍ର ବାତ୍ୟାଞ୍ଚଳ ଦୁରବସ୍ଥାପନ୍ନ ଲୋକମାନଙ୍କ ପାଇଁ ଉଦ୍ଦିଷ୍ଟ ଦାନକୁ ଯିଏ କରଗତ କରିବେ, ତାଙ୍କୁ ଭଗବାନ ଦଣ୍ଡ ଦେବେ । ଏହା ଆମର ବିଶ୍ୱାସ ।

ଆଉ ଗୋଟିଏ ପ୍ରତ୍ୟକ୍ଷ ଦୁର୍ନୀତି ଜଣେ ନାମଜାଦା ରାଜନୈତିକ ନେତା କରିଥିଲେ । ରାତି ରାତି ଷ୍ଟାଡିୟମ୍‌ରୁ ଗୋଟିଏ ଟ୍ରକ ଭର୍ତ୍ତି ବିଭିନ୍ନ ରିଲିଫ୍ ଜିନିଷ ଆଣି ୪ ନମ୍ବର ମାର୍କେଟ୍‌ରେ ତାଙ୍କର ଜଣେ ଆପଣାର ଦୋକାନରେ ଭର୍ତ୍ତିକଲେ । ପାଖ ପଡ଼ୋଶୀ ଦୋକାନୀମାନେ ଚୂପୁର ଚାପୁର ହେଲେ । ପୋଲିସ୍‌କୁ ଖବର ଦେଲେ । ପୋଲିସ ଆସି ଚଢ଼ାଉ କଲେ । ମାତ୍ର ଜିନିଷ ଜବତ କରିବା ପୂର୍ବରୁ ଉଭେଇଗଲା । କେଶ ମୋଟେ ହେଲା ନାହିଁ । ରାଜନୈତିକ ନେତାଙ୍କ ପ୍ରଭାବରୁ କେଶ୍ ଫସର ଫାଟି ଗଲା । ଦୁର୍ନୀତି ଏହିପରି ଧରାପଡ଼ି ମଧ୍ୟ କେଶ୍ ରୁଜୁ ହେଉନାହିଁ । ଆଇନ୍ କିପରି କାର୍ଯ୍ୟକାରୀ ହେବ ? ଯାହାହେଉ ଦୁଃଖ କଷ୍ଟେ ବାତ୍ୟାଞ୍ଚଳ ରିଲିଫ୍ କାର୍ଯ୍ୟ ଏହିପରି ମାସେ ଉପରେ ଚାଲିଲା ।

ସରକାରଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଚାଲିଥିବା ରିଲିଫ୍ ଅତି ଅଦକ୍ଷ ଓ ନିମ୍ନମାନର ହେଲା ବୋଲି ଭୁକ୍ତଭୋଗୀମାନେ ଅଭିଯୋଗ କଲେ । ସେ ତୁଳନାରେ ରେଡ଼କ୍ରସ୍ ପରିଚାଳିତ ରିଲିଫ୍ ଯେତେଦୂର ସମ୍ଭବ ନିରପେକ୍ଷ ଏବଂ ହୃଦୟ ସହକାରେ

କରାଯାଇଛି । ଆମର ସବୁଠାରୁ ସଚ୍ଚୋଟ ଏବଂ ସମର୍ପିତ ସଭ୍ୟମାନଙ୍କ ଦାୟିତ୍ୱରେ ଏହା ପରିଚାଳିତ ହେବାରୁ ଅନ୍ତତଃ ଅଭିଯୋଗ ଖୁବ୍ ସର୍ବନିମ୍ନ ହୋଇଛି ।

ଛାଡ଼ନ୍ତୁ ସେ କଥା । ବାତ୍ୟାଞ୍ଚଳ ରିଲିଫ୍ କାମପରେ ଥଇଥାନ ଏବଂ ପୁନର୍ବାସ କାର୍ଯ୍ୟକ୍ରମ କିପରି ହେଲା ସେ ବିଷୟରେ କିଞ୍ଚିତ ସୂଚନା ଦେବି ।

ସେତେବେଳେ ୨୦୦୦ ମସିହା ରେଡ଼କ୍ରସ ସେକ୍ରେଟେରୀ ଭାବେ ଆସିଲେ ଶ୍ରୀଯୁକ୍ତ ରବିରତ୍ନ ଦାସ । ସେ ଯଦିଚ ରିଟାୟାର୍ଡ ଆଇ.ଏ.ଏସ୍., ତେବେ ତାଙ୍କ ସଚ୍ଚୋଟ ଏବଂ ସମର୍ପିତ ଗୁଣ ଶୁଣନ୍ତୁ । ସେ International Federation of Red Cross and Red Crescent କୁ ଖବର ଦେଲେ । ପ୍ରଥମେ ଆସିଲେ German Red Cross Organisation. ଜଣେ ଦକ୍ଷ ପ୍ରୌଢ଼ ମହିଳା Madam Breta କୁ ଏଠାକାର ହେଡ୍ ରୂପେ ପ୍ରେରଣ କଲେ । ତାଙ୍କ ସ୍ୱାମୀ Bangala Desh ରେ ଏହିପରି ବାତ୍ୟା ରିଲିଫ୍ କାର୍ଯ୍ୟ ସ୍ତ୍ରୀଙ୍କ ସହିତ କରୁଥିଲେ । ଗୋଟିଏ ସନ୍ତାନ ଜର୍ମାନୀରେ । ବର୍ଷକୁ ଥରେ ଦଂପତି ନିଜ ଦେଶକୁ ତାଙ୍କ ରେଡ଼କ୍ରସ୍ ଖର୍ଚ୍ଚରେ ଯାଇ ମାସେ ଯାଏ ରହି ନିଜ ପରିବାର ଓ ବନ୍ଧୁବାନ୍ଧବଙ୍କୁ ସଂଖୋଳି ଆସିବେ । ସ୍ୱାମୀ ମଝିରେ ମଝିରେ ଓଡ଼ିଶା ଆସି ସହଧର୍ମିଣୀଙ୍କ ସଙ୍ଗରେ ରହୁଥିଲେ ।

Madam Breta ଙ୍କ ପ୍ରତି ମୋର ପ୍ରଗାଢ଼ ସମ୍ମାନ । ଇଂଲିଶ୍ ଖଣ୍ଡି ଖଣ୍ଡି କହନ୍ତି । ଯେଉଁଗୁଡ଼ିକ ଦୁର୍ନୀତିର ବାଟ ତାହାକୁ ବନ୍ଦ କରିବାକୁ ପରାମର୍ଶ ଦିଅନ୍ତି । ସର୍ବଦା ଗଠନମୂଳକ ପରାମର୍ଶ । ସେମାନେ ଆମର ୨୩ଟି ବାତ୍ୟା ଆଶ୍ରୟ ସ୍ଥଳ ଗୋଟିକୁ ୪୦ ଲକ୍ଷ ଟଙ୍କାରେ ନିର୍ମାଣ କରିଥିଲେ । ଠିକ୍ ଅକ୍ଟୋବର ବା ତା ପୂର୍ବରୁ ଏହା ସଂପୂର୍ଣ୍ଣ ବାସୋପଯୋଗୀ ହୋଇଥିଲା । ସେଥିରେ ୫୦୦ ଲେଖାଏଁ ଲୋକ ଆଶ୍ରୟ ନେଇ ଜୀବନ ରକ୍ଷା କରି ପାରିଥିଲେ । ୨୩ ଆଶ୍ରୟ ସ୍ଥଳମାନ ବଙ୍ଗଳାଦେଶ ଅଭିଜ୍ଞତାରୁ କରାଯାଇଛି । ବର୍ତ୍ତମାନ ଏପରି ୨୩୦ ବାତ୍ୟାଶ୍ରୟ କରାଯାଇଛି ବୋଲି କୁହାଯାଉଛି । ଉଚ୍ଚ ଯାଗାମାନଙ୍କରେ ଆହୁରି ମାଟି ପକାଇ ଭଲ ଭାବରେ ମଜଭୁତ କରି ୩୦ ଫୁଟ ଉଚ୍ଚ ବଡ଼ ବଡ଼ କଂକ୍ରିଟ୍ ପିଲାର ଗଢ଼ା ହୋଇ ତଳେ ମଣିଷ ଗୋରୁ ଗାଈ ରହିପାରିବେ । ୩୦ ଫୁଟ ଉଚ୍ଚରେ ପ୍ରାୟ ୫୦୦ ଲୋକ ରହିବା ପରି ଘର । ୨ଟି ବଡ଼ ବଡ଼ ବଖରା । ଗୋଟିଏ ପୁରୁଷ ଆଉ ଗୋଟିଏ ସ୍ତ୍ରୀଲୋକମାନଙ୍କ ପାଇଁ । ଘର ଗୁଡ଼ିକ ଏତେ ମଜଭୁତ ଏବଂ ଉଚ୍ଚମାନର ଯେ ସମୁଦ୍ର ଜୁଆର ୧୦ ଫୁଟ ବା ତଦୂର୍ଦ୍ଧ ହୋଇ ଆସିଲେ ମଧ୍ୟ କିଛି କ୍ଷତି କରିପାରିବ ନାହିଁ । Madam Bretaଙ୍କ ତତ୍ତ୍ୱାବଧାନରେ ଏବଂ

ରେଡ଼କ୍ରସର ସହାୟତାରେ ଆଉ ୨୩ଟି ଗଠନ କରିବା ପାଇଁ ଜର୍ମାନ ରେଡ଼୍କ୍ରସ୍ ପ୍ଲାନ୍ କଲେ । ପ୍ରାୟ ୬/୭ ମାସ ମଧ୍ୟରେ କାମ ସଂପୂର୍ଣ୍ଣ ।

ଆଉ ଗୋଟିଏ ଭଲ କାର୍ଯ୍ୟକ୍ରମ ହାତକୁ ନେଲେ । ବାତ୍ୟାଞ୍ଚଳର ଅଧିକ କ୍ଷତିଗ୍ରସ୍ତ ଲୋକମାନଙ୍କ ପିଲାମାନଙ୍କ ପାଇଁ Nutrition Programme କାର୍ଯ୍ୟକ୍ରମ ହାତକୁ ନେବା । ରେଡ଼କ୍ରସ୍ ନିଜେ ସପ୍ଲାଇ କରିବା ଗହମ ଛତୁଆ ୭୦%, ଚାଉଳ ୨୦%, ଚିନି ୫%, ଦୁଧଗୁଣ୍ଡ ଓ ସାମାନ୍ୟ ଗୁଜରାଟି ଗୁଣ୍ଡ ଏଭଳି ଛତୁଆ ତିଆରି କରି ପିଲାଙ୍କୁ ଜଣ ପିଛା ୨୦୦ ଗ୍ରାମ ଦିଆଗଲା । କେବଳ ପାଣି ମିଶାଇ ପିଲାମାନେ ଖାଇପାରିବେ । ଏହି ଛତୁଆ ମାସକୁ ପ୍ରାୟ ୪୦ ଲକ୍ଷ ଟଙ୍କାର ସପ୍ଲାଇ ହେଲା । ପ୍ରତି ସପ୍ଲାଇର ସାମ୍ପୁଲ୍ ଗୋଟିଏ କମିଟି ତଦାରଖ କରିବ । ଆମ ରେଡ଼କ୍ରସ ସୋସାଇଟିର ଗୋଟିଏ ଦୋକାନ ଏହି ଦାୟିତ୍ୱ ନେଲା । ସେକ୍ରେଟେରୀ, Madam Breta, ମୁଁ, ଶ୍ରୀମତୀ ପ୍ରମିଳା ପତି ଓ ଶ୍ରୀମତୀ ବାସନ୍ତି ପାଣି କମିଟିର ଦାୟିତ୍ୱରେ ରହିଲୁ । ଦୀର୍ଘ ୨ ବର୍ଷ କାର୍ଯ୍ୟକାରୀ ହେଲା । ପିଲାଙ୍କ ଓଜନ ପ୍ରୋଜେକ୍ଟ କାର୍ଯ୍ୟକାରୀ ହେବା ଆଗରୁ ନିଆଯିବ । ପିଲାଙ୍କୁ ଖାଦ୍ୟ ଦେଲାପରେ ପ୍ରତ୍ୟେକ ମାସ ଏହିପରି ଓଜନ ନିଆଯିବ । ଦେଖାଗଲା ଯେ ରୁଗ୍ଣ ରୋଗାକ୍ରାନ୍ତ ଶିଶୁ ଓ ପିଲାମାନଙ୍କର ୩/୪ ମାସ ମଧ୍ୟରେ ୧୦% ରୁ ୧୫% ଓଜନ ବଢ଼ିଗଲା । ପିଲାମାନେ ଆଗ୍ରହରେ ଭୋଜନ କଲେ । ଆଜିକାଲିର ମଧ୍ୟାହ୍ନ ଭୋଜନ ଅପେକ୍ଷା ଯଥେଷ୍ଟ ସୁବିଧାଜନକ ଏବଂ ଶସ୍ତା । ମୁଁ ଶୁଣିଛି ଜର୍ମାନ୍‌ରେ କେତେକ ଜାଗାରେ ଏହା କାର୍ଯ୍ୟକାରୀ ହେଉଛି । ଏହି ଛତୁଆ ସପ୍ଲାଇରେ କେ.ଜି.ରେ ଟ.୨/- ଲେଖାଏଁ ଯେଉଁ ଲାଭ ହେଉଥିଲା, ସେଥିରୁ ପ୍ରାୟ ୪ ଲକ୍ଷ ଟଙ୍କା Andhra Bankରେ Term Deposit କରି ଯେଉଁ ସୁଧ ଆସୁଛି, ସେଥିରୁ ରେଡ଼କ୍ରସ୍ ତରଫରୁ ଅକ୍ଷମ ପିଲା ଓ ଲୋକମାନଙ୍କୁ ଥଇଥାନ ଏବଂ ଉପକରଣ ଯୋଗାଇବାରେ ଖର୍ଚ୍ଚ ହେଉଛି । ଏହା ଆମ କମିଟିର ସଭ୍ୟ ତଥା ସେକ୍ରେଟେରୀ, ଶ୍ରୀମତୀ ପ୍ରମିଳା ପତି, ମୁଁ ଏବଂ ଶ୍ରୀମତୀ ବାସନ୍ତି ପାଣି ଙ୍କୁ ନେଇ ଗୋଟିଏ କମିଟି ସ୍ଥିର କରନ୍ତି । ଆମ୍ଭେମାନେ ରେଡ଼କ୍ରସ୍‌ରେ ଏତେ ଦୀର୍ଘକାଳ କାମ କଲାପରେ ଏହାଠାରୁ ଆନନ୍ଦଦାୟକ କଅଣ ଥାଇପାରେ ।

German Lady Madam Breta ଙ୍କ ପ୍ରତି ମୋର ବହୁତ ସମ୍ମାନ । ଥରେ ଆମ ଘରେ ଓଡ଼ିଆ ପିଠାପଣା କରି ଖୁଆଇବା ପାଇଁ ମନସ୍ଥ କରିଥିଲି । ମାତ୍ର ତାହା ଫଳବତୀ ହୋଇପାରିଲା ନାହିଁ । ସେ ହଠାତ୍ Aids Control Programmeରେ ତାଙ୍କ ସ୍ୱାମୀଙ୍କ ସହ Kenya transfer ହୋଇଗଲେ । ଗଲାବେଳେ ଆମର ବଡ଼ ଭଉଣୀ ପରି ଆଖି ଛଳ ଛଳ ମୁଖରେ ଆମ୍ଭମାନଙ୍କଠାରୁ ବିଦାୟ ନେଲେ ।

ରେଡ଼କ୍ରସରେ ବହୁତ ପୁରାତନ ସେକ୍ରେଟେରୀଙ୍କ ସଙ୍ଗେ ମୁଁ କାର୍ଯ୍ୟ କରିବାର ସୌଭାଗ୍ୟ ଅର୍ଜନ କରିଛି । ସେମାନଙ୍କ ମଧ୍ୟରେ ସର୍ବାଧିକ କାଳ ହେଉଛି ଶ୍ରୀଯୁକ୍ତ ରବିରତ୍ନ ଦାସଙ୍କ ଅମଳରେ । ତାଙ୍କ ସମୟରେ ଓଡ଼ିଶା ରେଡ଼କ୍ରସ୍ ଏକ ନଗଣ୍ୟ ଅନୁଷ୍ଠାନରୁ ଭାରତରେ ପ୍ରଥମ ସ୍ଥାନ ଅଧିକାର କରି ଶୀର୍ଷ ସ୍ଥାନରେ ୩ ବର୍ଷ ଲାଗ ଲାଗ ରହିପାରିଛି । ଏହା ଅନେକ ରାଜ୍ୟର ଗାତ୍ରଦାହ ହୋଇଛି ସତ, ମାତ୍ର ଆମେ ତ ଆମ କର୍ତ୍ତବ୍ୟ ସୁଚାରୁରୂପେ ସଂପାଦନା କରିଛୁ । ଆମ ଉପରେ କାହାର କଅଣ ମନ୍ତବ୍ୟ କାହିଁକି ଶୁଣିବା ?

ଆହୁରି ଗୋଟିଏ ବିଷୟ ଉଲ୍ଲେଖ ନ କରି ରହିପାରୁ ନାହିଁ । ଓଡ଼ିଶାର ଦୁଇଜଣ ବରପୁତ୍ର ଶ୍ରେଷ୍ଠ ରେଡ଼କ୍ରସ୍ ସଭ୍ୟ ରୂପେ ଭାରତ ବାହାରେ ସୁନାମ ଅର୍ଜନ କରିଛନ୍ତି । ପ୍ରଥମଟି ହେଲେ ଶ୍ରୀଯୁକ୍ତ ହୃଷିକେଶ ହରିଚନ୍ଦନ । ଗୁଜରାଟ କଚ୍ଛ ଅଞ୍ଚଳର ଭୂମିକମ୍ପ ସମୟରେ ତାଙ୍କ କାର୍ଯ୍ୟଦକ୍ଷତା ଦେଖି ଆନ୍ତର୍ଜାତୀୟ ରେଡ଼କ୍ରସ ତାଙ୍କୁ ମନୋନୀତ କରି ଶ୍ରୀଲଙ୍କା ପଠାଇଥିଲେ ।

ଦ୍ୱିତୀୟ ଜଣକ ହେଉଛନ୍ତି ସ୍ୱର୍ଗତଃ ପ୍ରଫେସର ଶିବ ନାରାୟଣ ମିଶ୍ର, ବାଣପୁର ଅଞ୍ଚଳର । ବାଙ୍ଗଲାଦେଶ ବାତ୍ୟା ସମୟରେ ଦୁଇଜଣ ଅଫିସର ଭାରତ ଟିମ୍‌ରେ ସାମିଲ୍ ହୋଇ ଓଡ଼ିଶାରୁ ପ୍ରେରିତ ହୋଇଥିଲେ । କାର୍ଯ୍ୟଦକ୍ଷତା ଏବଂ ସମର୍ପିତ ସେବା ଦେଖି ତାଙ୍କୁ ବାଙ୍ଗଲାଦେଶ କର୍ତ୍ତୃପକ୍ଷଙ୍କ ଅନୁରୋଧ କ୍ରମେ ଆଉ ୩ ମାସ କାର୍ଯ୍ୟ କରିବାକୁ ସୁଯୋଗ ଦିଆଯାଇଥିଲା । ସେ ସେଠାରେ ବହୁତ ସୁନାମ କରିଥିଲେ । ମାତ୍ର ବିଧିର ବିଧାନ ଅତି ବିଚିତ୍ର । ୫୦ ବର୍ଷ ବୟସ ପୂର୍ବରୁ ଅତି ଅଚାନକ ଭାବେ ବାଙ୍ଗଲାଦେଶରୁ ଫେରିବାର ଅତି ଅଳ୍ପ ଦିନ ବ୍ୟବଧାନରେ ଆମ୍ଭମାନଙ୍କୁ ଶୋକ ସାଗରରେ ଭସାଇ ସ୍ୱର୍ଗବାସ କଲେ । ଗୋଟିଏ କାର ଦୁର୍ଘଟଣାରେ ଟ୍ରକ ସଙ୍ଗରେ ଧକ୍କା ଲାଗି ପେଟ୍ରୋଲ ଟାଙ୍କିରୁ ଆସିବା ପୂର୍ବରୁ ସେହି ସ୍ଥାନରେ ଶେଷ । ତାଙ୍କ ସ୍ମୃତିରେ ରେଡ଼କ୍ରସ ଅଫିସ୍ ଏକ ଦିନ ଛୁଟି ହୋଇଯାଇଥିଲା ।

ସୁତରାଂ ଏହିପରି ବ୍ୟକ୍ତିମାନଙ୍କର ସୁନାମ ଆମର ପୂର୍ବତନ ସେକ୍ରେଟେରୀ ରବିରତ୍ନ ଦାସଙ୍କ ପ୍ରେରଣାରେ ସମ୍ଭବ ହେଲା । ତାଙ୍କୁ ଶତ ଧନ୍ୟବାଦ । ଆମର ବର୍ତ୍ତମାନ ସେକ୍ରେଟେରୀ ଡ଼.ମଙ୍ଗଳା ପ୍ରସାଦ ମହାନ୍ତି ଜଣେ ବିଦ୍ୱାନ୍, ସମର୍ପିତ ଭାବାପନ୍ନ ଏବଂ ସୋଭିଏଟ୍ ୟୁନିୟନ୍‌ରେ Glassnost ଉପରେ ରିସର୍ଚ୍ଚ କରିଛନ୍ତି ।

ତାଙ୍କ ସମୟରେ Orissa Red Cross ର ଉତ୍ତରୋତ୍ତର ଉନ୍ନତି ହେବ, ଏହି ଦୃଢ଼ ଆଶା ଓ ବିଶ୍ୱାସ ଆମର ରହିଛି ।

ମୋ ମତରେ ରେଡ଼କ୍ରସ ଅନୁଷ୍ଠାନ ପରି ମହତ୍ ଅନୁଷ୍ଠାନ ନାହିଁ । କେବଳ ପ୍ରାକୃତିକ ବିପର୍ଯ୍ୟୟବେଳେ ନୁହେଁ, ଅନ୍ୟ ସମୟରେ ମଧ୍ୟ ଏହା ବହୁତ କାର୍ଯ୍ୟ କରିପାରିବ । ରେଡ଼କ୍ରସର ବଡ଼ ଦାୟିତ୍ୱ ରାଜ୍ୟର ସ୍ୱାସ୍ଥ୍ୟ ବିଭାଗ ସମନ୍ୱୟରେ ଆଦିବାସୀ, ଅପହଞ୍ଚ ଜାଗାରେ ସ୍ୱାସ୍ଥ୍ୟସେବା ଯୋଗାଇଦେବା । ବିଶେଷତଃ KBK ଜିଲ୍ଲାଗୁଡ଼ିକରେ ସ୍ୱାସ୍ଥ୍ୟ ଶିବିର ଅନୁଷ୍ଠାନ କରି ସାଧାରଣ ରୋଗଗୁଡ଼ିକର ପ୍ରତିଷେଧ ଓ ଚିକିତ୍ସା କରାଇବା ଜରୁରୀ । ଆହୁରି ଗୋଟିଏ ଭଲ ଅନୁଷ୍ଠାନ ହେବ ଆନ୍ଧ୍ର ପ୍ରଦେଶରେ ଯେପରି Rajib Gandhi Arogyashree ଯୋଜନାରେ ଗୋଟିଏ ବଡ଼ ଗାଡ଼ିରେ ଯାଇ ଗ୍ରାମାଞ୍ଚଳରେ ଚିକିତ୍ସା ଯୋଗାଇ ଲୋକମାନଙ୍କର ପ୍ରଭୂତ ମଙ୍ଗଳ ହୋଇପାରୁଛି, ସେହିପରି ଉଦ୍ୟମ ଆମ ରାଜ୍ୟରେ ହେବା ବାଞ୍ଛନୀୟ ଏବଂ ଜରୁରୀ ।

## Global Warming
## (ବିଶ୍ୱ ଉତ୍ତପ୍ତୀକରଣ)

ମହାକବି କାଳିଦାସ ମହାରାଜା ବିକ୍ରମାଦିତ୍ୟଙ୍କ ନବରତ୍ନଙ୍କ ସଭାରେ ଥିଲେ । ଖ୍ରୀଷ୍ଟପୂର୍ବ ତୃତୀୟ ଶତକରେ ତାଙ୍କର ପ୍ରସିଦ୍ଧ ମେଘଦୂତ କାବ୍ୟରେ ଲେଖିଥିଲେ-

''ଆଷାଢ଼ସ୍ୟ ପ୍ରଥମ ଦିବସେ ମେଘମାଶ୍ଳିଷ୍ଟ ସାନୁମ୍,
ବପ୍ରକ୍ରୀଡ଼ା ପରିଣତ ଗଜନ ପ୍ରେକ୍ଷଣୀୟଂ ଦଦର୍ଶ ।''

ସେହିଦିନ ଠାରୁ ଲୋକମତ ଚଳି ଆସୁଛି ଯେ ପ୍ରଥମ ଆଷାଢ଼ ଅର୍ଥାତ୍ ରଜ ସଂକ୍ରାନ୍ତିରେ ଆକାଶରେ ମେଘମାଳା ଦୋଳା ଦୋଳା ହୋଇ ବର୍ଷା ଆରମ୍ଭ ହୁଏ । ମାତ୍ର ଏହି କେତେ ବର୍ଷ ହେଲା ଏହାର ବ୍ୟତିକ୍ରମ ଦେଖାଯାଉଛି । ଏହି ହାଲ ବର୍ଷ ୨୦୦୯ ଦେଖନ୍ତୁ । ଜାନୁଆରୀ ମାସରୁ ୬ ମାସ ପର୍ଯ୍ୟନ୍ତ ବର୍ଷାର ନାମ ଗନ୍ଧ ନାହିଁ । ପ୍ରାକ୍ ମୌସୁମୀକାଳୀନ ବର୍ଷା ଉଭେଇ ଗଲା । ରଜସଂକ୍ରାନ୍ତିରେ ବର୍ଷା ନ ହେବାରୁ ଭାରତ ଭୂମିରେ ହାହାକାର ପଡ଼ିଗଲା । ତାରିଆଡ଼େ ୪୫ ଡିଗ୍ରୀରୁ ଉତ୍ତାପ ଅଧିକ । ରଜ ସଂକ୍ରାନ୍ତିରେ ବର୍ଷା ନ ହେବାରୁ ମହାପ୍ରଭୁ ଶ୍ରୀ ଜଗନ୍ନାଥଙ୍କୁ ଲୋକେ ଆର୍ତ୍ତ କଣ୍ଠରେ ପ୍ରାର୍ଥନା କଲେ ଧୂଳିଆ ଗୁଣ୍ଡିଚା ନ ହୋଇ କାଦୁଆ ଗୁଣ୍ଡିଚା ହେଉ । ଶେଷରେ ଶ୍ରୀଗୁଣ୍ଡିଚା ଦିନ ଜୁନ୍ ୨୪ ତାରିଖରେ ପ୍ରଭୁ ଜଗତର ଭକ୍ତମାନଙ୍କର ପ୍ରାର୍ଥନା ଶୁଣି ଇନ୍ଦ୍ରଙ୍କୁ ନିର୍ଦ୍ଦେଶ ଦେଲେ । ବର୍ଷାର ଆରମ୍ଭ ହେଲା । ତଥାପି ଓଡ଼ିଶା ଓ ଦେଶରେ ଶତକଡ଼ା ୭୦/୮୦% ବୃଷ୍ଟି ହୋଇଛି । ପୁରା ଝାଡ଼ଖଣ୍ଡର ୨୨ଟି ଯାକ ଜିଲ୍ଲାରେ ଅନାବୃଷ୍ଟି ଓ ଦେଶରେ ୨୦୦ଟି ଜିଲ୍ଲାରେ ମରୁଡ଼ି । ଇନ୍ଦ୍ର ନ ପାଳିଲେ ଖାଲି କେନ୍ଦ୍ରରୁ ଅର୍ଥ ଆଣି କେତେ ଦିନ ଚଳିବ ? ମାଗି ଆଣିଲା ଚିଅଣ ସୁଡ଼କାଏ ।

ଏହି ପାଣିପାଗର ବିପର୍ଯ୍ୟୟର ପ୍ରଧାନ କାରଣ Global Warming ବା ବିଶ୍ୱ ଉତ୍ତପ୍ତୀକରଣ । ମୋର ସୀମିତ ଜ୍ଞାନ ବିଷୟରେ ମୁଁ ସଚେତନ । ମାତ୍ର ଖବରକାଗଜରୁ ସଂଗୃହୀତ ସମ୍ବାଦ ଏକତ୍ର କରି ମୁଁ ଅନୁଧ୍ୟାନ କଲି । ଆମ IIPA ଭାରତୀୟ ପ୍ରଶାସନ ଅନୁଷ୍ଠାନର ଓଡ଼ିଶା ଶାଖାରେ ଗୋଟିଏ ଆଲୋଚନା ଚକ୍ରର ଆୟୋଜନ କରି ଉତ୍କଳ ବିଶ୍ୱବିଦ୍ୟାଳୟର Physics Professor Dr. Laxmidhar Moharana ଙ୍କୁ ଅନୁରୋଧ କଲି । ତାଙ୍କ ବିଶଦ Specialist ଜ୍ଞାନ ସାହାଯ୍ୟରେ CD picture ଛବିରେ ସେହି ଆଲୋଚନା ଚକ୍ରରେ ସେ ମୁଖ୍ୟ ବକ୍ତା ରୂପେ ପ୍ରାୟ ୨ ଘଣ୍ଟା ଭାଷଣ ଦେଲେ ।

ମୋର ଦାୟିତ୍ୱ ହେଲା ଏହି ଆଲୋଚନା ଚକ୍ରର Introductory speech ୧୫ ମିନିଟ୍ ମୁଁ ଦେଇଥିଲି ।

ଏଥିରୁ ଲବ୍ଧ ଜ୍ଞାନରୁ ମୁଁ ଲେଖିଥିବା ପ୍ରବନ୍ଧକୁ ଏକତ୍ର କରି ମୋର ଜାମାତା ଶ୍ରୀ ପ୍ରସନ୍ନ କୁମାର ତ୍ରିପାଠୀ ଓ ମୋର ବନ୍ଧୁ ବାନ୍ଧବଙ୍କ ଅନୁରୋଧ କ୍ରମେ ମୁଁ ଏହି ଅଧ୍ୟାୟଟି ଲେଖୁଛି ।

ବିଷୟଟି ଥିଲା **Global Warming and its impact on India.**

ଆମେ ଯେଉଁ ପୃଥିବୀରେ ଆଦିମ ଯୁଗରୁ ବାସ କରୁଛୁ, ତାହା କ୍ରମେ ଉତ୍ତପ୍ତୀକରଣ ହେଉଛି । ତାର ସବିଶେଷ ବିବରଣୀ ପ୍ରଦତ୍ତ ହେଲା ।

ତା ୧୦/୭/୨୦୦୭ ଦିନ ନରୱେର ଓସଲୋ ଠାରେ U.S.A ର ପୂର୍ବତନ Vice President Mr Algore ଏବଂ ଭାରତର ପ୍ରସିଦ୍ଧ Climate Specialist Dr. Rajendra Pachouri ଏହି ବିଶ୍ୱ ଉତ୍ତପ୍ତୀକରଣ ଉପରେ ମିଳିତ ଭାବେ ନୋବେଲ ପ୍ରାଇଜ୍ ଗ୍ରହଣ କରିଥିଲେ । ସେହି ଉତ୍ସବରେ Mr Algore ଭାଷଣ ଦେଇଥିଲେ । ଆମ୍ଭେ ମାନବ ଜାତି ଯେଉଁ ପୃଥିବୀରେ ବାସ କରୁଛୁ, ତାହା କ୍ରମେ କ୍ରମେ ଅଧୋଗତି ଅଭିମୁଖରେ ଦ୍ରୁତ ଗତିରେ ଧାବମାନ । ଆମେ ଏଠାରେ ଉପସ୍ଥିତ ଥିଲାବେଳେ ସେହି ସଂକଟର ପୂରାପୂରି ସମ୍ମୁଖୀନ । ଆମ ପୃଥିବୀ ଗ୍ରହକୁ ଏହି ଧ୍ୱଂସାଭିମୁଖୀ ପଥରୁ ରକ୍ଷା କରିବା ଆମର ନୈତିକ କର୍ତ୍ତବ୍ୟ । ଏହାର ସମାଧାନ ଯୁଦ୍ଧକାଳୀନ ଭିତ୍ତିରେ ହେବା ବିଧେୟ । ସେ China ଏବଂ USA ଦୁଇ ରାଷ୍ଟ୍ରକୁ ଆହ୍ୱାନ କରି କହିଥିଲେ, "ସେମାନେ ଅତି ଶୀଘ୍ର ତାଙ୍କ ଦେଶର ବାୟୁମଣ୍ଡଳକୁ ନିର୍ଗତ ଅଙ୍ଗାରକାମ୍ଳ ବାଷ୍ପକୁ କମାଇବା ଦିଗରେ ଦ୍ରୁତ ପଦକ୍ଷେପ ଗ୍ରହଣ କରନ୍ତୁ, ନଚେତ୍ ଆମ୍ଭେମାନେ ଆମ ବଂଶଧରଙ୍କ ପାଖରେ ଉତ୍ତରଦାୟୀ ରହିବୁ । Dr. Pachouri ମଧ୍ୟ ଠିକ୍ ସେହିପରି ଓଜସ୍ୱିନୀ ଆହ୍ୱାନ ଦେଇଥିଲେ ।

ଆମେ ବାସ କରୁଥିବା ପୃଥିବୀ ସୂର୍ଯ୍ୟଙ୍କ ଠାରୁ 15 Crores KM ଦୂରତାରେ ଅବସ୍ଥିତ । ସୂର୍ଯ୍ୟଙ୍କର ଉତ୍ତାପ ଯାହା ପୃଥିବୀ ପୃଷ୍ଠରେ ପଡୁଛି, ତାର ବହୁ ପରିମାଣ Radiation ବା ବିକୀରଣ ପ୍ରଣାଳୀରେ ଉପରକୁ ଚାଲିଯାଏ । ଆମର ବାୟୁମଣ୍ଡଳ ପ୍ରାୟ ୪୦୦ କି.ମି. ଉର୍ଦ୍ଧ୍ୱକୁ ବ୍ୟାପୃତ । ପ୍ରଥମ ସ୍ତର ୩୦-୪୦ କି.ମି. କୁ Tropo sphere , ତା ଉପର ସ୍ତରକୁ Stratosphere ଏବଂ ତା ଉପର ୩୦୦-୪୦୦ କି.ମି. ଉଚ୍ଚତା ପର୍ଯ୍ୟନ୍ତ ସ୍ତର ଓଜନ sphere । Chemistry ରେ OZONE gas $CO_2$ ବା Carbon Dioxide ଏବଂ $OXYZEN_2$ ନେଇ ଗଠିତ । ଏହି ଓଜନ ସ୍ତର ସୂର୍ଯ୍ୟର ଉତ୍ତାପ ହ୍ରାସ କରିବାକୁ ସହାୟକ ହୁଏ । ଏହା ଏକ ଛତା ପରି କାର୍ଯ୍ୟ କରେ । ମାତ୍ର Carbon gas emission ଯୋଗୁ ଏହା

ଯେତେବେଳେ ହ୍ରାସ ପାଇଥାଏ, ତାର ସୁରକ୍ଷା ସ୍ତରର ଶକ୍ତି ନଷ୍ଟ ହୋଇଯାଏ । ୧୯୯୦ ପୂର୍ବରୁ Carbon House Gas ର ପରିମାଣ ବହୁତ କମ୍ ଥିଲା । ଏହାର ବର୍ତ୍ତମାନ ପରିମାଣ ୨୭୦ PPM (Parts per Million) । ଏହାର ସର୍ବୋଚ୍ଚ ଲକ୍ଷ୍ମଣରେଖା ହେଉଛି 400 PPM । ମାତ୍ର ଏହା ଅତି ଦ୍ରୁତ ଗତିରେ ବୃଦ୍ଧି ପାଇବାରେ ଲାଗିଛି । ଏହାକୁ କମାଇବା ପାଇଁ ୩୬ ଟି ବିକାଶଶୀଳ ରାଷ୍ଟ୍ର ସେମାନଙ୍କ ଶିଳ୍ପଜାତ ନିର୍ଗତ କାର୍ବନ୍ ଗ୍ୟାସ କମେଇବାକୁ GDP ର 1.6% ଉତ୍ପାଦନ କମାଇଲେ ଯାଇ ସମ୍ଭବ । ସେମାନେ ସେଥିପାଇଁ ପ୍ରସ୍ତୁତ କି ?

ଏଥିପାଇଁ ବହୁ ଆନ୍ତର୍ଜାତୀୟ ସମ୍ମିଳନୀ ହୋଇ ସାରିଛି । ଜାପାନ୍‌ର Kyoto ଠାରେ ୧୯୯୭ ରେ ଏକ ସମ୍ମିଳନୀ ହୋଇଥିଲା । ସେଥିରେ କୌଣସି ସିଦ୍ଧାନ୍ତ ଗ୍ରହଣ କରା ନ ଯାଇ କେବଳ ଏକ Road Map ବା ମାନଚିତ୍ର ବା ନକ୍ସାର ପରିକଳ୍ପନା କରାଯାଇଥିଲା । ଶେଷରେ ନଭେମ୍ବର ୨୦୦୭ ରେ ଇଣ୍ଡୋନେସିଆର ବାଲିଦ୍ୱୀପରେ ଅନୁଷ୍ଠିତ ସମ୍ମିଳନୀରେ ପୃଥିବୀର ପ୍ରାୟ ୩୦୦ ଦେଶ ଯୋଗ ଦେଇଥିଲେ । ସେଥିରେ କେତେକ ନିର୍ଦ୍ଦିଷ୍ଟ ପ୍ରସ୍ତାବ ଗୃହୀତ ହୋଇଥିଲା । କୁହାଯାଇଥିଲା ପ୍ରତ୍ୟେକ ଦେଶ ସ୍ୱତଃପ୍ରବୃତ୍ତ ହୋଇ ସେମାନଙ୍କର ଗ୍ରୀନ ହାଉସ୍ ଗ୍ୟାସ ନିର୍ଗତ ପରିମାଣ କମାଇବା ପାଇଁ ଯୋଜନା କରନ୍ତୁ । ଏହା କରିବା ଅତି ଜରୁରୀ ।

ଏହା ନକଲେ ଅବସ୍ଥା ଭୟାବହ ହେବ । ବିଶ୍ୱର ଉତ୍ତାପ ବଢ଼ିଲେ ଅତ୍ୟୁଚ୍ଚ ପର୍ବତ ଶିଖରରୁ; ଯଥା:- ହିମାଳୟ, Andes, Alps ରୁ ବରଫ ବିଗଳିତ ହେବ । ଆମ୍ଭର ଚିରସ୍ରୋତା ଗଙ୍ଗା ନଦୀରେ ଗୀଷ୍ମ ଦିନରେ ଜଳର ସ୍ରୋତ କମିଯିବ । ବିଶ୍ୱରେ ଖାଦ୍ୟ ଉତ୍ପାଦନ ହ୍ରାସ ପାଇବ । ଏପରିକି ପାନୀୟ ଜଳର ଘୋର ଅଭାବ ପଡ଼ିବ । ବିଶେଷତଃ ଏସିଆ ଓ ଆଫ୍ରିକା ଦେଶର ଦରିଦ୍ର ଲୋକେ ଜଳ ଓ ଖାଦ୍ୟ ଅଭାବରୁ ଜୀବନ ମରଣ ସଂଗ୍ରାମ କରିବେ । ସମୁଦ୍ରର ଜଳସ୍ତର ବଢ଼ିଯିବ । ଓଡ଼ିଶାର ୧୯୯୯ ବାତ୍ୟା ପରି ମହାବାତ୍ୟା ଏବଂ ମାନ୍ଦ୍ରାଜର ୨୦୦୮ ରେ ଘଟିଥିବା ସୁନାମି ପରି ସମୁଦ୍ର କୁଆର ବରାବର ଘଟିବ । ଆମ୍ଭେମାନେ ମହା ଦୁର୍ଦ୍ଦଶାର ସମ୍ମୁଖୀନ ହେବା ।

ଏହି ଜଳବାୟୁ ବିପର୍ଯ୍ୟୟର ବିଷୟ ନିକଟରେ ଇଜିପ୍ଟରେ ଅନୁଷ୍ଠିତ NAM ସମ୍ମିଳନୀରେ ମଧ୍ୟ ଆଲୋଚିତ ହୋଇଛି । ବର୍ତ୍ତମାନ କେଉଁ ଦେଶ କେତେ ପରିମାଣରେ କାର୍ଯ୍ୟପନ୍ଥା ଗ୍ରହଣ କରି ନିର୍ଦ୍ଦିଷ୍ଟ କାର୍ଯ୍ୟକ୍ରମ ହାତକୁ ନେଇଛନ୍ତି ? ଶ୍ରୀରାମଚନ୍ଦ୍ର ମହାପ୍ରଭୁଙ୍କର ସମୁଦ୍ରରେ ବାଲିବନ୍ଧ ତିଆରିବେଳେ ଗୁଣ୍ଡୁଚି ମୂଷା ଯେପରି ଦେହରେ ବାଲି ଲଗାଇ ପଥର ବନ୍ଧରେ ଝାଡ଼ି ହେଉଥିଲା, ସେପରି ଏହି ମହତ କାର୍ଯ୍ୟରେ ଛୋଟ ବଡ଼ ବିକାଶଶୀଳ ଓ

ବିକାଶୋନ୍ମୁଖୀ ପ୍ରତ୍ୟେକ ଦେଶ ସେମାନଙ୍କର ଯଥାସାଧ୍ୟ ପ୍ରଚେଷ୍ଟା ଜାରି ରଖନ୍ତୁ । ଯେପରି ୨୦୨୦ ସୁଦ୍ଧା କାର୍ବନ୍ ଡାଇ ଅକ୍ସାଇଡ୍ emission ର ହ୍ରାସ ଆଖିଦୃଶିଆ ହୁଏ । ଏହା ହିଁ ଲକ୍ଷ୍ୟ ।

ପୁନର୍ବାର ଏହି ଗ୍ରୀନ୍ ହାଉସ୍ ଗ୍ୟାସ୍ କମାଇବା ସକାଶେ ନିକଟରେ ଡେନ୍‌ମାର୍କର କୋପେନ୍‌ହେଗେନ୍‌ରେ ଆଉ ଏକ ଉଚ୍ଚ ସ୍ତରୀୟ ସମ୍ମିଳନୀ ହେବାର ଅଛି । ଆମ ଦେଶରେ ମଧ ଏହି ସମ୍ମିଳନୀରେ ଯୋଗ ଦେବା ପୂର୍ବରୁ ପ୍ରଧାନମନ୍ତ୍ରୀଙ୍କ ଅଧ୍ୟକ୍ଷତାରେ ବିଭିନ୍ନ ମନ୍ତ୍ରଣାଳୟର ବିଶାରଦ ଓ ଅଧିକାରୀମାନଙ୍କ ସଙ୍ଗରେ ଆଲୋଚନା ଆରମ୍ଭ ହେଲା । ବର୍ତ୍ତମାନ ବିଶ୍ୱସ୍ତରୀୟ ଆର୍ଥିକ ମାନ୍ଦାବସ୍ଥାକୁ ଦୃଷ୍ଟିରେ ରଖି କେଉଁ ପଦକ୍ଷେପ ବାସ୍ତବ କ୍ଷେତ୍ରରେ କରାଯାଇପାରିବ ତାର ବିଚାର ବିମର୍ଷ ଚାଲିଛି ।

ନିରାକରଣର ପ୍ରଥମ କଥା ହେଲା ଜଳ, ଜମି, ଜଙ୍ଗଲ ଏବଂ ଭୂମିର ଉପଯୁକ୍ତ ବ୍ୟବହାର, ଗ୍ରୀନ୍ ହାଉସ୍ ଗ୍ୟାସ ନିର୍ଗମନକୁ ହ୍ରାସ କରିବା, Solar Energy ପରି Renewable energy ଅଧିକ ଉତ୍ପାଦନ କରି Non-Renewable energy ର ବ୍ୟୟ ହ୍ରାସ କରିବା, ଗ୍ୟାସ, ଥର୍ମାଲ୍ ବିଦ୍ୟୁତ୍ ଶକ୍ତିର ବ୍ୟୟ ହ୍ରାସ କରିବା, ପେଟ୍ରୋଲ୍ ବ୍ୟବହୃତ ମଟରଯାନର କମ୍ ବ୍ୟବହାର ଓ କଳକାରଖାନା ମାନଙ୍କର ପ୍ରଦୂଷଣ ହ୍ରାସ କରିବା ପ୍ରଭୃତି ଅନେକ ପଦକ୍ଷେପ ନେବା । ନିକଟରେ ମାନନୀୟ ପ୍ରଧାନମନ୍ତ୍ରୀ ସବୁ ବିଭାଗମାନଙ୍କୁ ଡକାଇ କି କି ପଦକ୍ଷେପ ନେଇ ହେବ, ତାର ଏକ ଯୋଜନା ତିଆରି କରିବାକୁ କହିଛନ୍ତି । କୋପେନ୍‌ହେଗେନ୍ ଆନ୍ତର୍ଜାତୀୟ ସମ୍ମିଳନୀ ପୂର୍ବରୁ ଭାରତର ଜଳବାୟୁ ନିୟନ୍ତ୍ରଣ ପାଇଁ ପଦକ୍ଷେପକୁ ଅନ୍ୟ ଦେଶମାନଙ୍କୁ ନିଜର ଆନ୍ତରିକତା ଦର୍ଶାଇବାକୁ ଚାହୁଁଛନ୍ତି । ତାହା ହେଉଛି ଏକ ବିହିତ ପଦକ୍ଷେପ । ପ୍ରଧାନମନ୍ତ୍ରୀ ସ୍ଥିର କରିଛନ୍ତି ୨୦୧୫ ସୁଦ୍ଧା ୫% energy ବଂଚାଇ ପାରିବାର ଲକ୍ଷ୍ୟ । ଯେଉଁ କମ୍ପାନୀ ଏହି Target ପୂରଣ କରିପାରିବ ତାକୁ Energy Saving Certificate ଦିଆଯିବ । ସେହି ସାର୍ଟିଫିକେଟ୍ ବଳରେ ସେମାନେ ପରେ ଅଧିକ Energy ନେଇପାରିବେ । ବାସ୍ତବିକ୍ ଏହି Green House Gas emission ଉପରେ ଆମର ଭବିଷ୍ୟତର Climate ଅନିଶ୍ଚିତତା ଦୂର ହୋଇପାରିବ । ଏହି schemeକୁ କୁହାଯାଉଛି PAT ବା Programme, Achieve and Trade.

ବର୍ତ୍ତମାନ ଡିସେମ୍ବର ୭ ତାରିଖରୁ ୧୭ ତାରିଖ ମଧ୍ୟରେ କୋପେନ୍‌ହେଗେନ ବିଶ୍ୱସ୍ତରୀୟ ଜଳବାୟୁ ସମ୍ମିଳନୀ ଉଦ୍‌ଯାପିତ ହୋଇଯାଇଛି । ବିଶ୍ୱର ପ୍ରାୟ ୩୦୦ ରୁ ଉର୍ଦ୍ଧ୍ୱ ଦେଶ ଏଥିରେ ଯୋଗ ଦେଇଥିଲେ । ମାତ୍ର ବଡ଼ ପରିତାପର ବିଷୟ ଏଥିରେ କୌଣସି

ସିଦ୍ଧାନ୍ତ ଗୃହୀତ ହୋଇପାରିଲା ନାହିଁ । ଅଧିକନ୍ତୁ ପୂର୍ବରୁ ଯେଉଁ ପ୍ରଧାନ ସମ୍ମିଳନୀ ଦ୍ୱୟ JTKYOTO ଏବଂ BAHI ରେ ଅନୁଷ୍ଠିତ ହୋଇଥିଲା, ସେଥିରେ ଗୃହୀତ ପ୍ରଧାନ ସିଦ୍ଧାନ୍ତ ଗୁଡ଼ିକ ଉପରେ ବିକଶିତ ପାଶ୍ଚାତ୍ୟ ଦେଶମାନେ ପଶ୍ଚାତ୍‌ପଦ ହେଲେ । ବିକଶିତ ଏବଂ ବିକାଶୋନ୍ମୁଖୀ ରାଷ୍ଟ୍ରମାନେ ନିଜ ନିଜର ପ୍ରସ୍ତାବମାନ ପେଶ୍ କଲେ । ବିକଶିତ G3 ରାଷ୍ଟ୍ରମାନଙ୍କର ମୁଖ୍ୟ USA ର ରାଷ୍ଟପତି Barak Obama କେବଳ 10 Billion Dollar ସାହାଯ୍ୟ ଦେବାପାଇଁ ଘୋଷଣା କରିବା ବ୍ୟତୀତ ଅନ୍ୟ କୌଣସି ପ୍ରସ୍ତାବ ଯଥା ପ୍ରଦୂଷଣ ହ୍ରାସ କରିବା ବିଷୟରେ କୌଣସି ପ୍ରତିଶ୍ରୁତି ଦେଇପାରି ନଥିଲେ । କାରଣ ପ୍ରଦୂଷଣ ହ୍ରାସ କରିବା ବିଷୟରେ ତାଙ୍କର ଦେଶର ଅର୍ଥନୀତି ବହୁ ପରିମାଣରେ ପ୍ରଭାବିତ ହେବ । ସେ ମଧ୍ୟ ଆମେରିକା ସିନେଟ୍‌ରେ Health Care Bill ଉପରେ ବହୁତ ବିରୋଧର ସମ୍ମୁଖୀନ ହୋଇଛନ୍ତି । ଆଉ ଏପଟେ ବିକାଶୋନ୍ମୁଖୀ ଦେଶ ଗୁଡ଼ିକର ପ୍ରଧାନ ନେତା BASIC ଦେଶ ଗୁଡ଼ିକ ଯଥା Brazil, South Africa, India ଏବଂ China ଏବଂ ଅନ୍ୟ ଛୋଟ ଛୋଟ ଦେଶଗୁଡ଼ିକ ମଧ୍ୟରେ ଗୁରୁତର ମତଭେଦ ଦେଖାଦେଇଛି । ପ୍ରତ୍ୟେକ ଦେଶ ନିଜ ନିଜ ସ୍ୱାର୍ଥ ଦୃଷ୍ଟିରୁ ପ୍ରସ୍ତାବମାନ ପେଶ୍ କଲେ, ଯାହା ଯୋଗୁ କୌଣସି ସହମତି ହୋଇପାରିଲା ନାହିଁ । ତିନୋଟି ପ୍ରଧାନ ଲକ୍ଷ୍ୟ ହେଲା- ପ୍ରଦୂଷଣ ହ୍ରାସ ପାଇଁ ସମୟ ସୀମା ଧାର୍ଯ୍ୟ, ବିକାଶୋନ୍ମୁଖୀ ଦେଶମାନଙ୍କୁ ଦରକାର ମୁତାବକ ଅର୍ଥନୈତିକ ସାହାଯ୍ୟ ଏବଂ Technol-ogy ହସ୍ତାନ୍ତର । ଏହି ତିନୋଟିଯାକ ଲକ୍ଷ୍ୟ କୌଣସିଟିର ସିଦ୍ଧାନ୍ତ ଗୃହୀତ ହୋଇ ନପାରିବାରୁ ବିଶ୍ୱରେ ଜଳବାୟୁ ନିୟନ୍ତ୍ରଣ ଦିଗରେ ହତାଶାଭାବ ଓ ଅନିଶ୍ଚିତତା ସୃଷ୍ଟି କରିଛି । ମାତ୍ର ସମଗ୍ର ବିଶ୍ୱର ହିତ ଦୃଷ୍ଟିରୁ ଅତି ଶୀଘ୍ର ସିଦ୍ଧାନ୍ତ ଗ୍ରହଣ କରି କାର୍ଯ୍ୟକାରୀ କରାଯିବା ଜରୁରୀ ହୋଇପଡ଼ିଛି । ଦେଖାଯାଉ, କେବଳ ସମୟ ଏହି ଜଟିଳ ବିଷୟର ସମାଧାନ କରିପାରିବ ।

# ଉପସଂହାର

ଶେଷରେ ମୋର ବକ୍ତବ୍ୟ ଏହିକି ଏହି ସ୍ମୃତି ଅନୁଭୂତିର ମିଶ୍ରିତ ପୁସ୍ତିକାଟି ପାଠକମାନଙ୍କର ହୃଦୟସ୍ପର୍ଶୀ ଏବଂ ଶିକ୍ଷାପ୍ରଦ ହେଲେ ମୋର ଏହି ପରିଣତ ବୟସର ଅକ୍ଳାନ୍ତ ଶ୍ରମ ସାର୍ଥକ ହେବ । ଦେଶ କାଳ ପାତ୍ର ପ୍ରଭେଦରେ ସମାଜର ଅଭିରୁଚି ଏବଂ ଲକ୍ଷ୍ୟ  ବଦଳିଯାଇଛି । ତଥାପି କେତେକ ଚିରନ୍ତନ ସତ୍ୟ ସର୍ବଦା ମାନସପଟରେ ଜାଗ୍ରତ ରହିବ । ଇଂରାଜୀରେ ଗୋଟିଏ କଥା ଅଛି:-

If wealth is lost, nothing is lost
If health is lost, something is lost,
If character is lost, everything is lost.

''ଧନ ଚାଲିଗଲେ କରନା ଶୋକ
ସ୍ୱାସ୍ଥ୍ୟ ହରାଇଲେ ସାମାନ୍ୟ ଦୁଃଖ
ଥିଲେ ଥାଉ ଯେତେ ଧନ ଅପାର
ଚରିତ୍ର ହାରିଲେ ସବୁ ଅସାର ।''

ଆମ ଦେଶର ଅର୍ଥନୈତିକ ଉନ୍ନତି ସ୍ୱାଧୀନତା ପରେ କିଛି ପରିମାଣରେ ସମ୍ଭବ ହୋଇଛି । ମାତ୍ର ବଡ଼ କ୍ଷୋଭର କଥା କ୍ରମାଗତ ଭୋଟ ଲଢ଼େଇ ବେଳେ ମନୁଷ୍ୟର ଦାନବ ପ୍ରକୃତିର ନଗ୍ନରୂପ, ଅର୍ଥଲୋଭ, ସଂପ୍ରଦାୟ ଏବଂ ଜାତି ଜାତି ମଧ୍ୟରେ ବିଦ୍ୱେଷଭାବ ବଢ଼ି ଚାଲିଛି । କେଉଁ ଅଶୁଭ ମୁହୂର୍ତ୍ତରେ ଭାରତ ଓ ପାକିସ୍ଥାନ ଉଭୟ ଦେଶ ସ୍ୱାଧୀନତା ଲାଭ କରିଥିଲେ କେଜାଣି, ଏହି ଦୁଇ ଦେଶ ମଧ୍ୟରେ ବିଦ୍ୱେଷ ଭାବ ବୃଦ୍ଧି ପାଇବାରେ ଲାଗିଛି । ଉଭୟ ଦେଶର ସୀମା (Line of Control) ପଟରେ ଉଭୟ ଦେଶ ପକ୍ଷରୁ ବନ୍ଧୁକଧାରୀ ସହସ୍ର ସହସ୍ର ସୈନ୍ୟ ସର୍ବଦା ଜାଗତିଆର । ବରାବର ସୁବିଧା ଉଣ୍ଡି ପାକିସ୍ଥାନ ପକ୍ଷରୁ  ସ୍ଥଳ ଏବଂ ଜଳ ପଥଦେଇ ଆତଙ୍କବାଦୀଙ୍କ ଆକ୍ରମଣ । ନିକଟ ଅତୀତରେ ମୁମ୍ବାଇର ତାଜ ହୋଟେଲ ଏବଂ ଛତ୍ରପତି ଶିବାଜୀ ରେଲୱେ ଷ୍ଟେସନରେ ଜଳପଥ ଦେଇ ଆକ୍ରମଣ ଏବଂ ବହୁ ନିରୀହ (ପ୍ରାୟ ୧୫୦ରୁ ଊର୍ଦ୍ଧ୍ୱ). ଲୋକମାନେ ଏଥିରେ ବଳିପଡ଼ିବା ବଡ଼ ଦୁଃଖଦ ଘଟଣା । ଇଂରାଜୀରେ ଗୋଟିଏ ପ୍ରବାଦ ଅଛି,

"Your best relation is your neighbour."

ଏହି ଉକ୍ତି ବ୍ୟକ୍ତିଗତ କ୍ଷେତ୍ରରେ ଯେପରି ପ୍ରଯୁଜ୍ୟ, ରାଜ୍ୟ ଏବଂ ଦେଶ ପାଇଁ ମଧ୍ୟ ପ୍ରଯୁଜ୍ୟ । ଉଇରୋପରେ ମଧ୍ୟଯୁଗରେ ତୁମୁଳ ଯୁଦ୍ଧରେ ବ୍ୟାପୃତ ଥିବା ଇଂଲଣ୍ଡ, ଫ୍ରାନ୍‌ସ, ଜର୍ମାନୀ, ଇଟାଲୀ ପ୍ରଭୃତି ଦେଶଗୁଡ଼ିକ ଅର୍ଥନୈତିକ କ୍ଷେତ୍ରରେ ଏକ ସଂହତି ଓ ଏକତା ରକ୍ଷା କରି European Economic Union ୧୫ ବର୍ଷ ହେଲା ଗଠନ କଲେଣି । ଆମ୍ଭର ପୂର୍ବପ୍ରାଚ୍ୟ ଦେଶ ମାନଙ୍କରେ ASEAN ପ୍ରଭୃତି ସମ୍ମିଳନୀ ଡକାଇ ଆଲୋଚନା କଲେ ମଧ୍ୟ ଫଳପ୍ରସୂ ହେଉନାହିଁ ।

ଏଣେ ୭/୮ଟି ରାଜ୍ୟରେ ନକ୍ସଲ୍ ମାଓବାଦୀ ମାନଙ୍କର ହିଂସାକାଣ୍ଡ । ଧନୀ ଅଧିକ ଧନୀ ହୋଇଯାଉଛି । ଦରିଦ୍ର ଚଳନ୍ତୁ ଚଳ ଅଧୋଗାମୀ । ସେହି ଦରିଦ୍ର ଦଳିତ ହରିଜନ ଆଦିବାସୀମାନଙ୍କର ଅର୍ଥନୈତିକ ଅବସ୍ଥା, ଶିକ୍ଷା, ସ୍ୱାସ୍ଥ୍ୟ ଏବଂ ସାମାଜିକ ସୁରକ୍ଷାର ଉନ୍ନତି ହୋଇପାରିଲେ ଜାତିର ପିତା ମହାତ୍ମାଗାନ୍ଧୀଙ୍କର ସ୍ୱାଧୀନତା ସଂଗ୍ରାମ ଏବଂ ଆତ୍ମୋତ୍ସର୍ଗର ସ୍ୱପ୍ନ ସାକାର ହୋଇପାରିବ । ବର୍ତ୍ତମାନର ପ୍ରଧାନମନ୍ତ୍ରୀ ଏବଂ ତାଙ୍କର ମନ୍ତ୍ରୀମଣ୍ଡଳ ଏହି ଦିଗରେ କେତେକ ପଦକ୍ଷେପ ନେଉଛନ୍ତି । ମାତ୍ର କେନ୍ଦ୍ର, ରାଜ୍ୟ, ସହର ଓ ଜନସାଧାରଣ ସମସ୍ତେ ଏକ ମନ ଏକ ପ୍ରାଣରେ କାର୍ଯ୍ୟ କରିପାରିଲେ ଏହାର ସୁଫଳ ଆଖିଦୃଶିଆ ହେବ । ପ୍ରଧାନମନ୍ତ୍ରୀଙ୍କର ସ୍ଲୋଗାନ୍ ସବୁ ଧର୍ମ, ଜାତି, ବର୍ଗ ଏବଂ ଅଞ୍ଚଳକୁ ନେଇ ଏକ Inclusive Policy ବା ଅଭେଦ ନୀତି ବାଞ୍ଛନୀୟ । Exclusive Policy ବା ଭେଦ ନୀତି ଆମର ସ୍ପୃହଣୀୟ ନୁହେଁ ।

ଏହା ହିଁ ସର୍ବ ଧର୍ମର ମୂଳମନ୍ତ୍ର । ଭଗବାନ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ଭଗବତ ଗୀତାରେ ଅଷ୍ଟାଦଶ ଅଧାୟରେ ମୋକ୍ଷଯୋଗରେ ଜ୍ଞାନକୁ ସାତ୍ତ୍ୱିକ, ରାଜସିକ ଓ ତାମସିକ ଏପରି ତିନି ଶ୍ରେଣୀରେ ବିଭକ୍ତ କରିଛନ୍ତି । ସେ କହିଛନ୍ତି-

''ସର୍ବ ଭୂତେଷୁ ଯେନୈକଂ ଭାବମବ୍ୟୟଂ ମୀକ୍ଷତେ,

ଅବିଭକ୍ତଂ ବିଭକ୍ତେଷୁ ତଦ୍‌ଜ୍ଞାନଂ ବିଦ୍ଧି ସାତ୍ତ୍ୱିକଂ ॥ (୧୮/୨୦)

ଅର୍ଥାତ୍ ସର୍ବ ପ୍ରାଣୀମାନଙ୍କ ମଧରେ ବୈଷମ୍ୟରେ ସାମ୍ୟ ଏବଂ ବିଭେଦରେ ଅଭେଦ ଦର୍ଶନ କରିବା ସାତ୍ତ୍ୱିକ ଜ୍ଞାନ । ପୁନଶ୍ଚ-

ପୃଥକ୍‌ତ୍ୱେନ ତୁ ଯଦ୍‌ଜ୍ଞାନଂ ନାନା ଭାବାନ୍ ପୃଥକ୍ ବିଧାନ୍,

ବେତ୍ତି ସର୍ବେଷୁ ଭୂତେଷୁ ତଦ୍ ଜ୍ଞାନଂ ବିଦ୍ଧି ରାଜସଂ । (୧୮/୨୧)

ସବୁ ପ୍ରାଣୀମାନଙ୍କ ମଧରେ ପୃଥକ୍ ରୂପେ ଜ୍ଞାନକୁ ହୃଦୟଙ୍ଗମ କରି ତା ମଧ୍ୟରେ ଏକତା ବା ସାମ୍ୟ ଦର୍ଶନ କରିବାକୁ ଉଦ୍ୟମ କରିବା ହିଁ ରାଜସିକ ଜ୍ଞାନ ।

ଯେଉଁ ଜ୍ଞାନ ଦ୍ୱାରା ସବୁ ପ୍ରାଣୀମାନଙ୍କୁ ବିଭିନ୍ନ ରୂପରେ ଦେଖିବା ଓ ସେମାନଙ୍କ ମଧ୍ୟରେ ବୈଷମ୍ୟ ଯେଉଁ ଜ୍ଞାନ ଦ୍ୱାରା ଦୃଷ୍ଟିଗୋଚର ହୁଏ, ତାହା ତାମସିକ ଜ୍ଞାନ ।

ଯତ୍ତୁ କୃତ୍ସ୍ନ ବଦେକସ୍ମିନ୍ କାର୍ଯ୍ୟେ ସକ୍ତ ମହୈତୁକଂ
ଅତତ୍ତ୍ୱାର୍ଥ ବଦଳ୍ପଞ୍ଚ ତତ୍ତାମସମୁଦାହୃତଂ । (୧୮/୨୨)

ମୋଟ ଉପରେ ବିଭେଦ ମଧ୍ୟରେ ଅଭେଦ, ବୈଷମ୍ୟ ମଧ୍ୟରେ ସାମ୍ୟ ଦର୍ଶନ କରିବା କେବଳ ସାତ୍ତ୍ୱିକ ଭାବାପନ୍ନ ନୁହେଁ; ତାହା ମଧ୍ୟ ଉତ୍ତମ ରାଜନୈତିକ ପନ୍ଥା । ଏହା ଦେଶ ଶାସନର ପ୍ରଧାନ ନୀତି ଭାବରେ ଘୋଷିତ ହେଲେ ପୃଥିବୀର ଅନ୍ୟ ଦେଶମାନେ ଆମଠାରୁ ଉପଯୁକ୍ତ ରାଜନୀତି ଶିକ୍ଷା କରିବେ ।

ସର୍ବ ଶେଷରେ ଯେଉଁ ପରମେଶ୍ୱର ବିଶ୍ୱ ପିତାଙ୍କ ବିନାନୁମତିରେ ଗଛରୁ ପତ୍ରଟିଏ ମଧ୍ୟ ଝଡେ ନାହିଁ, ରଖେ ହରି ମାରେ କିଏ, ମାରେ ହରି ରଖେ କିଏ, ଏହି ଅଗାଧ ବିଶ୍ୱାସ ମୋର ପିଲାଦିନରୁ ରହିଛି । ସେହି ବିଶ୍ୱପିତାଙ୍କୁ ପ୍ରଣାମ ଜଣାଉଛି ।

ଭଗବତ୍ ଗୀତାର ସାରକଥା ହେଉଛି,
କର୍ମଣ୍ୟେ ବାଧିକାରସ୍ତେ ମା ଫଳେଷୁ କଦାଚ ନ,
ମା କର୍ମଫଳ ହେତୁର୍ଭୂର୍ମାତେ ସଙ୍ଗୋଽସ୍ତ୍ୱ କର୍ମଣି । (୨/୪୭)

ତୁମ୍ଭ ଉପରେ ଯେଉଁ କର୍ମ ନ୍ୟସ୍ତ ଅଛି, ସେହି କର୍ମସବୁ ମନ ପ୍ରାଣ ଦେଇ ସଂପାଦନ କରିବା ତୁମ୍ଭର ଦାୟିତ୍ୱ । ଫଳକଥା ସେହି ଈଶ୍ୱରଙ୍କ ଉପରେ ଛାଡ଼ିଦିଅ । ଆଉ ମଧ ଗୀତାର ଶେଷ ଅଧ୍ୟାୟରେ କାର୍ଯ୍ୟ କରିବାର ପ୍ରଣାଳୀ କିପରି ହେବ, ତାହା ଭଗବାନ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ବୁଝାଇଛନ୍ତି ।

ଅଧିଷ୍ଠାନଂ ତଥା କର୍ତ୍ତା କରଣଂ ଚ ପୃଥକ୍ ବିଧଂ,
ବିବିଧାଶ୍ଚ ପୃଥକ୍ ଚେଷ୍ଟା ଦୈବଂ ଚୈବାତ୍ର ପଞ୍ଚମଂ ।

ଦେହ, କର୍ତ୍ତା, କରଣ (ସାଧନା ମନ୍ତ୍ର), କର୍ତ୍ତାର ଅନେକ ପ୍ରକାର ଚେଷ୍ଟା-ଏସବୁ ପ୍ରୟୋଗ କରି ଯେବେ କାର୍ଯ୍ୟ ସାଧନ ନ ହେଲା, ତେବେ ଭାଗ୍ୟକୁ ଦୋଷ ଦିଅ ।

ସେହି ପରାତ୍ପର ପରଂବ୍ରହ୍ମ ପରମେଶ୍ୱରଙ୍କୁ ଓ ତାଙ୍କର ସଗୁଣ ଓ ନିର୍ଗୁଣ ଯାହାଠାରେ ପରିପୂର୍ଣ୍ଣ, ଯିଏ ସାକାର ଓ ନିରାକାର ଉଭୟର ପ୍ରତିମୂର୍ତ୍ତି, ସେହି ଶ୍ରୀ ଶ୍ରୀ ଜଗନ୍ନାଥ ଜୀଉଙ୍କୁ ପ୍ରଣାମ ଜଣାଇ ମୋର ଏହି କ୍ଷୁଦ୍ର ପୁସ୍ତିକାଟିକୁ ସମାପ୍ତ କରୁଛି ।

ଜୟ ଜଗନ୍ନାଥ ।



ଲେଖକ ଶ୍ରୀ କୈଳାସ ଚନ୍ଦ୍ର ମିଶ୍ର ଓଡ଼ିଶା ଅର୍ଥ ବିଭାଗର ଜଣେ ବରିଷ୍ଠ ପଦାଧିକାରୀ । ୧୯୮୬ ମସିହାରେ ସରକାରୀ କାର୍ଯ୍ୟରୁ ଅବସର ଗ୍ରହଣ କଲାପରେ ସେ ବହୁ ସାମାଜିକ ଏବଂ ଆଧ୍ୟାତ୍ମିକ ସଂସ୍ଥା ସହିତ ଓତଃପ୍ରୋତ ଭାବରେ ଜଡ଼ିତ ହୋଇ ଅନୁଷ୍ଠାନମାନଙ୍କର ଉତ୍ତରୋତ୍ତର ଉନ୍ନତି କଳ୍ପେ ବହୁତ କାର୍ଯ୍ୟ କରି ଆସିଛନ୍ତି । ବିଶେଷତଃ ତାଙ୍କ ଗ୍ରାମର ଏବଂ ଭୁବନେଶ୍ୱରରେ ରହୁଥିବା ଖାରବେଳ ନଗରର ଶ୍ରୀମା ଭୁବନେଶ୍ୱରୀ ମନ୍ଦିରରେ ଦୀର୍ଘ ୨୫ ବର୍ଷ ସଭାପତି ରହି ସେହି ଅନୁଷ୍ଠାନଟିକୁ ସ୍ୱାବଲମ୍ବୀ କରିବାରେ ତାଙ୍କର ଅବଦାନ ବହୁତ । ଏହା ବ୍ୟତୀତ ଭୁବନେଶ୍ୱରର ମହାବୋଧି ସୋସାଇଟି, ଓଡ଼ିଶା ରେଡ଼କ୍ରସ ସଂଘର କାର୍ଯ୍ୟରେ ସେ ସକ୍ରୀୟ ଅଂଶ-ଗ୍ରହଣ କରିଛନ୍ତି । କର୍ମରତ ଥିବା ସମୟରେ ସେ ରାଜ୍ୟର ବହୁ ଅଞ୍ଚଳ ଏବଂ ବିଭାଗରେ କାର୍ଯ୍ୟ କରି ବହୁ ପ୍ରତ୍ୟକ୍ଷ ଅଭିଜ୍ଞତା ଅର୍ଜନ କରିଛନ୍ତି ।

ରାଜ୍ୟ ଏବଂ ଦେଶର ବହୁ ଅଞ୍ଚଳକୁ ଗସ୍ତକରି ବହୁ ଜ୍ଞାନ ଆହରଣ କରିଛନ୍ତି ।

ସୋଭିଏଟ୍ ୟୁନିୟନକୁ ISCUS ତରଫରୁ ଭ୍ରମଣରେ ଯାଇ ବହୁ ସ୍ଥାନକୁ ଯିବାର ସୁଯୋଗ ପାଇଛନ୍ତି ।

ସେ ପୂର୍ବରୁ କେତେକ କବିତା ପୁସ୍ତକ, ଯଥା :- ମେଘନାଦ ବଧ ଏବଂ ଅମୃତାଞ୍ଜଳି କବିତା ପୁସ୍ତକ ପ୍ରକାଶ କରିଛନ୍ତି । ତାଙ୍କର ଏହି ଆତ୍ମ ଜୀବନଟି ନିଜର ପ୍ରତ୍ୟକ୍ଷ ଅଭିଜ୍ଞତା ଓ ଜ୍ଞାନ ଉପରେ ଆଧାରିତ ।

ISBN 81-88630-18-9
9 788188 630189

କିତାବ ଭବନ
ଭୁବନେଶ୍ୱର